# ଷାଠିଏ ବର୍ଷର ସାଧାରଣତନ୍ତ୍ର

ଗୁରୁକଲ୍ୟାଣ ମହାପାତ୍ର

୧୯୫୦ ଜାନୁଆରୀ ୨୬ରେ ଆମେ ସାଧାରଣତନ୍ତ୍ରର ପ୍ରଥମ ସୋପାନରେ ପାଦ ଦେଇ ଆମ ସମ୍ବିଧାନ ଅନୁଯାୟୀ ନିଜକୁ ନିଜେ ଶାସନ କରିବାର ସୌଭାଗ୍ୟ ଅର୍ଜନ କରିଥିଲୁଁ । ସେହି ଦିନରୁ ଦୀର୍ଘପଥ ଅତିକ୍ରମ କରିବା ପରେ ଏବେ ଆମ ସାଧାରଣତନ୍ତ୍ର ଷାଠିଏ ବର୍ଷର ସୋପାନରେ ପାଦ ପକାଇ ବାର୍ଦ୍ଧକ୍ୟର ଦ୍ୱାରଦେଶରେ ଉପନୀତ ବୋଲି ମନେ ହୋଇଛି । ଆଉ ସାଧାରଣତନ୍ତ୍ରର ବ୍ୟବସ୍ଥା ମଧ୍ୟରେ ସାଧାରଣ ଲୋକଟି ସତେ ଯେପରି ଅଦ୍ୟାବଧି ଅପଚରା, ଅବହେଳିତ ଓ ଅପାଂକ୍ତେୟ ହୋଇ ରହିଯାଇଛି । କବିଙ୍କ ଭାଷାରେ ତାକୁ 'ସବୁଥିରୁ ବଞ୍ଚିତ' ବୋଲି ମଧ୍ୟ କୁହାଯାଉଛି । ଅଥଚ ତା' ପାଇଁ ଯାବତୀୟ ଯୋଜନା ଓ ପ୍ରକଳ୍ପର ପ୍ରସ୍ତୁତି ସତତ ଜାରି ରହିଛି ଆମ ରାଷ୍ଟ୍ରରେ – ଭାରତରେ ।

ଏହି ସାଧାରଣତନ୍ତ୍ରର ଦୃଢ଼ ଭିତ୍ତିସ୍ଥାପନ କ୍ଷେତ୍ରରେ ଆମର ପୂର୍ବସୂରୀଙ୍କ ଅବଦାନକୁ ଆମେ ଭୁଲି ପାରିବା ନାହିଁ । କିନ୍ତୁ ସାଧାରଣତନ୍ତ୍ରର ଏହି ଦୀର୍ଘତମ ପଥରେ ଆମେ ଯେପରି ବାଟବଣା ହୋଇଯାଉଛୁଁ । ଆମ ଗଣତାନ୍ତ୍ରିକ ବ୍ୟବସ୍ଥା ଯେପରି ବିପନ୍ନ ହୋଇଯାଉଛି । କିଏ ଏପରି ଘଡ଼ିସନ୍ଧି ମୁହୂର୍ତ୍ତରେ ଦିଗଦର୍ଶନ ଦେଇ ଏ ରାଷ୍ଟ୍ରକୁ ବିଶ୍ୱରେ ଏକ ସମୃଦ୍ଧ ରାଷ୍ଟ୍ର ଭାବରେ ପ୍ରତିଷ୍ଠିତ କରିପାରିବ ? ଏକଦା ଯେଉଁମାନଙ୍କ ନେତୃତ୍ୱ ଓ ଦିଗଦର୍ଶନ ଏ ଦେଶକୁ ପ୍ରଗତି ମାର୍ଗରେ ନେଇ ପାରୁଥିଲା, ସେମାନେ ଆଜି କାହାନ୍ତି ? ସେମାନଙ୍କ ମଧ୍ୟରୁ ଅନେକ ମରି ହଜି ଗଲେଣି ।

ପ୍ରଚଳିତ ନେତୃତ୍ୱ କ'ଣ ଭାରତକୁ ଠିକଣା ବାଟରେ ଏବେ ନେଇପାରିବ ? ପ୍ରବୀଣଙ୍କ ସହିତ ନବୀନଙ୍କ ସମ୍ମିଳିତ ନେତୃତ୍ୱରେ, ପରମ୍ପରା ସହିତ ଆଧୁନିକତାର ସଂଯୋଗରେ ଏକ ସମୃଦ୍ଧ ଭାରତ ଗଠନ କ'ଣ ସମ୍ଭବ ହେବ ନାହିଁ ବୋଲି ସଚେତନ ଭାରତୀୟମାନେ ଏବେ ପ୍ରଶ୍ନ କଲେଣି । କେବଳ ନୂତନ ପିଢ଼ି ହିଁ ଏ ରାଷ୍ଟ୍ରକୁ ଉପଯୁକ୍ତ ନେତୃତ୍ୱ ଦେଇପାରିବ ବୋଲି ଭାରତୀୟମାନଙ୍କ ମନରେ ପ୍ରତ୍ୟୟ ସୃଷ୍ଟି ହୋଇ ପାରୁନାହିଁ । ଅତୀତ ପରମ୍ପରାର ଭିତ୍ତିଭୂମିରେ ଆଜି ଭିତରେ ଆଗାମୀ କାଲିର ସ୍ୱପ୍ନ ନ ଦେଖିଲେ ଭାରତ ଅନ୍ୟାନ୍ୟ ବିକାଶପ୍ରାପ୍ତ ରାଷ୍ଟ୍ରଗୁଡ଼ିକ ସହିତ ପ୍ରତିଯୋଗିତା ମଧ୍ୟ କରିପାରିବ ନାହିଁ । ସମଗ୍ର ବିଶ୍ୱ, ଆର୍ଥିକ ମାନ୍ଦାବସ୍ଥାର ଜଟିଳ ପରିସ୍ଥିତିରୁ ସଂପୂର୍ଣ୍ଣ ଭାବେ ମୁକୁଳି ପାରି ନଥିବା ବେଳେ କୌଣସିମତେ ଭାରତ ତା'ର ବାର୍ଷିକ ମୁଣ୍ଡପିଛା ଆୟକୁ ୩୮,୦୦୦ ଟଙ୍କା ପର୍ଯ୍ୟନ୍ତ ଓ ସାମଗ୍ରିକ ଘରୋଇ ଉତ୍ପାଦନର (ଜି.ଡି.ପି.) ଅଭିବୃଦ୍ଧି ହାରକୁ ୬.୫ ପ୍ରତିଶତରେ ରଖିପାରିଛି । ଗତ ୨୦୦୭ ଡିସେମ୍ବର ୧୯ ତାରିଖରେ ଜାତୀୟ ଉନ୍ନୟନ ପରିଷଦର ବୈଠକରେ ଏକାଦଶ ପଞ୍ଚବାର୍ଷିକ ଯୋଜନାରେ (୨୦୦୭-୧୨) ହୋଇଥିବା ସୁପାରିଶ ଅନୁଯାୟୀ ପ୍ରଥମ ଚାରିବର୍ଷରେ ବାର୍ଷିକ ନଅ ପ୍ରତିଶତ ସାମଗ୍ରିକ ଘରୋଇ ଉତ୍ପାଦନର (ଜି.ଡି.ପି.) ଅଭିବୃଦ୍ଧି ହାର ଲକ୍ଷ୍ୟ ରଖାଯାଇଥିଲା । ଦୁଃଖର କଥା, ଆମେ ସେହି ଲକ୍ଷ୍ୟସ୍ଥଳରେ ଏ ଯାଏଁ ପହଞ୍ଚି ପାରିନାହୁଁ । ଆକାଶ ଛୁଆଁ ଦରବୃଦ୍ଧି ମଧ୍ୟ ଭାରତର ଜନଜୀବନକୁ ଅସ୍ତବ୍ୟସ୍ତ କରି ପକାଇଲାଣି । ବିଶ୍ୱରେ ଆର୍ଥିକ ମାନ୍ଦାବସ୍ଥା ସତ୍ତ୍ୱେ, ଭାରତର ପଡ଼ୋଶୀ ରାଷ୍ଟ୍ର ଚାଇନାର ଅଭିବୃଦ୍ଧି ହାର ପ୍ରଭାବିତ ହୋଇନାହିଁ । ଭାରତ, ଚାଇନା ପରି ଏକ ଜନବହୁଳ ରାଷ୍ଟ୍ର ହୋଇଥିଲେ ମଧ୍ୟ ଚାଇନାର ସମୃଦ୍ଧିରୁ ଭାରତ ଅଦ୍ୟାବଧି କିଛି ଶିକ୍ଷା ଲାଭ କରିପାରିନାହିଁ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏକାଦଶ ପଞ୍ଚବାର୍ଷିକ ଯୋଜନାରେ ଭାରତ ତା'ର ଘରୋଇ ଉତ୍ପାଦନ ହାର ଅଭିବୃଦ୍ଧି ପାଇଁ ଲକ୍ଷ୍ୟ ରଖିଥିଲେ ହେଁ ରାଜ୍ୟମାନଙ୍କର ଆର୍ଥିକ ସମସ୍ୟାଗୁଡ଼ିକପ୍ରତି ସମାନୁପାତିକ ଭାବରେ ଦୃଷ୍ଟି ଦେଇପାରିନାହିଁ । ଫଳରେ ସାଧାରଣତନ୍ତ୍ରର ଷାଠିଏ ବର୍ଷରେ ଭାରତ ଉନ୍ନତିର ସୋପାନରେ ପାଦ ରଖିଛି ବୋଲି ଗର୍ବ କରିପାରିବ ନାହିଁ । ଭାରତର ସାମଗ୍ରିକ ବିକାଶ କ୍ଷେତ୍ରରେ ରାଜ୍ୟଗୁଡ଼ିକର ଭୂମିକା ତେଣୁ ଗୁରୁତ୍ୱପୂର୍ଣ୍ଣ । ଭାରତ ଯଦିଓ ଏବେ ବିକାଶଶୀଳ ରାଷ୍ଟ୍ର ପର୍ଯ୍ୟାୟଭୁକ୍ତ, ସାମଗ୍ରିକ ବିକାଶଧାରା ସହିତ ତାଳଦେଇ

ଅଗ୍ରସର ହୋଇପାରିଲେ ୨୦୨୦ ମସିହା ବେଳକୁ ଅର୍ଥାତ୍ ଆମ ସାଧାରଣତନ୍ତ୍ରର ସତୁରୀ ବର୍ଷରେ ଭାରତ ବିକାଶପ୍ରାପ୍ତ ରାଷ୍ଟ୍ର ପର୍ଯ୍ୟାୟଭୁକ୍ତ ହୋଇପାରିବ ବୋଲି ଗତ ୨୦୦୩ ମସିହାରେ ତତ୍କାଳୀନ ଭାରତର ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ଯାହା ଆଶା କରିଥିଲେ ଏବଂ ଏବେ ବି ଓଡ଼ିଶା ପରି ଅନଗ୍ରସର ରାଜ୍ୟକୁ ସ୍ୱତନ୍ତ୍ର ରାଜ୍ୟ ପାହ୍ୟା ଦେଇ କେନ୍ଦ୍ର ସରକାର ଓଡ଼ିଶାର ବିକାଶପ୍ରତି ଧ୍ୟାନ ଦେବାକୁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଯେପରି ଆହ୍ୱାନ ଦେଇଛନ୍ତି, ତାହା ଆମମାନଙ୍କ ମନରେ ପ୍ରତ୍ୟୟ ସୃଷ୍ଟି କରୁଛି ସତ, ମାତ୍ର ଆମେ ସେ ଦିଗରେ ଅଗ୍ରସର ହେବାକୁ କେତେଦୂର ସମର୍ଥ ?

ଯେଉଁ ସମ୍ବିଧାନ ଆଧାରରେ ଭାରତର ଗଣତନ୍ତ୍ର ପ୍ରତିଷ୍ଠିତ ହୋଇଛି ସେ ସମ୍ବିଧାନ ଉପରେ ଭରସା ନଥିବାରୁ ତାହାକୁ ଶତବାର ସଂଶୋଧନ କରାଗଲାଣି । ପୂର୍ବରୁ ସ୍ୱେଚ୍ଛାଚାରୀ, ଅତ୍ୟାଚାରୀ, ବ୍ୟକ୍ତିକୈନ୍ଦ୍ରିକ ଓ ରାଜାରାଜୁଡ଼ା ଶାସନର ଅବଶ୍ୟ ଅବସାନ ହୋଇଛି । ବିଦେଶୀ ଶାସକଗଣଙ୍କୁ ମଧ୍ୟ ଆମେ ବିତାଡ଼ିତ କରିଛୁ । ଏପରିକି ସୂଚନାର ଅଧିକାର ସମ୍ବନ୍ଧରେ ଆମେ ଏବେ ଆଇନ କରି ସାରିଛୁ । ଜାତୀୟ ନିଶ୍ଚିତ ଗ୍ରାମ୍ୟ ନିଯୁକ୍ତି ଯୋଜନାରେ କେହି ଆଉ ଅଭାବରେ ରହିବେ ନାହିଁ, ଗ୍ରାମ୍ୟ ସ୍ୱାସ୍ଥ୍ୟ ମିଶନ ଜରିଆରେ ଆମେ କେବଳ ସହରାଞ୍ଚଳର ଲୋକଙ୍କ ପାଇଁ ନୁହେଁ, ଗ୍ରାମାଞ୍ଚଳର ଲୋକଙ୍କ ପାଇଁ ମଧ୍ୟ ସ୍ୱାସ୍ଥ୍ୟର ସୁବିଧା ଯୋଗାଇ ପାରୁଛୁ । ସର୍ବଶିକ୍ଷା ଅଭିଯାନରେ କେହି ଆଉ ନିରକ୍ଷର ଓ ଅଶିକ୍ଷିତ ରହିବେ ନାହିଁ ବୋଲି ଆମେ ଆତ୍ମସନ୍ତୋଷ ଲାଭ କରୁଛୁ । ମାତ୍ର ଜନସାଧାରଣଙ୍କ ପାଇଁ ଏସବୁ ଜାତୀୟ ଯୋଜନା ସତେ କ'ଣ ଫଳପ୍ରଦ ହୋଇପାରିଛି ? ସାଧାରଣତନ୍ତ୍ରର ଷାଠିଏ ବର୍ଷରେ ଏ ବିଷୟରେ ଆମେ ନିଜକୁ ନିଜେ ପ୍ରଶ୍ନ କରିବା ସହିତ ଆତ୍ମସମୀକ୍ଷା କରିବା ଉଚିତ ।

ଭାରତୀୟ ସାଧାରଣତନ୍ତ୍ର ଜନ୍ମଲାଭ କରିବା ସମୟରେ ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦ ତାଙ୍କର ସ୍ୱତନ୍ତ୍ର ବାର୍ତ୍ତାରେ ଭାରତବାସୀଙ୍କୁ କହିଥିଲେ, 'We must remember that this is more a day of dedications than of rejoicing' ଅର୍ଥାତ୍ ଆମେ ନିଶ୍ଚିତ ଭାବେ ମନେ ରଖିବା ଉଚିତ ଯେ ଏ ଦିବସଟିକୁ ଆମେମାନେ ବରଂ ଆନନ୍ଦର ଦିବସ ଭାବେ ପାଳନ ନକରି ତ୍ୟାଗର ଦିବସ ଭାବେ ପାଳନ କରିବା ଉଚିତ ... ।'

ଏବର ରାଷ୍ଟ୍ରପତି ଶ୍ରୀମତୀ ପ୍ରତିଭା ଦେବୀସିଂ ପାଟିଲ ଆମ ସାଧାରଣତନ୍ତ୍ରର ଷାଠିଏ ବର୍ଷ ଉପଲକ୍ଷେ ଉଲ୍ଲେଖ କରିଛନ୍ତି, '୬୦ତମ ମାଇଲଖୁଣ୍ଟ ଉପରେ ଦଣ୍ଡାୟମାନ ହୋଇ, ଆମେ ଆମ ରାଷ୍ଟ୍ରର ବିକାଶ ଓ ପ୍ରତ୍ୟେକ ନାଗରିକର ତଥା ମାନବିକତାର, ଉନ୍ନତି ସକାଶେ ଆପଣାକୁ ପୁନର୍ବାର ଉତ୍ସର୍ଗ କରିବା ଉଚିତ ।'

ଏହି ନୂତନ ଶତାବ୍ଦୀରେ ଓଡ଼ିଶାକୁ ବିଭିନ୍ନ କ୍ଷେତ୍ରରେ ସମୃଦ୍ଧ କରିବା ପାଇଁ ଶ୍ରୀ ନବୀନ ପଟ୍ଟନାୟକ କ୍ରମାଗତ ତୃତୀୟ ଥର ପାଇଁ ମୁଖ୍ୟମନ୍ତ୍ରୀ ହେବା ପରେ ଓଡ଼ିଶାର ଦରିଦ୍ର ଲୋକଙ୍କୁ ଉପରକୁ ଉଠାଇବା ସହିତ ଅନଗ୍ରସର ଅଞ୍ଚଳର ବିକାଶ ପାଇଁ ବିଭିନ୍ନ ପଦକ୍ଷେପ ନେଇଥିବା ସତ୍ତ୍ୱେ ଓଡ଼ିଶା ଅନ୍ୟାନ୍ୟ ରାଜ୍ୟଗୁଡ଼ିକ ପରି ସମୃଦ୍ଧ ନହୋଇ ପଛରେ ପଡ଼ି ରହିଛି କାହିଁକି ? ସାଧାରଣତନ୍ତ୍ରର ଷାଠିଏ ବର୍ଷରେ ଓଡ଼ିଶାର ପ୍ରତ୍ୟେକ ସଚେତନ ନାଗରିକ ଏ ବିଷୟରେ ନିଜକୁ ନିଜେ ପ୍ରଶ୍ନ ପଚାରନ୍ତୁ ।

ଶାନ୍ତିପ୍ରିୟ ଓଡ଼ିଶାରେ ବିଭିନ୍ନ ସଂପ୍ରଦାୟ, ଧର୍ମ ମଧ୍ୟରେ ବିବାଦ ଉପୁଜାଇ ସେଥିରୁ ଲାଭବାନ ହେବାକୁ ଅନେକ ସମୟରେ ବିଭିନ୍ନ ରାଜନୀତିକ ଦଳର ଲୋକେ ଉଦ୍ୟମ କରି ଆସିଛନ୍ତି । ଫଳରେ ଅଯଥାରେ ଆମ ରାଜ୍ୟରେ ଅଶାନ୍ତି ଓ ଅସ୍ଥିରତା ଲାଗି ରହିଛି । ରାଜ୍ୟ ସରକାର ଏହାର ପ୍ରତିକାର ପାଇଁ ଯାବତୀୟ ପଦକ୍ଷେପ ନେଇଥିବା ସତ୍ତ୍ୱେ ସେ ବିଷୟରେ ଆମେ ଚିନ୍ତା କଲେଣି କି ? ବିଭିନ୍ନ ପ୍ରାକୃତିକ ବିପର୍ଯ୍ୟୟର ମୁକାବିଲା ପାଇଁ ରାଜ୍ୟ ସରକାର ତତ୍ପରତା ପ୍ରଦର୍ଶନ କରି ଆସିଥିଲେ ମଧ୍ୟ କେନ୍ଦ୍ର ସରକାର ସେ ଦିଗରେ ବିଶେଷ ତତ୍ପରତା ପ୍ରଦର୍ଶନ କରି ନଥିବା ପ୍ରତିପାଦିତ ହୋଇଛି । ଏପରିକି ଆତଙ୍କବାଦୀମାନେ ବିଭିନ୍ନ ମାରଣାସ୍ତ୍ରଦ୍ୱାରା ସଜ୍ଜିତ ହୋଇ ଭୟ ପ୍ରଦର୍ଶନ କରିବା ସହିତ ଯେପରି ଦମନଲୀଳା ଚଳାଇଛନ୍ତି, ତାହାର ସଫଳ ମୁକାବିଲା ଦିଗରେ କେନ୍ଦ୍ର ସରକାରଙ୍କ ଉଦ୍ୟମ ଏଇ ସାଧାରଣତନ୍ତ୍ରର ୫୯ ବର୍ଷ ପରେ ମଧ୍ୟ ଭାରତର ଜନସାଧାରଣଙ୍କୁ ଆଶା ଓ ଆଶ୍ୱାସନା ଦେଇ ପାରୁଛି କି ?

ଭାରତରେ ପ୍ରତିଷ୍ଠିତ ସାଧାରଣତନ୍ତ୍ର, ଗତ ୨୦୦୦ ମସିହାରେ ଯେତେବେଳେ ପଚାଶ ବର୍ଷର ପୂର୍ତ୍ତି ଉତ୍ସବ ପାଳନ କରିଥା'ନ୍ତା, ଭାରତ ଅନ୍ତର୍ଗତ ଓଡ଼ିଶା ତାହା ପାଳନ କରିନାହିଁ । କାରଣ ୧୯୯୯ ଶେଷ ଭାଗରେ ମହାବାତ୍ୟା ଯେପରି କରାଳ ରୂପ ଧରି ଉପକୂଳ ଓଡ଼ିଶାକୁ ଗ୍ରାସ କରିଦେଲା, ତାହା ଓଡ଼ିଶାର ଉନ୍ନତିକୁ ପଚାଶ ବର୍ଷ ପଛକୁ ଟାଣି ନେଇଥିଲା ।' ମାତ୍ର ଓଡ଼ିଶାକୁ ନୂତନ ଭାବରେ ଗଢ଼ି ଦରିଦ୍ର ଓ ନଥିଲାବାଲାଙ୍କ ମୁହଁରେ ହସ ଫୁଟାଇବାକୁ ଦଶ ବର୍ଷ ତଳୁ ଅର୍ଥାତ୍ ସାଧାରଣତନ୍ତ୍ରର ପଚାଶ ବର୍ଷରେ ଏଇ ସରକାର ଯେଉଁ ସଂକଳ୍ପ ନେଇଥିଲେ, ଗୋଟିଏ ଦଶନ୍ଧି ପରେ ସେ ସଂକଳ୍ପ ଅନୁଯାୟୀ ଓଡ଼ିଶା ଏବେ ନିଜ ଗୋଡ଼ରେ

ନିଜେ ଛିଡ଼ା ହୋଇପାରିଛି ଏବେ ଓ ଭବିଷ୍ୟତରେ ସ୍ୱାବଲମ୍ବନଶୀଳ ହୋଇପାରିବ ବୋଲି ଅନ୍ତତଃ ଆଶା କରାଯାଉଛି ।

ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତରେ ସ୍ୱାଧୀନତା ସଂଗ୍ରାମ ପାଇଁ ଆନ୍ଦୋଳନ କଂଗ୍ରେସ ନାମରେ ଆରମ୍ଭ ହେବା ପରେ ୧୯୨୦ରୁ ୧୯୨୨ରେ ଅସହଯୋଗ ଆନ୍ଦୋଳନ ଇତିହାସପ୍ରସିଦ୍ଧ ହୋଇଥିଲା । ଏହାପରେ ୧୯୨୯ ଡିସେମ୍ବର ୩୧ରେ ମହାତ୍ମା ଗାନ୍ଧୀ 'ପୂର୍ଣ୍ଣ ସ୍ୱରାଜ' ପାଇଁ ପ୍ରସ୍ତାବ ଦେବା ସହିତ ଭାରତର 'ସଂପୂର୍ଣ୍ଣ ସ୍ୱାଧୀନତା' ପାଇଁ କଂଗ୍ରେସ ନିଜକୁ ଉତ୍ସର୍ଗ କରୁ ବୋଲି ଚାହିଁଲେ । ସ୍ୱାଧୀନତାର ପ୍ରତୀକ ସ୍ୱରୂପ ଜାତୀୟ ତ୍ରିରଙ୍ଗା ପତାକା ଉତ୍ତୋଳନ କରାଯାଇ ନୂତନ ବର୍ଷରେ ଆନ୍ଦୋଳନର ପ୍ରସ୍ତୁତି ପାଇଁ ସେତେବେଳେ ତତ୍ପରତା ପ୍ରକାଶ ପାଇଥିଲା । ତେଣୁ ସ୍ୱାଧୀନତା ଆନ୍ଦୋଳନରେ ନେତୃତ୍ୱ ନେଉଥିବା କଂଗ୍ରେସ ପକ୍ଷରୁ ୧୯୩୦ ମସିହା ଜାନୁଆରୀ ୨୬ ତାରିଖ ଦିବସଟିକୁ ସମଗ୍ର ଦେଶରେ 'ପୂର୍ଣ୍ଣ ସ୍ୱରାଜ' ବା 'ପୂର୍ଣ୍ଣ ସ୍ୱାଧୀନତା ଦିବସ' ରୂପେ ପାଳନ କରାଯାଇଥିଲା । ପ୍ରକୃତରେ ଜାନୁଆରୀ ୨୬ଟି କେବଳ ପବିତ୍ର ଦିବସ ନଥିଲା, ତାହା ଇତିହାସ ଦୃଷ୍ଟିରୁ ମଧ୍ୟ ପ୍ରସିଦ୍ଧ ଦିବସ ଥିଲା । କାରଣ ସେଦିନ ସମଗ୍ର ଭାରତବାସୀ ଯେଉଁ ଶପଥ ଗ୍ରହଣ କରିଥିଲେ, ସେହି ଶପଥପତ୍ରରେ ଉଲ୍ଲେଖ ଥିଲା, 'ସ୍ୱାଧୀନତା ହେଉଛି ଭାରତବାସୀଙ୍କର ମୌଳିକ ଅଧିକାର ...' ।

> ସ୍ୱାଧୀନତା ଆନ୍ଦୋଳନରେ ନେତୃତ୍ୱ ନେଉଥିବା କଂଗ୍ରେସ ପକ୍ଷରୁ ୧୯୩୦ ମସିହା ଜାନୁଆରୀ ୨୬ ତାରିଖ ଦିବସଟିକୁ ସମଗ୍ର ଦେଶରେ 'ପୂର୍ଣ୍ଣ ସ୍ୱରାଜ' ବା 'ପୂର୍ଣ୍ଣ ସ୍ୱାଧୀନତା ଦିବସ' ରୂପେ ପାଳନ କରାଯାଇଥିଲା ।

ଗତ ୧୯୯୭ରେ ଆମେ ଆମ ସ୍ୱାଧୀନତାର ଅର୍ଦ୍ଧଶତାବ୍ଦୀ ପୂର୍ତ୍ତି ଉପଲକ୍ଷେ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ କରିଥିଲୁଁ 'ଫ୍ରିଡ଼ମ୍ ଫିଫ୍ଟି' ନାମରେ । ଏହାପରେ ୨୦୦୦ ମସିହାରେ ଆମ ସାଧାରଣତନ୍ତ୍ରର ପଚାଶ ବର୍ଷ ପୂର୍ତ୍ତିରେ ଭାରତରେ ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ହୁଏ ତ ନିରାଡ଼ମ୍ବର ଭାବରେ ତତ୍କାଳୀନ ମିଳିତ କେନ୍ଦ୍ର ସରକାର ପାଳନ କରିଥିଲେ । ଏହାପରେ ୨୦୦୩ ମସିହା ଜାନୁଆରୀ ୨୨ରୁ ୨୪ ପର୍ଯ୍ୟନ୍ତ ତିନି ଦିନ ଧରି ଭାରତ ସରକାର ରାଜଧାନୀ ନୂଆଦିଲ୍ଲୀରେ, ଭାରତୀୟ ସଂସଦ ଅର୍ଦ୍ଧଶତାବ୍ଦୀ ଅତିକ୍ରମ କରିବାରୁ ତାହାର ସୁବର୍ଣ୍ଣ ଜୟନ୍ତୀ ଉତ୍ସବ ପାଳନ କରିଥିଲେ । ଏହାପରେ ଆମ ସାଧାରଣତନ୍ତ୍ରର ଷାଠିଏ ବର୍ଷରେ କୌଣସି ଉତ୍ସବ ପାଳନ କରାଯାଉ ବା ନଯାଉ, ଆମେ କେଉଁ ଭୂମିକାରେ ଅବତୀର୍ଣ୍ଣ, ସେ ବିଷୟରେ ସମୀକ୍ଷା କରାଯାଉ । ରାଜ୍ୟ ସରକାର ମଧ୍ୟ ଏକ ଦଶନ୍ଧିରେ ତାଙ୍କର ପାଦ ପକାଇବେ । ଏସବୁ ଦୃଷ୍ଟିରୁ ଏଇ ୨୦୧୦ ବର୍ଷଟି ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ ହୋଇଥାଏ ।

ଏହି ସାଧାରଣତନ୍ତ୍ରର ଷାଠିଏ ବର୍ଷରେ ଆଉ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା ବିଷୟ ଏଠାରେ ଉଲ୍ଲେଖ କରିବାକୁ ହେବ । ଆମ ଭାରତରେ ଯେଉଁ ସମ୍ବିଧାନ ୧୯୫୦ ଜାନୁଆରୀ ୨୬ ପରି ପବିତ୍ର ଦିବସରେ କାର୍ଯ୍ୟକାରୀ ହୋଇଥିଲା, ତା'ର ଇତିହାସପ୍ରତି ଅନୁଧ୍ୟାନ କଲେ ଜଣାଯାଇଥାଏ ଯେ ଗତ ୧୯୪୮ ଫେବୃଆରୀ ମାସରେ ହିଁ ଆମ ସମ୍ବିଧାନର ଚିଠା ପ୍ରକାଶ ପାଇଥିଲା । ଏହାକୁ ଚୂଡ଼ାନ୍ତ ଭାବେ ୧୯୪୯ ନଭେମ୍ବର ୨୬ରେ ଶାସନ ବିଧାୟକ ସଭା ଗୃହୀତ କରିବା ପରେ ୧୯୫୦ ଜାନୁଆରୀ ୨୬ରୁ ତାହା କାର୍ଯ୍ୟକାରୀ ହୋଇ ଭାରତରେ ସାଧାରଣତନ୍ତ୍ର ପାଇଁ ପଥ ପରିଷ୍କୃତ ହୋଇଥିଲା ।

ଆମ ସାଧାରଣତନ୍ତ୍ର ବା ସାମ୍ବିଧାନିକ ଶାସନ ଯେତେବେଳେ ଚାଳିଶ ବର୍ଷରେ ପହଞ୍ଚିଥିଲା, ସେତେବେଳେ ଜଣେ ସମ୍ବିଧାନବିତ୍ ସମ୍ବିଧାନକୁ ୬୮ ଥର ସଂଶୋଧନ କରାଗଲାଣି ବୋଲି ମତ ବ୍ୟକ୍ତ କରିଥିଲେ । ଏବେ ଷାଠିଏ ବର୍ଷରେ ସମ୍ବିଧାନ ପ୍ରାୟ ଶହେ ଥର ସଂଶୋଧିତ ହୋଇ ସାରିଲାଣି । ସମ୍ବିଧାନର ଘନ ଘନ ସଂଶୋଧନ ଓ ପରିବର୍ତ୍ତନ ଏହାର ପ୍ରାଥମିକତା ଉପରେ ଆଞ୍ଚ ଆଣୁଛି ଓ ସମ୍ବିଧାନର ମୌଳିକ ଲକ୍ଷ୍ୟଠାରୁ ଆମେ ଦୂରେଇ ଯାଉଛୁଁ ବୋଲି ମଧ୍ୟ କେହି କେହି ଅଭିଯୋଗ ବାଢ଼ିଛନ୍ତି । ଆଉ କେହି କେହି ଏପରି ସଂଶୋଧନର ଆବଶ୍ୟକତା ଉପରେ ମଧ୍ୟ ଗୁରୁତ୍ୱାରୋପ କରିଛନ୍ତି । ମୂଳ ସମ୍ବିଧାନର ମୁଖବନ୍ଧରେ 'ସମାଜବାଦୀ' ଶବ୍ଦ ନଥିଲା । ମାତ୍ର ୧୯୭୬ ମସିହାରେ ପାର୍ଲିଆମେଣ୍ଟରେ ହୋଇଥିବା ୪୨ତମ ସମ୍ବିଧାନ ସଂଶୋଧନ ଆଇନଦ୍ୱାରା ଏହି ଶବ୍ଦଟିକୁ ମୁଖବନ୍ଧରେ ସଂଯୁକ୍ତ କରାଯାଇପାରିଛି । ସେହିପରି ସମ୍ବିଧାନର ମୂଳ ମୁଖବନ୍ଧରେ 'ଧର୍ମ ନିରପେକ୍ଷ' କଥାଟି ମଧ୍ୟ ନଥିଲା । ସେହି ୧୯୭୬ ମସିହାର ୪୨ତମ ସମ୍ବିଧାନ ସଂଶୋଧନ ଆଇନ ବଳରେ ଏହି ଶବ୍ଦଟିକୁ ମୁଖବନ୍ଧରେ ସ୍ଥାନିତ କରାଯାଇପାରିଛି । ଏହାପରେ ମଧ୍ୟ ଆମ ସମ୍ବିଧାନ ସମାଜବାଦୀ ବ୍ୟବସ୍ଥାକୁ କେହି କେହି ସମର୍ଥନ କରିଥିବା ବେଳେ ଆଉ କେହି କେହି ସମାଲୋଚନା କରିଛନ୍ତି । ଆମ

ସମ୍ବିଧାନର ଧର୍ମ ନିରପେକ୍ଷତା ନୀତିଠାରୁ ଏବେ ଦୂରେଇ ଯାଇଛି । ଆଉ ଧର୍ମକୁ ନେଇ ଭାରତରେ ଏବେବି ଯେପରି କନ୍ଦଳ ସୃଷ୍ଟି ହୋଇଛି, ତାହା ସାଧାରଣତନ୍ତ୍ର ଷାଠିଏ ବର୍ଷରେ କେବଳ ଭାରତୀୟ ନାଗରିକଙ୍କୁ ନୁହେଁ, ଶାସକଙ୍କୁ ମଧ୍ୟ ବ୍ୟଥିତ କରୁଛି ।

ଭାରତ ପରି ଏକ ବିଶାଳ ଗଣତାନ୍ତ୍ରିକ ରାଷ୍ଟ୍ରରେ ସାଧାରଣତନ୍ତ୍ର ପ୍ରତିଷ୍ଠା କରାଯାଇଥିଲେ ହେଁ ଆମ ସମ୍ବିଧାନରେ ରାଜ୍ୟଗୁଡ଼ିକ ଅପେକ୍ଷା କେନ୍ଦ୍ରର ପ୍ରାଧାନ୍ୟକୁ ଯେପରି ଗୁରୁତ୍ୱ ଦିଆଯାଇଛି, ତାହା ବିରୋଧରେ ରାଜ୍ୟଗୁଡ଼ିକ ଅସନ୍ତୋଷ ପ୍ରକାଶ କରୁଥିବା ପରିଲକ୍ଷିତ ହୋଇଛି । ଭାରତ ଅନ୍ତର୍ଭୁକ୍ତ ବିଭିନ୍ନ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳର ସଂଖ୍ୟା ଏବେ ୩୫ ହେବା ପରେ ମଧ୍ୟ ଭାଷାଭିତ୍ତିରେ ରାଜ୍ୟଗୁଡ଼ିକ ନିଜ ନିଜର ସୀମା ସରହଦ ବଦଳାଇ ନୂତନ ରାଜ୍ୟ ସୃଷ୍ଟି କରିବାର ଅଧିକାର ରହିଛି । ଭାଷାଭିତ୍ତିରେ ପ୍ରଥମେ ସ୍ୱତନ୍ତ୍ର ପ୍ରଦେଶ ହୋଇଥିବା ଓଡ଼ିଶା ପ୍ରାକ୍ ସ୍ୱାଧୀନତା କାଳରେ ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ସୃଷ୍ଟି କରିବା ପରେ ଆମ ସ୍ୱାଧୀନତା ପ୍ରାପ୍ତିର ୬୨ ବର୍ଷ ପରେ ଓ ସାଧାରଣତନ୍ତ୍ରର ୬୦ ବର୍ଷରେ ମଧ୍ୟ 'ତେଲେଙ୍ଗାନା' ରାଜ୍ୟ ଭାଷାଭିତ୍ତିରେ ଅଦ୍ୟାବଧି ଗଠିତ ହୋଇପାରିନାହିଁ ।

ଯେଉଁ ସମ୍ବିଧାନକୁ ବାରମ୍ବାର ପରିବର୍ତ୍ତନ କରାଯାଉଛି, ସେହି ସମ୍ବିଧାନ ପୁରୁଣାକାଳିଆ ଓ ରହଣିଆ ହୋଇଗଲାଣି ଏବଂ ସେଥିପାଇଁ ସେହି ସମ୍ବିଧାନକୁ ସମୀକ୍ଷା କରିବାର ସମୟ ଆସିଛି ବୋଲି ଶ୍ରୀ ଅଟଳ ବିହାରୀ ବାଜପେୟୀଙ୍କ ନେତୃତ୍ୱରେ ଗଠିତ ୨୦୦୦ ମସିହାର ମିଳିତ ଏନ୍.ଡି.ଏ. ସରକାର ସମ୍ବିଧାନ ସମୀକ୍ଷା ପାଇଁ ଯେଉଁ ବ୍ୟବସ୍ଥା କରିଥିଲେ, ତାହାକୁ ପରବର୍ତ୍ତୀ ୟୁ.ପି.ଏ. ସରକାର ବନ୍ଦ କରି ଦେଇଥିବା ପରି ମନେହୁଏ । ମାତ୍ର ତାହା ହୋଇଥିଲେ, ଅଯଥା କେନ୍ଦ୍ର ସରକାର ରାଜ୍ୟଗୁଡ଼ିକ ଉପରେ ପ୍ରଭୁତ୍ୱ ଜାହିର କରିନଥାନ୍ତେ ଓ ବିଭିନ୍ନ ରାଜ୍ୟର ଆଞ୍ଚଳିକ ଦଳଗୁଡ଼ିକ କେନ୍ଦ୍ର ସରକାରଙ୍କପ୍ରତି ଅଯଥାରେ ଅସନ୍ତୋଷ ବ୍ୟକ୍ତ କରିନଥାନ୍ତେ ।

ସାଧାରଣତନ୍ତ୍ରର ଷାଠିଏ ବର୍ଷରେ ଏସବୁ ବିଷୟରେ ଭାରତର ସଚେତନ ନାଗରିକ ଓ ସରକାର ଚିନ୍ତା କରିବା ଉଚିତ ।

ଡି.-୧୦/୫, ୟୁନିଟ୍-୮
ଭୁବନେଶ୍ୱର-୧୨

# ରାଜ୍ୟରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ପାଇଁ ନୂତନ ସ୍ୱାସ୍ଥ୍ୟ ସେବା ଯୋଜନା

ରାଜ୍ୟ ସରକାରଙ୍କ ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ ପକ୍ଷରୁ 'ସ୍ୱାଧୀନତା ସଂଗ୍ରାମୀ ସ୍ୱାସ୍ଥ୍ୟ ସେବା ଯୋଜନା' କାର୍ଯ୍ୟକାରୀ କରାଯାଇଛି ବୋଲି ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ତଥା ସାଧାରଣ ଅଭିଯୋଗ ଓ ପେନସନ ପ୍ରଶାସନ ମନ୍ତ୍ରୀ ଶ୍ରୀ ପ୍ରସନ୍ନ ଆଚାର୍ଯ୍ୟଙ୍କଠାରୁ ପ୍ରକାଶ ।

ସେ କହିଛନ୍ତି ଯେ ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ କେନ୍ଦ୍ର ବା ରାଜ୍ୟ ସରକାରଙ୍କଠାରୁ ସ୍ୱାଧୀତା ସଂଗ୍ରାମୀ ଭତ୍ତା ପାଉଛନ୍ତି, ସେମାନଙ୍କୁ ତଥା ସେମାନଙ୍କ ଧର୍ମପତ୍ନୀଙ୍କୁ ଏହି ଯୋଜନାରେ ସାମିଲ କରାଯାଇଛି । ବର୍ତ୍ତମାନ କାର୍ଯ୍ୟକାରୀ କରାଯାଇଥିବା ଏହି ଯୋଜନାରେ ସରକାରୀ ଡାକ୍ତରଖାନାମାନଙ୍କରେ ଉପଲବ୍ଧ ନିଦାନ (ପାଥୋଲୋଜି), ବୀଜାଣୁ ତତ୍ତ୍ୱ, ରଞ୍ଜନ ରଶ୍ମି, ହୃଦ୍‌ସ୍ପନ୍ଦ ଲିଖନ ଏବଂ ଇସିଜି ଆଦି ପରୀକ୍ଷା ବିନାମୂଲ୍ୟରେ ଯୋଗାଇ ଦିଆଯିବ । ସରକାରୀ ମେଡ଼ିକାଲ କଲେଜ୍ ଓ ହସ୍‌ପିଟାଲ ସମେତ ସମସ୍ତ ସରକାରୀ ଡାକ୍ତରଖାନାମାନଙ୍କରେ ଥିବା କ୍ୟାବିନ, ନର୍ସିଂହୋମ ବା କଟେଜ ଭଳି ଦେୟ ଯୁକ୍ତ ୱାର୍ଡ଼ରେ ସର୍ବାଧିକ ୬୦ ଦିନ ପର୍ଯ୍ୟନ୍ତ ରହି ଚିକିତ୍ସିତ ହେବା ପାଇଁ କୌଣସି ଦେୟ ଦେବାକୁ ପଡ଼ିବ ନାହିଁ ।

ଏହି ଯୋଜନାରେ ସେମାନଙ୍କୁ ସରକାରୀ ଡାକ୍ତରଖାନାକୁ ଚିକିତ୍ସା ପାଇଁ ଯିବା ଆସିବା ବାବଦରେ ପ୍ରତିଥର ୨୦୦ ଟଙ୍କା ଯାତାୟାତ ଖର୍ଚ୍ଚ ପ୍ରଦାନ କରାଯିବ । ଯେଉଁ ଆଶା କର୍ମୀ ପୀଡ଼ିତ ସ୍ୱାଧୀନତା ସଂଗ୍ରାମୀ ବା ତାଙ୍କ ପତ୍ନୀଙ୍କୁ ସରକାରୀ ଡାକ୍ତରଖାନାକୁ ନେବେ ତାଙ୍କୁ ପ୍ରତିଥର ପାଇଁ ଏକ ଶହ ଟଙ୍କା ଆର୍ଥିକ ପ୍ରୋତ୍ସାହନ ମିଳିବ । ପୀଡ଼ିତ ସ୍ୱାଧୀନତା ସଂଗ୍ରାମୀଙ୍କ ପ୍ରତିଥର ଡାକ୍ତରଖାନାକୁ ଯିବା ପାଇଁ ଆଶା କର୍ମୀଙ୍କ ପ୍ରୋତ୍ସାହନସମେତ ସର୍ବାଧିକ ୫୦୦ ଟଙ୍କା ପ୍ରଦାନ କରାଯାଇପାରିବ । ଯଦି ଉକ୍ତ ସ୍ୱାଧୀନତା ସଂଗ୍ରାମୀ ଡାକ୍ତରଖାନାରେ ଚିକିତ୍ସା ପାଇଁ ଭର୍ତ୍ତି ହୁଅନ୍ତି ତାହା ହେଲେ ଆକସ୍ମିକ ବ୍ୟୟ ପାଇଁ ତାଙ୍କୁ ୫୦୦ ଟଙ୍କା ସହାୟତା ପ୍ରଦାନ କରାଯିବ । ପ୍ରତିଥର ଡାକ୍ତରଖାନାରେ ଭର୍ତ୍ତି ପାଇଁ ସର୍ବାଧିକ ଏକ ହଜାର ଟଙ୍କା ଖର୍ଚ୍ଚ କରାଯାଇ ପାରିବ । ଯଦି ଅଧିକ ଟଙ୍କା ଆବଶ୍ୟକ ପଡ଼େ ତାହା ହେଲେ ରେଡ଼କ୍ରସ ଆଦି ପାଣ୍ଠିରୁ ବ୍ୟବସ୍ଥା କରାଯିବ ।



# ଆମ ଜାତୀୟ ପତାକା

ଡଃ ଶରତ ଚନ୍ଦ୍ର ପରିଡ଼ା

**ଆ**ମ ଜାତୀୟ ପତାକା ହେଉଛି ଆମ ଜାତିର ଚିହ୍ନ । ଏହାକୁ ନେଇ ଆମେ ଗର୍ବ କରିଥାଉଁ । ଏହା ଆମ ସ୍ୱାଧୀନତା ଓ ସାଧାରଣତନ୍ତ୍ରର ପ୍ରତୀକ । ସାର୍ବଭୌମତ୍ୱର ପ୍ରତିଭୂ । ଏଥିରେ ଆମ ଜାତିର ଆଦର୍ଶ ପ୍ରତିଫଳିତ ହୋଇଥାଏ । ଆମ ଭାରତବର୍ଷର ଆଶା ଓ ଆକାଂକ୍ଷାର ଏହି ଜାତୀୟ ପତାକା ହେଉଛି ଏକ ବିଗ୍ରହ ସଦୃଶ । ଅନେକ ସ୍ୱପ୍ନ ଓ ସମ୍ଭାବନା ଏଥିରେ ଖୁନ୍ଦି ହୋଇ ରହିଛି । ଏହା ଏବେବି ଭାରତୀୟମାନଙ୍କର ପ୍ରାଣ ଓ ପ୍ରେରଣାର ଉତ୍ସ ହୋଇ ରହିଛି । ଏହା ତା'ର ନାଗରିକମାନଙ୍କୁ ଉତ୍ସାହ ଓ ଉଦ୍ଦୀପନାର ଇନ୍ଧନ ଯୋଗାଇ ଆସିଛି । ପ୍ରତ୍ୟେକ ଦେଶର ଲୋକେ ନିଜ ନିଜର ଜାତୀୟ ପତାକାକୁ ନେଇ ଗୌରବ ଅନୁଭବ କରିଥାନ୍ତି । ଏହାର ସମ୍ମାନ ରକ୍ଷା ପାଇଁ ପ୍ରାଣତ୍ୟାଗ କରିବାକୁ ମଧ୍ୟ ସେମାନେ କୁଣ୍ଠିତ ହୁଅନ୍ତି ନାହିଁ । ସ୍ୱାଧୀନତା ଆନ୍ଦୋଳନ ବେଳେ ଆମର ଯେଉଁ ଜାତୀୟ ପତାକା ଥିଲା – ଟେକ ରଖିବା ପାଇଁ ଆମ ଦେଶର ଅନେକ ସ୍ୱାଧୀନତା ସଂଗ୍ରାମୀ ଶହୀଦ ହୋଇଛନ୍ତି ।

ପୁରାଣ ଯୁଗରୁ ଓ ପ୍ରାକ୍ ଐତିହାସିକ କାଳରୁ ପତାକା ଆମ ଦେଶରେ ପ୍ରଚଳିତ ହୋଇ ଆସୁଛି । ଏହାକୁ ଧ୍ୱଜା ବା କେତନ ମଧ୍ୟ କୁହାଯାଏ । ପ୍ରାଚୀନ ଭାରତରେ ପତାକା ହାତୀ ବା ରଥ ଉପରେ ବହନ କରାଯାଉଥିଲା । ଏହାର ରଙ୍ଗ ଲାଲ୍ ବା ସବୁଜ ରହୁଥିଲା । ଏଥିରେ ଗୋଟିଏ ଛବି ମଧ୍ୟ ସ୍ଥାନ ପାଉଥିଲା । ଦେବତା-ଅସୁରମାନଙ୍କ ସଂଗ୍ରାମ ହେଉ ଥିବା ରାମାୟଣ ମହାଭାରତର ମହାସଂଗ୍ରାମ ହେଉ, ଐର ଖାରବେଳ ହୁଅନ୍ତୁ ବା ସମ୍ରାଟ ଅଶୋକ ହୁଅନ୍ତୁ ସମସ୍ତେ ନିଜ ପତାକାକୁ ସାକ୍ଷୀ ରଖି ଲଢ଼େଇ କରିଥା'ନ୍ତି । ମୂଳତଃ ପତାକା ଯୁଦ୍ଧ କ୍ଷେତ୍ରରେ ବ୍ୟବହୃତ ହେଉଥିଲା । ଯୁଦ୍ଧରେ ପତାକାକୁ ପ୍ରଥମେ ଆକ୍ରମଣ କରାଯାଉଥିଲା । କାରଣ ପତାକା, ରାଜ୍ୟ ଶାସନ କ୍ଷମତାର ପ୍ରତିନିଧି ଥିଲା । ପତାକାର ପତନ ପରାଜୟକୁ ସୂଚାଉ ଥିଲା ।

ମଧ୍ୟଯୁଗରେ ଶାସକମାନଙ୍କର ସ୍ୱତନ୍ତ୍ର ପତାକା ସବୁ ଥିଲା । ଆକବରଙ୍କର ରାଜକୀୟ ପତାକା ଥିଲା । ଆବୁଲ ଫାଜଲଙ୍କ ବିବରଣୀରୁ ତାହାର ବର୍ଣ୍ଣନା ଦେଖିବାକୁ ମିଳେ । ଛତ୍ରପତି ଶିବାଜୀ ମୋଗଲମାନଙ୍କ ବିରୋଧରେ ଲଢ଼ିବା ବେଳେ ଗେରୁଆ ବର୍ଣ୍ଣର ଧ୍ୱଜାରୁ ପ୍ରେରଣା ପାଇଥିଲେ । ମହାରାଜା ରାଣା ପ୍ରତାପଙ୍କ ଧ୍ୱଜାର ନାମ ଥିଲା ଚାଙ୍ଗୀ । ତାଙ୍କର ଗେରୁଆ ବର୍ଣ୍ଣର ପତାକାର ମଧ୍ୟଭାଗରେ ସୂର୍ଯ୍ୟଦେବଙ୍କ ଛବି ଥିଲା । ମରାଠାମାନଙ୍କର ଶାସନ ପରେ ଇଂରେଜମାନେ ସେମାନଙ୍କର ନିଜ ପତାକା 'ୟୁନିଅନ୍ ଜ୍ୟାକ୍' ଭାରତକୁ ଆଣିଥିଲେ । ଏହା ଦୀର୍ଘ ଦୁଇ ଶହ ବର୍ଷ ଧରି ଭାରତରେ ଉଡ଼ିଥିଲା ।

୧୮୫୭ ମସିହାରେ ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ସିପାହୀ ବିଦ୍ରୋହ ହୋଇଥିଲା । ଏହି ବିପ୍ଳବରେ ବାହାଦୂର ଶାହା ଜାଫର ଏକ ପତାକା ବ୍ୟବହାର କରିଥିଲେ । ତାହା ନୀଳ ରଙ୍ଗର ଥିଲା । ତାହାର ଉପର ମୁଣ୍ଡର ଏକ କୋଣରେ ପଦ୍ମଫୁଲଟି ଥିଲା । ତଳମୁଣ୍ଡର ଶେଷ ଭାଗ କୋଣ ଆଡ଼କୁ ସୁନେଲି ରଙ୍ଗର ରୁଟିର ଚିହ୍ନ ଅଙ୍କିତ ହୋଇ ଥିଲା । ଭାରତୀୟ ଜାତୀୟ ପତାକାର ଏହାକୁ ମୂଳଦୁଆ ବୋଲି କୁହାଯାଇପାରେ ।

ଆଜି ଆମେ ଯେଉଁ ଜାତୀୟ ପତାକା ଦେଖୁଛେଁ ତାହା ଆରମ୍ଭରୁ ଅନେକ ପରିବର୍ତ୍ତନ ଓ ବିବର୍ତ୍ତନ ଦେଇ ଗତି କରି ଆସିଛି । ଆମ ଜାତୀୟ ପତାକାର ଏହି ବିବର୍ତ୍ତନ ଗତ ଶତାବ୍ଦୀର ରାଜନୈତିକ ବିକାଶର ବାର୍ତ୍ତା ବହନ କରେ । ଭଗିନୀ ନିବେଦିତା ଥିଲେ ସ୍ୱାମୀ ବିବେକାନନ୍ଦଙ୍କର ଅନ୍ୟତମା ପଟ୍ଟଶିଷ୍ୟା । ସେ ୧୯୦୫ ମସିହାରେ ଭାରତ ପାଇଁ ଏକ ବର୍ଗାକାର ନାଲିପତାକା ପ୍ରସ୍ତୁତ କରିଥିଲେ । ଏହି ପତାକାର ଚାରିପଟ ଧାଡ଼ିରେ ୧୦୮ଟି

ଜଳୁଥିବା ଦୀପ ଥିଲା । ମଧ୍ୟଭାଗରେ ଇନ୍ଦ୍ରଙ୍କ ବଜ୍ର ଶୋଭା ପାଉଥିଲା । ବଜ୍ର ଉଭୟ ପାର୍ଶ୍ୱରେ 'ବନ୍ଦେ ମାତରମ୍' ବଙ୍ଗଳା ଭାଷାରେ ଲେଖା ଯାଇଥିଲା । ସେହି ଅକ୍ଷରଗୁଡ଼ିକ ହଳଦିଆ ବର୍ଣ୍ଣର ଥିଲା ।

ଏହା ପରେ ୧୯୦୬ ମସିହା ଅଗଷ୍ଟ ୭ ତାରିଖରେ କଲିକତାର ବିପ୍ଲବୀମାନେ କଲିକତାର ଗ୍ରୀନ୍ ପାର୍କଠାରେ ଭାରତର ପ୍ରଥମ ତ୍ରିରଙ୍ଗା ପତାକା ଉଡ଼ାଇଥିଲେ । ସେହି ପତାକାର ଉପର ଅଂଶଟି ଲାଲ୍ ଥିଲା । ମଧ୍ୟ ଅଂଶଟି ହଳଦିଆ ଥିଲା । ତଳ ଅଂଶଟି ସବୁଜ ବର୍ଣ୍ଣର ଥିଲା । ଉପର ଲାଲ୍ ଅଂଶଟିରେ ଆଠଟି ଫୁଟିଲା ପଦ୍ମଫୁଲ ଶୋଭା ପାଉଥିଲା । ତଳ ସବୁଜ ଅଂଶଟିରେ ଶୁଭ୍ରବର୍ଣ୍ଣର ସୂର୍ଯ୍ୟର ଛବି ଥିଲା । ଏହା ବ୍ୟତୀତ ଶୁଭ୍ର ଚତୁର୍ଥୀ ଚନ୍ଦ୍ରର ଛବି ସହିତ ତାରା ଚିହ୍ନ ମଧ୍ୟ ସେହି ତଳ ଅଂଶରେ ଅଙ୍କିତ ହୋଇଥିଲା । ମଝି ହଳଦିଆ ଅଂଶଟିରେ 'ବନ୍ଦେ ମାତରମ୍' ବୋଲି ଦେବନାଗରୀ ଲିପିରେ ଲେଖା ଯାଇଥିଲା ।

୧୯୦୭ ମସିହା ଅଗଷ୍ଟ ୨୨ ତାରିଖରେ ପ୍ୟାରିସ୍‌ଠାରେ ଏକ ସମାଜବାଦୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ସେତେବେଳକୁ ଭାରତ ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମା ବିପ୍ଲବିନୀ ମାଡ଼ାମ୍ କାମା ତାଙ୍କର ସହଯୋଗୀ ଦଳ ସହିତ ସେଠାରେ ଏକ ପ୍ରକାର ନିର୍ବାସିତ ଜୀବନଯାପନ କରୁଥିଲେ । ମାଡ଼ାମ୍ କାମା ଥିଲେ କାଥିଆବାଡ଼ର ଜଣେ ପାର୍ସି ମହିଳା । ସେ ସେହି ସମ୍ମିଳନୀରେ ଗୋଟିଏ ଜାତୀୟ ପତାକା ଉଡ଼ାଇଥିଲେ । ତାହା ୧୯୦୬ ଜାତୀୟ ପତାକାଠାରୁ କିଞ୍ଚିତ୍ ଭିନ୍ନ ଥିଲା । ତାଙ୍କ ହାତ ତିଆରି ତ୍ରିରଙ୍ଗା ପତାକାର ଉପର ଅଂଶଟି ପୂର୍ବପରି ଲାଲ୍ ଥିଲା । କିନ୍ତୁ ପୂର୍ବର ଆଠଟି ପଦ୍ମଫୁଲ ସ୍ଥାନରେ ଗୋଟିଏ ପଦ୍ମଫୁଲ ଓ ସାତୋଟି ତାରା ଚିହ୍ନ ଥିଲା । ସେହି ତାରାଗୁଡ଼ିକ ସପ୍ତର୍ଷି ମଣ୍ଡଳ (ଦି ଗ୍ରେଟ୍ ବିୟର୍)ର ପ୍ରତୀକ ଥିଲେ । ମଝି ଅଂଶଟି ପୂର୍ବପରି ହଳଦିଆ ଥିଲା ଓ ସେଥିରେ 'ବନ୍ଦେ ମାତରମ୍' ଲେଖା ଯାଇଥିଲା । ତଳ ଅଂଶଟି ପୂର୍ବପରି ସବୁଜ ରଙ୍ଗର ଥିଲା । ତାହାର ବାମରେ ସୂର୍ଯ୍ୟ ଓ ଡାହାଣରେ ଚନ୍ଦ୍ର ସହିତ ତାରାଗୁଡ଼ିକର ଛବି ଅଙ୍କା ଯାଇଥିଲା । କିନ୍ତୁ ଇଂରେଜ ପ୍ରତିନିଧିମାନେ ସେତେବେଳେ ତାହାକୁ ଦୃଢ଼ ବିରୋଧ କରିଥିଲେ ।

୧୯୧୭ ମସିହାରେ ଡଃ ଆନିବେସାନ୍ତ ଭାରତ ପାଇଁ ଅନ୍ୟ ଏକ ଜାତୀୟ ପତାକା ତିଆରି କଲେ । ଏହି ପତାକାରେ ତଳ ଉପର ହୋଇ ଯଥାକ୍ରମେ ପାଞ୍ଚଟି ଲାଲପଟି ଓ ଚାରୋଟି ସବୁଜ ପଟି ଭୂମିର ସମାନ୍ତର ଭାବରେ ରହିଥିଲା । ସେହି ପଟିଗୁଡ଼ିକ ଉପରେ ସପ୍ତର୍ଷି ଚିହ୍ନ ଅଧ୍ୟାରୋପିତ ହୋଇଥିଲା । ଏହାବ୍ୟତୀତ ପତାକାର ଗୋଟିଏ କୋଣରେ ଶୁଭ୍ରବର୍ଣ୍ଣର ଅର୍ଦ୍ଧଚନ୍ଦ୍ର ଓ ତାରାମାନଙ୍କର ଛବି ଥିଲା । ବାମ କୋଣର ଶୀର୍ଷଦେଶରେ ବ୍ରିଟିଶ ପତାକା 'ୟୁନିଅନ୍ ଜ୍ୟାକ୍' ଚିହ୍ନ ଥିବାରୁ ଏଥିରୁ ଭାରତ ସହ ଇଂଲଣ୍ଡର ଭବିଷ୍ୟତ ସଂପର୍କ ବେଶ୍ ସୂଚିତ ହୋଇଥିଲା । ତେଣୁ ସେହି ପତାକାଟିକୁ ଭାରତୀୟ ନେତୃବୃନ୍ଦ ଗ୍ରହଣ କରିପାରିନଥିଲେ ।

୧୯୨୧ ମସିହାରେ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଥିଲା । ତାଙ୍କ ଉଦ୍‌ବୋଧନରେ ଅନୁପ୍ରାଣୀତ ହୋଇ ଆନ୍ଧ୍ରପ୍ରଦେଶର ବିଜୟୱାଡ଼ାଠାରେ ମସଲିପଟମ୍ ଜାତୀୟ କଲେଜର ଅଧ୍ୟାପକ ପିଙ୍ଗଲି ଭେଙ୍କୟା ଜାତୀୟ ପତାକାର ଏକ ନମୁନା ତିଆରି କରି ଗାନ୍ଧିଜୀଙ୍କ ପାଖରେ ଉପସ୍ଥାପନ କଲେ । ସେହି ପତାକାଟି ଲାଲ୍ ଓ ସବୁଜ ରଙ୍ଗର ଥିଲା । ପତାକାରେ ଥିବା ଲାଲ୍ ରଙ୍ଗ ହିନ୍ଦୁମାନଙ୍କର ସଙ୍କେତ ବହନ କରୁଥିଲାବେଳେ ସବୁଜ ରଙ୍ଗ ମୁସଲମାନମାନଙ୍କର ପ୍ରତୀକ ଥିଲା । ଗାନ୍ଧିଜୀ ଚିନ୍ତା କଲେ ଏମାନଙ୍କବ୍ୟତୀତ ସଂଖ୍ୟାଲଘୁ ସଂପ୍ରଦାୟ ଭାରତରେ ମଧ୍ୟ ଅଛନ୍ତି । ସେମାନଙ୍କର ସଙ୍କେତ ମଧ୍ୟ ଜାତୀୟ ପତାକାରେ ରହିବା ଉଚିତ । ତେଣୁ ଉପରେ ଧଳା, ମଝିରେ ସବୁଜ ଓ ତଳେ ଲାଲ୍‌ରଙ୍ଗ ସମାନ ଭାବରେ ରଖାଗଲା । ଏହି ଅବସରରେ ପଞ୍ଜାବର ପ୍ରଖ୍ୟାତ ସଂଗ୍ରାମୀ ଲାଲା ଲାଜପତ ରାୟଜୀ ସ୍ୱଦେଶୀ ଆନ୍ଦୋଳନର ପ୍ରତୀକ ଚରଖାକୁ ପତାକାର ମଧ୍ୟଭାଗରେ ରଖିବାକୁ ପ୍ରସ୍ତାବ ଦେଲେ । ଚରଖାରୁ ଶିଳ୍ପ ଓ ଅର୍ଥନୈତିକ ପ୍ରଗତିର ସୂଚନା ମିଳିଥାଏ । ତ୍ରିରଙ୍ଗାରେ ଚରଖା ରଖାଯିବାରୁ ପତାକା ଯଥେଷ୍ଟ ଲୋକପ୍ରିୟତା ହାସଲ କଲା ଓ ସର୍ବସମ୍ମତିକ୍ରମେ ଗୃହୀତ ହେଲା । କେବଳ ସେତିକି ନୁହେଁ ଗୋଟିଏ କପଡ଼ାକୁ ତିନିରଙ୍ଗ ନ କରି ତିନିରଙ୍ଗର କପଡ଼ାକୁ ସିଲେଇ କରି ପତାକା ତିଆରି କରିବା ଲାଗି ସ୍ଥିର କରାଗଲା । କପଡ଼ାକୁ ସିଲେଇ କରି ଯୋଡ଼ିବାର ଅର୍ଥ ହେଲା ଯେ ଭାରତରେ ନାନାଜାତି ଓ ଧର୍ମର ଲୋକେ ବାସ କରୁଥିଲେ ବି କେହି କାହାଠାରୁ ଅଲଗା ନୁହନ୍ତି । ସ୍ୱଦେଶୀ ଭାବନାର ପ୍ରସାର ପାଇଁ ପତାକାର କପଡ଼ା ହାତବୁଣା ଖଦଡ଼ରେ ପ୍ରସ୍ତୁତ କରାଗଲା । ସ୍ୱାଧୀନତା ସେନାନୀମାନେ ସବୁସ୍ଥାନରେ ସେହି ତ୍ରିରଙ୍ଗା ଉଡ଼ାଇ ଜାତୀୟ ଚେତନାର ଉଦ୍ରେକ କରାଇଥିଲେ । ଏଥିରେ ବିଚଳିତ ହୋଇ ବ୍ରିଟିଶ ସରକାର ଭାରତୀୟମାନଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରିବା ଉଦ୍ଦେଶ୍ୟରେ ଶିଖ୍‌ମାନଙ୍କ ଭିତରେ ଅପପ୍ରଚାର ଆରମ୍ଭ କରିଦେଲେ । ଶିଖ୍‌ମାନଙ୍କର ପ୍ରତିନିଧିତ୍ୱ

କରିବା ପାଇଁ ତ୍ରିରଙ୍ଗା ପତାକାରେ ଏକ କଳାରଙ୍ଗର କପଡ଼ା ଯୋଡ଼ା ଯାଉ ବୋଲି ଯୁକ୍ତି ବାଢ଼ିଲେ । ଗାନ୍ଧିଜୀ ଶିଖ୍‌ମାନଙ୍କୁ ବୁଝାଇବା ସତ୍ତ୍ୱେ ସେମାନେ ସେହି ଦାବିରୁ କ୍ଷାନ୍ତ ହୋଇନଥିଲେ ।

୧୯୩୧ ମସିହା ଆମ ଭାରତୀୟ ଜାତୀୟ ପତାକା ପାଇଁ ଏକ ଗୁରୁତ୍ୱପୂର୍ଣ୍ଣ ବର୍ଷ ଅଟେ । ସେହି ବର୍ଷ ଏପ୍ରିଲ୍ ପହିଲାରେ କରାଚିଠାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ଏଠାରେ ଶିଖ୍‌ମାନେ ସେମାନଙ୍କର ପୁରୁଣା ଦାବିକୁ ଦୋହରାଇଲେ । ଫଳରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଏକ ସାତଜଣିଆ କମିଟି ଗଠନ କଲେ । ସେହି କମିଟି ଆମ ଜାତୀୟ ପତାକାକୁ ଏକ ନୂତନ ରୂପ ଦେଲେ । ପତାକାଟି ଥିଲା ସଂପୂର୍ଣ୍ଣ ଗେରୁଆ । ତାହାର ବାମ ପାଖରେ ଏକ ଚରଖା ଚିହ୍ନ ଥିଲା, କିନ୍ତୁ ନିଖିଳ ଭାରତୀୟ କଂଗ୍ରେସ କମିଟି ଏହି ପତାକା ପ୍ରସ୍ତାବ ଗ୍ରହଣ କରିପାରିଲେ ନାହିଁ । ସେ ବର୍ଷ ଉପରେ କମଳା, ମଝିରେ ଧଳା ଓ ତଳେ ସବୁଜ ରଙ୍ଗ ସହ ଏକ ପତାକା ପ୍ରସ୍ତୁତ କରାଗଲା । ମଝି ଧଳା ରଙ୍ଗ ଭିତରେ ଗାଢ଼ ନୀଳରଙ୍ଗର ଚରଖା ଚିହ୍ନ ରଖାଗଲା । ଲମ୍ବ ତିନିଗୁଣ ହେଲେ ଚଉଡ଼ା ଦୁଇଗୁଣ ହେବ ବୋଲି ତାହାର ଆକାର ସ୍ଥିର କରାଯାଇଥିଲା । ସେହି ନୂତନ ପତାକା ୧୯୩୧ ମସିହା ଅଗଷ୍ଟ ୩୦ ତାରିଖ ଦିନ ଦେଶର ସବୁଆଡ଼େ ଉଡ଼ାଯାଇଥିଲା ।

ବ୍ରିଟିଶମାନଙ୍କ ବିରୋଧରେ ସଶସ୍ତ୍ର ସଂଗ୍ରାମ କରିବା ପାଇଁ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଜର୍ମାନୀକୁ ଚାଲି ଯାଇଥିଲେ । ସେଠାରେ ସେ ଆଜାଦ୍ ହିନ୍ଦ୍ ଫୌଜ ଗଠନ କଲେ । ବର୍ଲିନ୍‌ରେ ସେ ଭାରତୀୟ ଜାତୀୟ ପତାକା ଉତ୍ତୋଳନ କରିଥିଲେ । ସେହି ପତାକାରେ ଗେରୁଆ, ଧଳା ଓ ସବୁଜ ରଙ୍ଗର ପଟି ଥିଲା । କିନ୍ତୁ ମଧ୍ୟଭାଗରେ ଧଳା ରଙ୍ଗର ପଟି ଉପରେ ଚରଖା ପରିବର୍ତ୍ତେ ଲମ୍ଫ ପ୍ରଦାନ କରୁଥିବା ଏକ ସିଂହର ଛବି ଥିଲା ।

ଦେଶ ସ୍ୱାଧୀନ ହେବାର ଅବ୍ୟବହିତ ପୂର୍ବର କଥା । ଡଃ ରାଜେନ୍ଦ୍ର ପ୍ରସାଦଙ୍କ ପୌରୋହିତ୍ୟରେ ନୂତନ ସମ୍ବିଧାନର ପ୍ରଣୟନ ପାଇଁ ଶାସନ ବିଧାୟକ ସଭା ବସିଲା । ସଭାରେ ଜାତୀୟ ପତାକା ପ୍ରସଙ୍ଗ ଉଠିଲା । ଜାତୀୟ ରୂପେ ବ୍ୟବହୃତ ହେଉଥିବା ପତାକା କଂଗ୍ରେସ ଦଳର ପତାକା ଭାବେ ପରିଚିତ ଥିଲା । ଦେଶରେ ବିଭିନ୍ନ ରାଜନୈତିକ ଦଳ ସେତେବେଳକୁ ଜନ୍ମ ନେଲେଣି । ଦ୍ୱିତୀୟ ତ୍ରିରଙ୍ଗା ପତାକାର ଗୋଟିଏ ପାଖରେ ଅରଟର ଚିହ୍ନ ସ୍ପଷ୍ଟ ରହିଥିଲା । ବିଧାୟକ ସଭାରେ ଜାତୀୟରେ ପତାକା ନେଇ ଏକ ସର୍ବସମ୍ମତ ନିଷ୍ପତ୍ତିର ଆବଶ୍ୟକତା ଅନୁଭୂତ ହେଲା । ୧୯୪୭ ଜୁଲାଇ ୨୨ ତାରିଖ ଦିନ ଜାତୀୟ ପତାକା ସଂପର୍କରେ ପଣ୍ଡିତ ନେହେରୁ ଏକ ପ୍ରସ୍ତାବ ଆଗତ କରିଥିଲେ– 'ଭାରତର ଜାତୀୟ ପତାକା ସମାନ୍ତରାଳ ହେବ । ସେଥିରେ କମଳା, ଧଳା ଓ ଗାଢ଼ ସବୁଜ ରଙ୍ଗ ରହିବ । ସେହି ରଙ୍ଗର ପଟିମାନ ସମାନ ଭାବେ ରହିବ । ଧଳା ରଙ୍ଗର ମଧ୍ୟଭାଗରେ ଘନ ନୀଳରଙ୍ଗର ଏକ ଚକ୍ର ରହିବ । ସାରନାଥଠାରେ ଥିବା ପ୍ରସିଦ୍ଧ ଅଶୋକ ସ୍ତମ୍ଭ ଚକ୍ରର ଢାଞ୍ଚାରେ ସେହି ଚକ୍ରର ଚିତ୍ର କରାଯିବ । ଚକ୍ରର ବ୍ୟାସ ଧଳା ପଟିର ଚଉଡ଼ା ମଧ୍ୟରେ ସୀମିତ ରହିବ ଏବଂ ପତାକାର ଲମ୍ବ ତିନିଗୁଣ ହେଲେ ଚଉଡ଼ା ଦୁଇଗୁଣ ହେବ ।' ଅତଏବ ୧୯୩୧ ମସିହାରେ ନିର୍ମିତ ଜାତୀୟ ପତାକାର ରଙ୍ଗ ଓ ଆକାରରେ କିଛି ପରିବର୍ତ୍ତନ ହେଲା ନାହିଁ । କେବଳ ଚରଖା ପରିବର୍ତ୍ତେ ଅଶୋକସ୍ତମ୍ଭର ଚବିଶିଟି ଅରଯୁକ୍ତ ଐତିହାସିକ ଧର୍ମଚକ୍ର ସ୍ଥାନିତ ହେଲା । ଶାସନ ବିଧାୟକ ସଭା ଏହି ନୂତନ ପତାକାକୁ ସାମ୍ବିଧାନିକ ସ୍ୱୀକୃତି ଦେଇଥିଲା । ୧୯୪୭ ମସିହା ଅଗଷ୍ଟ ୧୪-୧୫ ମଧ୍ୟ ରାତ୍ରିରେ ସେହି ପତାକାଟି ଜାତି ଉଦ୍ଦେଶ୍ୟରେ ସମର୍ପିତ ହୋଇଥିଲା ।

ସେହି ସମ୍ବିଧାନ ପ୍ରଣୟନ ସଭାର ଅବଦୁଲ କାଲାମ ଆଜାଦ, ସି. ରାଜଗୋପାଳଚାରୀ, ଶ୍ରୀମତୀ ସରୋଜିନୀ ନାଇଡୁ, କେ.ଏମ୍. ପାନିକ୍କର, କେ.ଏମ୍. ମୁନ୍‌ସୀ, ଡଃ ବି.ଆର୍. ଆମ୍ବେଦକର, ଫାଙ୍କ୍ ଆନ୍ଥୋନୀ, ବି. ପଟ୍ଟଭି ସୀତରାମାୟା, ହୀରାଲାଲ୍ ଶାସ୍ତ୍ରୀ, ସତ୍ୟ ନାରାୟଣ ସିଂହ, ବଲ୍ଲଭଦେବ ସିଂ ଓ ଏସ୍.ଏନ୍. ଗୁପ୍ତା ସଦସ୍ୟ ଥିଲେ । ନେହେରୁଙ୍କ ସମେତ ଅନ୍ୟ କେତେକ ସଦସ୍ୟ ଆମ ଜାତୀୟ ପତାକାର ସଂସ୍କୃତି ଓ ସଙ୍କେତ ବିଷୟରେ ମୂଲ୍ୟବାନ୍ ମତାମତ ଦେଇଥିଲେ । ସେ ବିଷୟରେ ଅବଗତ ହେବା ଆମ ସମସ୍ତଙ୍କ ପକ୍ଷରେ ଜରୁରୀ ଅଟେ । ପଣ୍ଡିତ ନେହେରୁ କହିଥିଲେ– ଆମେ କାମ କରି ଥକି ପଡ଼ିଥିଲାବେଳେ, ଏହି ଜାତୀୟ ପତାକାକୁ ଚାହିଁ ଦେଲାମାତ୍ରେ ଆମକୁ ଆଗକୁ ଯିବା ପାଇଁ ଉତ୍ସାହ ମିଳିଥାଏ । ଅନେକ ବନ୍ଧୁ ଆଜି ଆମ ଗହଣରେ ନାହାନ୍ତି, କିନ୍ତୁ ଜାତୀୟ ପତାକାର ମାନ ରଖିବା ପାଇଁ ସେମାନେ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଲଢ଼ିଥିଲେ । ମୃତ୍ୟୁବେଳେ ଅନ୍ୟମାନଙ୍କୁ ହସ୍ତାନ୍ତର କରି ଏହାର ଟେକ ରଖିବା ପାଇଁ କହି ଯାଇଥିଲେ । ଅଶୋକ ସ୍ତମ୍ଭର ଚକ୍ର ହେଉଛି ଭାରତବର୍ଷର ନମନୀୟ ପ୍ରାଚୀନ ସଂସ୍କୃତିର ବାର୍ତ୍ତାବହ । ଏହି ପତାକା ସାମ୍ରାଜ୍ୟବାଦର ପତାକା ନୁହେଁ କିମ୍ବା କୌଣସି ବ୍ୟକ୍ତି ଉପରେ ଆଧିପତ୍ୟ ବିସ୍ତାର କରିବା ଏହାର ଲକ୍ଷ୍ୟ ନୁହେଁ । ଏହା କେବଳ ଭାରତୀୟ ସ୍ୱାଧୀନତାର ପତାକା ନୁହେଁ, ଅନ୍ୟ ଯେକୌଣସି ଜାତି

ଏହାକୁ ଦର୍ଶନ କଲେ ମୁକ୍ତିର ସନ୍ଦେଶ ପାଇଥାଏ । ଭାରତୀୟ ଜାତୀୟ ପତାକା ବିଶ୍ୱ ବନ୍ଧୁତ୍ୱର ବାର୍ତ୍ତା ପ୍ରଚାର କରେ । ଯେକୌଣସି ଦେଶ ନିଜର ସ୍ୱାଧୀନତା ହାସଲ ନିମନ୍ତେ ଭାରତର ସାହାଯ୍ୟ ଚାହିଁଲେ ଭାରତ ତାହା ପ୍ରଦାନ କରିବାକୁ ସଦା ପ୍ରସ୍ତୁତ ।

ଜାତି କହିଲେ ଜାଗତିକ ପଦାର୍ଥର ସମଷ୍ଟିକୁ ବୁଝାଏ । ନାହିଁ । ଜାତି ଅନେକ ଭାବ ଓ ଭାବନାରେ ବଞ୍ଚି ରହେ । ତେଣୁ ଜାତୀୟ ପତାକା ବ୍ୟକ୍ତିଗତ ସ୍ତରରେ ମୂଲ୍ୟବୋଧର ପରିପ୍ରକାଶ ଘଟାଇବା ସହିତ ଜାତିର ଅନ୍ତର କଥା କହେ । ଆମ ପରମ୍ପରାର ଅନେକ ସୁନ୍ଦର ତତ୍ତ୍ୱର ପ୍ରତିନିଧିତ୍ୱ କରିଥାଏ ଏହି ପତାକା । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ପ୍ରଭାତ ସମୟ । ଦିଲ୍ଲୀର ଐତିହାସିକ ଲାଲ୍‌କିଲାରେ ଲକ୍ଷ ଲକ୍ଷ ଲୋକଙ୍କ ଉତ୍କଣ୍ଠା ମଧ୍ୟରେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପ୍ରଥମ ଥର ପାଇଁ ତ୍ରିରଙ୍ଗା ପତାକା ଉଡ଼ାଇଥିଲେ । ଦେଶବାସୀଙ୍କୁ ଉଦ୍‌ବୋଧନ ଦେଇ କହିଥିଲେ .. ଏହି ଜାତୀୟ ପତାକା ବ୍ୟକ୍ତିବିଶେଷ ବା କଂଗ୍ରେସର ଜୟଗାନ କରେ ନାହିଁ । ଏହା ସମଗ୍ର ଦେଶର ବିଜୟର ଗାଥା ଗାଏ । ଭାରତର ମୁକ୍ତି, ସ୍ୱାଧୀନତା ଓ ଗଣତନ୍ତ୍ରର ଏହା ସଙ୍କେତ ବହନ କରେ । ଖାଲି ଭାରତ ନୁହେଁ ଏସିଆ ମହାଦେଶ ସହିତ ସମଗ୍ର ପୃଥିବୀ ଏହି ପତାକା ଉତ୍ତୋଳନ ଜନିତ ଆନନ୍ଦରେ ସାମିଲ ହେବା ଉଚିତ । ସବୁଠାରୁ ସ୍ମରଣୀୟ ଯେ ଜାତୀୟ ପତାକାର ସମ୍ମାନ ରକ୍ଷା କରିବା ପାଇଁ ଆମେ ଜୀବନକୁ ବାଜି ଲଗାଇ ଦେଇଥିଲେ । ସେହି ଶପଥ ଆଜି ପୂରଣ ହୋଇଛି । ଅନେକ ବୀର ମାତୃଭୂମିର ମୁକ୍ତି ପାଇଁ ପ୍ରାଣବଳି ଦେଇଛନ୍ତି । ସୁଭାଷ ବୋଷଙ୍କ କଥା ମୁଁ ଉଲ୍ଲେଖ ନ କରି ରହିପାରୁ ନାହିଁ । ସେ ହେଉଛନ୍ତି ପ୍ରଥମ ଭାରତୀୟ ଯିଏ କି ବିଦେଶ ଭୂଇଁରେ ଏହି ପତାକାକୁ ପ୍ରଥମେ ଉଡ଼ାଇ ଥିଲେ । କିନ୍ତୁ ଲାଲ୍‌କିଲ୍ଲାରେ ପତାକା ଉତ୍ତୋଳନ କଲାବେଳକୁ ସେ ନଥିଲେ କିମ୍ବା ଭାରତ ପାଇଁ ସ୍ୱାଧୀନତା ଆଣିଥିବା ମହାତ୍ମା ଗାନ୍ଧୀ ବି ନଥିଲେ । ଏହି ପତାକା ପ୍ରତି ଯେଉଁମାନଙ୍କର ସମ୍ମାନବୋଧ ରହିଛି ସେମାନେ ଜାତି, ବର୍ଣ୍ଣ ଧର୍ମ ନିର୍ବିଶେଷରେ ନାଗରିକ ହିସାବରେ ସମାନ ଅଧିକାର ଉପଭୋଗ କରିବେ .. ।'

ପଣ୍ଡିତ ନେହେରୁଙ୍କ ଉକ୍ତିକୁ ସମର୍ଥନ କରି ଡଃ ସର୍ବପଲ୍ଲୀ ରାଧାକ୍ରିଷ୍ଣ କହିଥିଲେ – ଏହି ଜାତୀୟ ପତାକା ଜାତିର ବର୍ତ୍ତମାନ ସହିତ ଅତୀତକୁ ସଂଯୋଗ କରେ । ପତାକା ମଝିରେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ରଙ୍ଗ ହେଉଛି ଧଳା । ଏହା ସ୍ୱଚ୍ଛ ସୂର୍ଯ୍ୟକିରଣ ପରି ସତ୍ୟ ଓ ଆଦର୍ଶର ଆଲୋକ ଦେଖାଇ ଏହି ଧଳାରଙ୍ଗ ଆମ ବ୍ୟବହାରକୁ ନିୟନ୍ତ୍ରଣ କରେ । ଆଲୋକର ସ୍ୱଚ୍ଛତା ଆମ ସରଳ ବ୍ୟବହାରକୁ ସୂଚିତ କରେ । ସଦ୍‌ଗୁଣର ଅଭ୍ୟାସ ହେଉଛି ଧର୍ମ, ଧର୍ମର ପଥ ଅନୁସରଣ କଲେ ସତ୍ୟ ଉପଲବ୍‌ଧ ହୋଇଥାଏ । ଯେଉଁମାନେ ଜାତୀୟ ପତାକା ତଳେ କାର୍ଯ୍ୟ କରନ୍ତି ସତ୍ୟ ଓ ଧର୍ମ ସେମାନଙ୍କର ନିୟନ୍ତ୍ରଣକାରୀ ନୀତିରେ ପରିଣତ ହୋଇଥାଏ । ଜାତୀୟ ପତାକା ଆମ କାନେ କାନେ କହେ – ଯାହା ସର୍ବଦା ଗତିଶୀଳ ତାହା ଧର୍ମ । ସବୁବେଳେ ଘୂରି ବୁଲୁଥିବା ଚକ କହି ଚାଲିଥାଏ– ଗତିରେ ହିଁ ଜୀବନ । ଗତିହୀନତାରେ ମୃତ୍ୟୁ । କମଳା ରଙ୍ଗ ତ୍ୟାଗ ଭାବନାର ଇଙ୍ଗିତ ଦିଏ । ତ୍ୟାଗ ଭାବନା ନ ଥିଲେ କେହି ଜନସେବା କରିପାରେ ନହିଁ । ମହାତ୍ମା ଗାନ୍ଧୀ ସେହି ତ୍ୟାଗ ଭାବନାର ମୂର୍ତ୍ତି । ସବୁଜରଙ୍ଗ ମାଟି ମା' ସହିତ ଆମ ସଂପର୍କର କଥା କହେ । ଉଦ୍ଭିଦ ଜଗତ ଉପରେ ସମସ୍ତ ପ୍ରାଣୀ ଜଗତ ନିର୍ଭର କରେ । ଏହି ସବୁଜ ପୃଥିବୀରେ ଆମେ ସ୍ୱର୍ଗ ତୋଳି ଥାଉଁ । ସେ କହୁଥିଲେ, ଗୋଟିଏ ମୁକ୍ତ, ନମନୀୟ, ଉଦାର ସୁନ୍ଦର ଗଣତନ୍ତ୍ର ସମାଜ ପାଇଁ କାମ କରିଚାଲ । ଏହା ଫଳରେ ଖ୍ରୀଷ୍ଟିୟାନ୍, ଶିଖ୍, ମୁସ୍‌ଲିମ୍, ହିନ୍ଦ, ବୌଦ୍ଧ ସମସ୍ତେ ଏହି ଜାତୀୟ ପତାକା ତଳେ ଏକ ନିରାପଦ ଆଶ୍ରୟ ଲାଭ କରିପାରିବେ । ସେ ପୁଣି କହୁଥିଲେ – ଧର୍ମଚକ୍ର ହେଉଛି ବେଗର ନିଦର୍ଶନ । ଭାରତ ଏହାଦ୍ୱାରା ଜଣାଇ ଦେଇଛି ଯେ ପରିବର୍ତ୍ତନ କ୍ଷେତ୍ରରେ ପ୍ରତିବନ୍ଧକ ସୃଷ୍ଟି କରାଯିବ ନାହିଁ । ତେଣୁ ଜାତୀୟ ପତାକା ଉତ୍ତୋଳନ କଲାବେଳେ ଆମେ ଭୁଲିଯିବା ଉଚିତ ନୁହେଁ ଯେ ତ୍ୟାଗ, ସତ୍ୟ ଓ ମାଟି ମା'ର ସମ୍ମାନ ରକ୍ଷା କରିବାକୁ ଆମେ ପ୍ରତିଶ୍ରୁତିବଦ୍ଧ ।

ଶ୍ରୀମତୀ ନାଇଡୁ କହୁଥିଲେ– ଆମ ଜାତୀୟ ପତାକା ଶତ୍ରୁ ମିତ୍ର ସମସ୍ତଙ୍କଠାରୁ ଜ୍ଞାନ ଆହରଣ କରିବାକୁ ଶିକ୍ଷା ଦିଏ । ପୃଥିବୀର ବିଭିନ୍ନ ସଂସ୍କୃତି ଭାରତୀୟ ସଂସ୍କୃତିକୁ ପରିପୁଷ୍ଟ କରେ । ଇସ୍‌ଲାମ୍ କ'ଣ ଭାରତକୁ ଗଣତାନ୍ତ୍ରିକ ଭ୍ରାତୃଭାବନା ଆଣି ନାହିଁ ? ଇରାନ୍‌ରୁ ଆସିଥିବା ଜୋରାଷ୍ଟ୍ରିୟାନ୍‌ମାନେ ଭାରତକୁ କ'ଣ ସାହସ ଆଣି ନାହାନ୍ତି ? ଖ୍ରୀଷ୍ଟିୟାନ୍‌ମାନେ କ'ଣ ଭାରତକୁ ସେବା ଭାବନା ଦେଇ ନାହାନ୍ତି ? ହିନ୍ଦୁମାନେ କ'ଣ ମଣିଷ ସମାଜକୁ ବିଶ୍ୱପ୍ରେମ ଶିଖାଇ ନାହାନ୍ତି ? ଆମ ଜାତୀୟ ପତାକାରେ ସ୍ଥାନିତ ଧର୍ମଚକ୍ର ହେଉଛି ବୌଦ୍ଧ ଧର୍ମର ପ୍ରତୀକ । ଏହା ସମଗ୍ର ପୃଥିବୀ ପାଇଁ ମୈତ୍ରୀ ଓ କରୁଣାର ବାର୍ତ୍ତା ପ୍ରଚାର କରେ । ଦାର୍ଶନିକ ଏଚ୍.ଜି. ୱେଲ୍‌ସ ପୃଥିବୀର ଛଅ ଜଣ ବ୍ୟକ୍ତିଙ୍କୁ ଇତିହାସ ପୁରୁଷ ଭାବେ ବର୍ଣ୍ଣନା କରିଛନ୍ତି । ଏମାନଙ୍କ ମଧ୍ୟରେ ଅଶୋକ ଓ ବୁଦ୍ଧଦେବ ଅନ୍ୟତମ । ଅଶୋକ ହେଉଛନ୍ତି ଏକ ଉଜ୍ଜ୍ୱଳ ତାରକା । ଦୟା ଓ ପ୍ରେମର ଅସ୍ତ୍ରରେ ସେ ସମଗ୍ର ପୃଥିବୀ ଜୟ କରିପାରିଥିଲେ । ସମ୍ରାଟ ଅଶୋକ ବିଭିନ୍ନ ସ୍ତମ୍ଭମାନଙ୍କରେ ମହାତ୍ମା ବୁଦ୍ଧଙ୍କର ଦୟା,

ପ୍ରେମ ଓ ଧୈର୍ଯ୍ୟର ବାଣୀ ପ୍ରଚାର କରିଯାଇଛନ୍ତି । ଧର୍ମଚକ୍ର ହେଉଛି ଏକ ଶାଶ୍ୱତ ଧର୍ମ ଯାହାକୁ ସମସ୍ତେ ସ୍ଥାନ କାଳ ପାତ୍ର ନିର୍ବିଶେଷରେ ସମ୍ମାନ ଦେଇଥାନ୍ତି ।

ଏହିପରି ବିଭିନ୍ନ ରାଜନୈତିକ ପଣ୍ଡିତମାନଙ୍କର ଉକ୍ତିରୁ ସିଦ୍ଧାନ୍ତରେ ଉପନୀତ ହେବାକୁ ହୁଏ ଯେ ଉପରେ ଥିବା କମଳା ରଙ୍ଗଟି ସାହସ, ତ୍ୟାଗ ଭାବନା, ଶ୍ରଦ୍ଧା ଓ ଆତ୍ମଦାନର ସୂଚନା ଦିଏ । ଧଳାରଙ୍ଗ ସତ୍ୟ, ସୂର୍ଯ୍ୟଙ୍କ ପରି ଅସୀମ ଶକ୍ତି ଓ ଶାନ୍ତିର ସଙ୍କେତ ବହନ କରେ । ଏହା ସୂଚାଇ ଦିଏ ଯେ ସମାଜରେ ମିଥ୍ୟାଚାର ନ ରହି ରହିବ କେବଳ ସତ୍ୟ । ସକଳ ପ୍ରକାର ଅଶାନ୍ତି ଦୂର ହୋଇ ଦେଶରେ କେବଳ ଶାନ୍ତି ବିରାଜମାନ କରିବ । ଜାତି, ଧର୍ମ, ବର୍ଣ୍ଣ, ଭାଷା ଓ ସଂପ୍ରଦାୟର ବିଭେଦ ବା ବିଦ୍ୱେଷ ରହିବ ନାହିଁ । ତଳେ ଥିବା ସବୁଜ ରଙ୍ଗର ପଟିଟି ବିଶ୍ୱାସ, ବୀରତ୍ୱ ଓ ପ୍ରଗତିର ବାର୍ତ୍ତା ପ୍ରଚାର କରେ । ଅଶୋକ ଚକ୍ର ଅହିଂସାର ସଙ୍କେତ ଅଟେ । ସ୍ୱାଧୀନ ଭାରତରେ କେହି କାହାକୁ ହିଂସା କରିବେ ନାହିଁ । ଭାରତୀୟମାନଙ୍କ ମଧ୍ୟରେ ଖାଲି ପ୍ରେମ-ପ୍ରୀତି--ଶ୍ରଦ୍ଧା ଓ ସଦ୍‌ଭାବର ସଂପର୍କ ରହିବ । ଚକ୍ରର ଚବିଶିଟି ଅର ଦିନରାତି ଚବିଶି ଘଣ୍ଟାକୁ ସୂଚାଇ ଗତିଶୀଳ ସମୟ ବିଷୟରେ ଆମ୍ଭମାନଙ୍କୁ ସଚେତନ କରାଏ । ଏବେ ଅବଶ୍ୟ ଜାତୀୟ ପତାକାକୁ ରାତିରେ ଉଡ଼ାଇବା ବିଷୟରେ ପ୍ରସ୍ତାବ ଦିଆଗଲାଣି ।

ଜାତୀୟ ପତାକା ଆମର ଆଦର୍ଶ । ଏହାକୁ ଅସମ୍ମାନ କରିବା ଅପରାଧ ଅଟେ । ଏହାକୁ ନଷ୍ଟ କରିବା ପାପ । ଏହାର ମାନମର୍ଯ୍ୟାଦା ରକ୍ଷା କରିବା ଆମ ସମସ୍ତଙ୍କର ପରମ କର୍ତ୍ତବ୍ୟ ଅଟେ ।

କ୍ୱା.ନଂ- ସି-୨୨/୧, ନାଲ୍‌କୋ
ଦାମନଯୋଡ଼ି, କୋରାପୁଟ-୭୬୩୦୦୮

---

# କେନ୍ଦୁପତ୍ର ତୋଳିବା ମୂଲ୍ୟ କ୍ୱିଣ୍ଟାଲ ପିଛା ୨୫୦ ଟଙ୍କା ବଢ଼ିଲା

ରାଜ୍ୟ ସରକାର ଚଳିତ ବର୍ଷ କେନ୍ଦୁପତ୍ର କେରି ତୋଳିବା ପାଇଁ କେରିର ମୂଲ୍ୟରେ ୫ ପଇସା ବୃଦ୍ଧି କରିଥିଲାବେଳେ ଏକ କ୍ୱିଣ୍ଟାଲ କେନ୍ଦୁପତ୍ରର ମୂଲ୍ୟରେ ୨୫୦ ଟଙ୍କା ବୃଦ୍ଧି କରିଛନ୍ତି । ଏହାଫଳରେ ରାଜ୍ୟର ୭୫୯୪୨୮ ଜଣ କେନ୍ଦୁପତ୍ର ତୋଳାଳି ଉପକୃତ ହେବେ । ତେବେ ଏଥିନେଇ ଚଳିତ ମାସ ଶେଷସୁଦ୍ଧା ସରକାରୀ ବିଜ୍ଞପ୍ତି ପ୍ରକାଶ ପାଇବ ବୋଲି ଜଣାପଡ଼ିଛି । ସଚିବାଳୟରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇ ଏହି ନିଷ୍ପତ୍ତି ନିଆଯାଇଛି । ପୂର୍ବରୁ ୨୦ଟି କେନ୍ଦୁପତ୍ର ଥିବା ଏକ କେରିକୁ ତୋଳିବା ପାଇଁ ୨୯ ପଇସା ମିଳୁଥିବାବେଳେ ଚଳିତ ବର୍ଷ ୩୪ ପାଇସାକୁ ବୃଦ୍ଧି କରାଯାଇଛି । କେରି ପ୍ରତି ୫ ପଇସା ବୃଦ୍ଧି ରାଜ୍ୟରେ ସର୍ବପ୍ରଥମ । କେନ୍ଦୁପତ୍ର କ୍ୱିଣ୍ଟାଲ ପ୍ରତି ୧୬୫୦ ଟଙ୍କା ଥିଲାବେଳେ ଚଳିତ ବର୍ଷ ଏହାକୁ ୧୯୦୦ ଟଙ୍କାକୁ ବୃଦ୍ଧି କରାଯାଇଛି । ଏହାଫଳରେ କେନ୍ଦୁପତ୍ର ତୋଳାଳି ଏବଂ ନିଗମ ଲାଭବାନ ହୋଇପାରିବ । ଚଳିତ ବର୍ଷ ରାଜ୍ୟରେ ୧୦ ହଜାର କ୍ୱିଣ୍ଟାଲ କେନ୍ଦୁପତ୍ର ତୋଳିବା ପାଇଁ ଲକ୍ଷ୍ୟ ରଖାଯାଇଛି । କେନ୍ଦୁପତ୍ର ତୋଳାକାର୍ଯ୍ୟରେ ନିୟୋଜିତ ଥିବା ୮୦ ଜଣ ବ୍ୟକ୍ତିଙ୍କର ଏ ମଧ୍ୟରେ ମୃତ୍ୟୁ ଘଟିଥିଲା । ପ୍ରତ୍ୟେକ ମୃତକଙ୍କୁ ୫୦ ହଜାର ଟଙ୍କାର ଅନୁକମ୍ପା କେନ୍ଦୁପତ୍ର କଲ୍ୟାଣ ପାଣ୍ଠିରୁ ଯୋଗାଇ ଦିଆଯାଇଛି । ୨୦୦୯ ମସିହାରେ କେନ୍ଦୁପତ୍ର ଶ୍ରମିକ କଲ୍ୟାଣ ପାଣ୍ଠିକୁ ୧୫ ଲକ୍ଷ ୮୭ ହଜାର ଟଙ୍କା ମିଳିଥିଲା । ରାଜ୍ୟ ସରକାର ସମପରିମାଣର ଅର୍ଥ କଲ୍ୟାଣ ପାଣ୍ଠିକୁ ପ୍ରଦାନ କରିଥିଲେ । ସେହିପରି ପଞ୍ଚାୟତିରାଜ ବିଭାଗ ୨୦୦୮ ମସିହାରେ ୮୬ ଲକ୍ଷ ଟଙ୍କା ପ୍ରଦାନ କରିଛନ୍ତି । ସେଥିମଧ୍ୟରୁ ୪୩ ଲକ୍ଷ ଟଙ୍କା କଲ୍ୟାଣ ପାଣ୍ଠିକୁ ପ୍ରଦାନ କରାଯାଇଛି । ସେହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ମୁଖ୍ୟ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ରଙ୍କ ସମେତ ଜଙ୍ଗଲ ଓ ପରିବେଶ ବିଭାଗ ପ୍ରମୁଖ ଶାସନ ସଚିବ ପଞ୍ଚାୟତିରାଜ ବିଭାଗ ସଚିବ ଶ୍ରୀ ସୁରେନ୍ଦ୍ର ନାଥ ତ୍ରିପାଠୀ ଏବଂ ବିଡ଼ି ଶ୍ରମିକ ସଂଘର ନେତା ଯୋଗେନ୍ଦ୍ର ତ୍ରିପାଠୀ ପ୍ରମୁଖ ଯୋଗଦେଇ କେନ୍ଦୁପତ୍ର ତୋଳାଳିମାନଙ୍କର ମଜୁରୀ ବୃଦ୍ଧି ସଂପର୍କରେ ନିଷ୍ପତ୍ତି ନେଇଥିଲେ ।

# ଆମ ସାଧାରଣତନ୍ତ୍ର : ଏକ ଦୃଷ୍ଟିପାତ

ଅଧ୍ୟାପକ ବିଶ୍ୱରଂଜନ

**ଜା**ନୁଆରୀ ୨୬ ତାରିଖଟି ଆମର ଜାତୀୟ ଜୀବନରେ ଏକ ସ୍ମରଣୀୟ ଦିବସ ରୂପେ ପାଳିତ ହୋଇ ଆସୁଛି ୧୯୫୦ ମସିହାରୁ । କାରଣ ଏହି ଦିନଠାରୁ ଆମ ସ୍ୱାଧୀନ ଭାରତର ନୂତନ ସମ୍ବିଧାନ କାର୍ଯ୍ୟକାରୀ ହେଲା । ୧୯୪୭ ଅଗଷ୍ଟ ପନ୍ଦରର ସୂର୍ଯ୍ୟ ଏ ଦେଶରୁ ଦୀର୍ଘ ଦୁଇ ଶତାବ୍ଦୀର ପରାଧୀନତାର ଘନ ଅନ୍ଧକାରକୁ ସିନା ଦୂରେଇ ଦେଲା, ହେଲେ ୧୯୫୦ ଜାନୁଆରୀ ୨୬ ତାରିଖ କିନ୍ତୁ ଭାରତୀୟମାନଙ୍କର ବହୁ ଦିନର ସ୍ୱପ୍ନକୁ ସଫଳ କରି ଭାରତବର୍ଷକୁ ଏକ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ଭାବରେ ସମଗ୍ର ବିଶ୍ୱରେ ପରିଚିତ କରାଇ ଦେଲା । ସୁତରାଂ 'ସାଧାରଣତନ୍ତ୍ର ଦିବସ' ଭାବରେ ଏହି ଦିବସଟିର ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ରହିଛି । ସମ୍ବିଧାନର ପ୍ରଚଳନ ଦୃଷ୍ଟିରୁ ଏହି ଦିବସଟିକୁ 'ସମ୍ବିଧାନ ଦିବସ' ରୂପେ ମଧ୍ୟ ଅଭିହିତ କରାଯାଇପାରେ ।

'ସମ୍ବିଧାନ ଦିବସ' ହେଉ ବା 'ସାଧାରଣତନ୍ତ୍ର ଦିବସ' – ଏହି ଦିନଟିକୁ ଏକ 'ଜାତୀୟ ଦିବସ' ରୂପେ ପାଳନ କଲାବେଳେ ଏହାର ଆଦର୍ଶ ଓ ଉଦ୍ଦେଶ୍ୟକୁ ସର୍ବଦା ସ୍ମରଣ ରଖିବାକୁ ହେବ । ତାକୁ ଯଥାବିଧି କାର୍ଯ୍ୟକାରୀ କରାଇବାକୁ ହେବ । କ'ଣ ଆମ ସମ୍ବିଧାନର ମୂଳ ମନ୍ତ୍ର ? କ'ଣ ଆମ ସାଧାରଣତନ୍ତ୍ରର ଆଦର୍ଶ ଓ ଉଦ୍ଦେଶ୍ୟ ? ଜାତିର ଜନକ ମହାତ୍ମା ଗାନ୍ଧୀ ଏହି ପ୍ରସଙ୍ଗରେ ଥରେ କହିଥିଲେ – 'ମୁଁ ଭାରତଲାଗି ଏଭଳି ଏକ ସମ୍ବିଧାନ କରିବାର ପ୍ରୟାସୀ ହୋଇଛି, ଯାହା ଭାରତବାସୀଙ୍କୁ ସବୁ ଅଧିକାର ଦେବ । ଏପରିକି ଆବଶ୍ୟକତା ପଡ଼ିଲେ ପାପ କରିବାର ଅଧିକାର ମଧ୍ୟ । ମୁଁ ଏଭଳି ଏକ ଭାରତ ନିର୍ମାଣ କରିବାକୁ ଚାହେଁ, ଯେଉଁଠାରେ ଦରିଦ୍ରରୁ ଦରିଦ୍ରତମ ବ୍ୟକ୍ତି ମଧ୍ୟ ଅନୁଭବ କରିବ ଯେ, ଏହା ହେଉଛି ତା' ନିଜର ଦେଶ ଏବଂ ଏହାର ନିର୍ମାଣରେ ତା' ମତର ମର୍ଯ୍ୟାଦା ରହିଛି । ମୁଁ ଏଭଳି ଏକ ଭାରତ ଚାହେଁ, ଯେଉଁଠାରେ ଉଚ୍ଚ-ନୀଚର ଭେଦଭାବ ରହିବ ନାହିଁ ଏବଂ ସବୁ ସଂପ୍ରଦାୟର ଲୋକେ ମିଳିମିଶି ପରସ୍ପର ମଧ୍ୟରେ ସଦ୍‌ଭାବ ରକ୍ଷା କରି ଚଳିବେ ।' ଗାନ୍ଧିଜୀଙ୍କର ଏଭଳି ଏକ ସୁନ୍ଦର ସ୍ୱପ୍ନର ସ୍ୱାଧୀନ ଭାରତ ନିର୍ମାଣର ଅଭିବ୍ୟକ୍ତି ନିଶ୍ଚିତ ଭାବରେ ପ୍ରତିଫଳିତ ହୋଇଛି ଆମ ସମ୍ବିଧାନରେ । ତାହା କେତେଦୂର କାର୍ଯ୍ୟକାରୀ ହୋଇଛି – ତାହା ଏକ ଭିନ୍ନ ପ୍ରସଙ୍ଗ । ମାତ୍ର ପ୍ରଥମେ ଚିହ୍ନାଯାଉ ଏହି ଆଦର୍ଶଗୁଡ଼ିକୁ । ଉପଲବ୍ଧ କରାଯାଉ ଏହାର ଭାବଧାରା ।

ଭାରତକୁ ଏକ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ପରିଣତ କରିଥିବା ଆମ ସମ୍ବିଧାନର ମୂଳମନ୍ତ୍ର ହେଉଛି, ମୋ' ବିଚାରରେ ଚାରୋଟି – ନ୍ୟାୟ, ସ୍ୱାଧୀନତା, ସାମ୍ୟ ଓ ମିତ୍ରତା (Justice, Liberty, Equality & Fraternity) । ଏହି ଆଦର୍ଶ ଭାବଧାରାଗୁଡ଼ିକ ମୂଳରୁ ଆମ ସମ୍ବିଧାନରେ ମୁଖବନ୍ଧରେ ହିଁ ସ୍ପଷ୍ଟ ଭାବରେ ସୂଚେଇ ଦିଆଯାଇଛି । ପ୍ରଥମେ 'ନ୍ୟାୟ' ପ୍ରଦାନର କଥା କୁହାଯାଇଛି । ସାମାଜିକ ନ୍ୟାୟ, ଅର୍ଥନୈତିକ ନ୍ୟାୟ ଏବଂ ରାଜନୈତିକ ନ୍ୟାୟ – ଜୀବନ ଓ ସମାଜର ପ୍ରତ୍ୟେକ ସ୍ତରରେ 'ନ୍ୟାୟ'ର ଗୁରୁତ୍ୱକୁ ହିଁ ଅଗ୍ରାଧିକାର ଦିଆଯାଇଛି । ଏକ ଭେଦଭାବ ବିହୀନ ସମାଜ ଗଠନ ଏହି 'ନ୍ୟାୟ'ର ଉଦ୍ଦେଶ୍ୟ । ଏହି ନ୍ୟାୟ ହେଉଛି ସମାଜର କଲ୍ୟାଣ ସହିତ ବ୍ୟକ୍ତିଗତ ଆଚରଣର ସମନ୍ୱୟ । ସର୍ବସାଧାରଣଙ୍କ ହିତ ସାଧନ ହେଲା ନ୍ୟାୟର ମୂଳତତ୍ତ୍ୱ ।

ଏହାପରେ ଆସୁଛି 'ମୁକ୍ତି' ବା 'ସ୍ୱାଧୀନତା'ର କଥା । ଦେଶ ସିନା ମୁକ୍ତ ହେଲା ଏକ ବିଦେଶୀ ଶାସନରୁ, ହେଲେ ଏକ ସ୍ୱାଧୀନ ରାଷ୍ଟ୍ରରେ ବ୍ୟକ୍ତି ମଧ୍ୟ ମୁକ୍ତିର ସ୍ୱାଦ ଚାଖିବ । ମୁକ୍ତ ଭାବନା ଏବଂ ଏହାର ମୁକ୍ତ ପରିପ୍ରକାଶ ହେଉଛି ବ୍ୟକ୍ତି ଜୀବନର ଅସଲ କଥା । ଆପଣାର ବିଶ୍ୱାସ ଏବଂ ବିଚାରରେ ସ୍ୱାଧୀନତା ନ ରହିଲେ – ରାଷ୍ଟ୍ରୀୟ ସ୍ୱାଧୀନତା ଅର୍ଥହୀନ ହୋଇପଡ଼ିବ । ଅବଶ୍ୟ ଏକ ସ୍ୱାଧୀନ ରାଷ୍ଟ୍ରରେ ମଧ୍ୟ ବ୍ୟକ୍ତି ସ୍ୱାଧୀନତା ନ ଥାଇପାରେ, ଯଦି ସେ ରାଷ୍ଟ୍ରରେ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ପ୍ରଚଳିତ ନୁହେଁ । ମାତ୍ର ଆମର ଶାସନ ବ୍ୟବସ୍ଥା ଗଣତନ୍ତ୍ରର ନୀତି ଓ ଆଦର୍ଶ ଉପରେ ପ୍ରତିଷ୍ଠିତ ହୋଇଥିବାରୁ ଏହି 'ସ୍ୱାଧୀନତା' ଭାବଧାରାଟିର ବିଶେଷ ମହତ୍ତ୍ୱ ରହିଛି । ଗାନ୍ଧୀଙ୍କ ଭାଷାରେ କହିଲେ, 'ଯଦି ବ୍ୟକ୍ତିର ସ୍ୱାଧୀନତା ନ ରହେ, ତେବେ ସୁନିଶ୍ଚିତ ଭାବରେ ସବୁକିଛି ଅପହୃତ ହୋଇ ରହେ, କାରଣ ଯଦି ବ୍ୟକ୍ତିର କୌଣସି ମହତ୍ତ୍ୱ ନ ରହେ, ତେବେ ସମାଜରେ ଆଉ ପ୍ରକୃତରେ କ'ଣ ରହିଲା ? କେବଳ ଜଣେ ବ୍ୟକ୍ତି ହିସାବରେ ନିଜର ସ୍ୱାଧୀନତା ରହିଥିଲେ ଯାଇ ଜଣେ ମନୁଷ୍ୟ ଆପଣାକୁ ସମାଜର ସେବା ଲାଗି ସ୍ୱେଚ୍ଛା ପ୍ରବୃତ୍ତ ହୋଇ ସମ୍ପୂର୍ଣ୍ଣ ଭାବରେ ସମର୍ପିତ କରିଦେଇ ପାରିବ । ମାତ୍ର ଯଦି ସ୍ୱାଧୀନତାକୁ ତା'ଠାରୁ ଛଡ଼ାଇ ନିଆଯାଏ, ତେବେ ବ୍ୟକ୍ତି କେବଳ ଏକ ଯନ୍ତ୍ରବତ୍ ହୋଇ ରହିବ ଏବଂ ତଦ୍ୱାରା ସମାଜ ବିନାଶପ୍ରାପ୍ତ

ହେବ ।' (ଗାନ୍ଧୀ ମାନସ, ପୃ.୩୬୦) ଯେଉଁ ଭାରତବର୍ଷ, ତା'ର ସୀମାରେ ଜନ୍ମ ଗ୍ରହଣ କରିଥିବା ନିମ୍ନତମ ମନୁଷ୍ୟକୁ ମଧ୍ୟ ସ୍ୱାଧୀନ ହେବାର ନିର୍ଭର ପ୍ରତିଶ୍ରୁତି ଦିଏ ନାହିଁ, ଗାନ୍ଧୀଙ୍କ ଲାଗି ତାହା କଦାପି ଏକ ସ୍ୱାଧୀନ ଭାରତବର୍ଷ ନୁହେଁ । ସ୍ୱାଧୀନତା ହେଉଛି ଜୀବନର ନିଃଶ୍ୱାସ ପ୍ରଶ୍ୱାସ ପରି । ଏହା ବ୍ୟକ୍ତିକୁ ତା' ବ୍ୟକ୍ତିତ୍ୱର ପୂର୍ଣ୍ଣ ବିକାଶ ଲାଗି ଅନୁକୂଳ ପରିବେଶ ସୃଷ୍ଟି କରେ । ଆବଶ୍ୟକୀୟ ଉପାଦାନ ଯୋଗାଇ ଦିଏ ।

ମାତ୍ର ବ୍ୟକ୍ତି ସ୍ୱାଧୀନତା କଥା କହିଲାବେଳେ ଭୁଲିଗଲେ ଚଳିବ ନାହିଁ ଯେ ବ୍ୟକ୍ତିର ଏକ ସାମାଜିକ ସତ୍ତା ମଧ୍ୟ ରହିଛି । ଏକ ନିର୍ଦ୍ଦିଷ୍ଟ ରାଷ୍ଟ୍ରର ଅଧିବାସୀ ଭାବରେ ରାଷ୍ଟ୍ରର ମଧ୍ୟ ତା' ଉପରେ କିଛି ଅଧିକାର ଓ ନିୟନ୍ତ୍ରଣ ରହିଛି । ସୁତରାଂ ସଂପୂର୍ଣ୍ଣ ପ୍ରତିବନ୍ଧକ ଶୂନ୍ୟ ତଥା ନିୟନ୍ତ୍ରଣବିହୀନ ସ୍ୱାଧୀନତାକୁ ଆମେ ପ୍ରକୃତ ସ୍ୱାଧୀନତା କହିପାରିବା ନାହିଁ । କୌଣସି ପ୍ରତିବନ୍ଧକ ନଥିବା ବ୍ୟକ୍ତିବାଦ ବା ବ୍ୟକ୍ତି ସ୍ୱାଧୀନତା ହେଉଛି ଜଙ୍ଗଲ-ସଭ୍ୟତାର ଲକ୍ଷଣ । ଏହାଦ୍ୱାରା ସମାଜରେ ବିଶୃଙ୍ଖଳା ସୃଷ୍ଟି ହେବ ଏବଂ ସମସ୍ତେ ସମାନ ଭାବରେ କେବେ ସ୍ୱାଧୀନତା ଉପଭୋଗ କରିପାରିବେ ନାହିଁ । ନିଜର ସ୍ୱାଧୀନତା ଅନ୍ୟ ପାଇଁ ଯେପରି ବିପଦ ବା ଆତଙ୍କର କାରଣ ନହୁଏ, ସେଥିପ୍ରତି ମଧ୍ୟ ଦୃଷ୍ଟି ଦେବାକୁ ହେବ । ତେଣୁ ଆଇନ୍ ଦ୍ୱାରା ହିଁ ରାଷ୍ଟ୍ରରେ ବ୍ୟକ୍ତିର ସ୍ୱାଧୀନତା ସୁରକ୍ଷିତ ରହେ । ଭାରତର ସାଧାରଣତନ୍ତ୍ରର ଆଦର୍ଶ ହେଉଛି ବ୍ୟକ୍ତି-ସ୍ୱାଧୀନତା ଅକ୍ଷୁଣ୍ଣ ରହିବ – ମାତ୍ର ତା'ର ସାମାଜିକ ସତ୍ତା ମଧ୍ୟ ବିପନ୍ନ ହେବ ନାହିଁ । ସାମାଜିକ ଅଗ୍ରଗତିରେ ବ୍ୟକ୍ତିର ସ୍ୱାଧୀନତା ଆଦୌ ବାଧକ ହେବ ନାହିଁ ।

'ସ୍ୱାଧୀନତା' ସହିତ ସଂଯୁକ୍ତ ହୋଇ ରହିଛି 'ସାମ୍ୟ' ବା 'ସମତା' । ଏ ଦୁଇ ଭାବଧାରା ପରସ୍ପରର ପରିପୂରକ । ସମତାର ଅର୍ଥ ନୁହେଁ ଯେ, ଶାରୀରିକ, ମାନସିକ ତଥା ବୌଦ୍ଧିକ ଦୃଷ୍ଟିକୋଣରୁ ପ୍ରତ୍ୟେକ ବ୍ୟକ୍ତି ସମାନ । ଏହା ସମ୍ଭବ ମଧ୍ୟ ନୁହେଁ । ବରଂ କହିବାକୁ ଗଲେ, ସମାନତା ନୁହେଁ, ଅସମତା ହିଁ ସୃଷ୍ଟିର ଲକ୍ଷଣ । ସମାନ ଅଙ୍ଗପ୍ରତ୍ୟଙ୍ଗ ନେଇ ଜନ୍ମ ହୋଇଥିଲେ ହେଁ, ଦେଖିବାକୁ କେହି ଏକାଭଳି ନୁହନ୍ତି । ପ୍ରକୃତି ଓ ପ୍ରବୃତ୍ତିରେ ମଧ୍ୟ ପ୍ରତ୍ୟେକ ଅପରଠାରୁ ଭିନ୍ନ । ସୁତରାଂ ଗୋଟିଏ ରାଷ୍ଟ୍ରର ଅଧିକାରୀମାନଙ୍କ ପାଇଁ ସମାନତାର କଥା ଉଲ୍ଲେଖ କଲାବେଳେ ଦୃଷ୍ଟି ଦିଆଯାଇଛି । ପ୍ରତ୍ୟେକ ବ୍ୟକ୍ତିକୁ ସମାନ ସ୍ଥିତି ଓ ସୁଯୋଗ ପ୍ରଦାନ କରାଯିବ । ସାମାଜିକ ପ୍ରଭେଦର ଆଧାର କେବଳ ଏହାର ଉପଯୋଗିତା ପାଇଁ । ପ୍ରତ୍ୟେକ ବ୍ୟକ୍ତିକୁ ନିଜର ସାମର୍ଥ୍ୟ ଓ କାର୍ଯ୍ୟକ୍ଷମତାର ବିକାଶ ଲାଗି ସୁଯୋଗ ମିଳିବା ଉଚିତ୍ । ଆମର ସାଧାରଣତନ୍ତ୍ର ଏହିଭଳି ଏକ ଆଦର୍ଶରେ ଆସ୍ଥା ରଖିଛି, ଯେଉଁଠି ଜଣେ ଶାସକ ଓ ଜଣେ ଶ୍ରମଜୀବୀ, ଜଣେ ଧନୀ ଏବଂ ଜଣେ ଦରିଦ୍ର, ଜଣେ ତଥାକଥିତ ଉଚ୍ଚ ଜାତି ବା ବର୍ଣ୍ଣର, ଅନ୍ୟ ଜଣେ ନିମ୍ନ ଜାତିର – ଏମାନେ ସମସ୍ତେ ଗୋଟିଏ ସ୍ତରର । ଏମାନଙ୍କ ମଧ୍ୟରେ ଭେଦ ବା ଭିନ୍ନତାର ବିଚାର ଆଦୌ ଗ୍ରହଣୀୟ ବା ସ୍ପୃହଣୀୟ ନୁହେଁ ।

ଶେଷରେ ଆମ ସାଧାରଣତନ୍ତ୍ରର ଅସଲ ଗାରିମା ରହିଛି, ସମ୍ବିଧାନରେ ବ୍ୟବହୃତ ଗୋଟିଏ ଶବ୍ଦରେ, ତାହା ହେଉଛି 'ଫ୍ରାଟରନିଟି' Fraternity assuring the dignity of the individual and the unity and integrity of the nation. (ବ୍ୟକ୍ତି ମର୍ଯ୍ୟାଦାର ସୁରକ୍ଷା ସହିତ ଜାତୀୟ ଐକ୍ୟ ତଥା ସଂହତି ବଜାୟ ରଖିବା ଲାଗି 'ଭ୍ରାତୃତ୍ୱ' ବା 'ମୈତ୍ରୀ' ଭାବ ଉପରେ ବିଶେଷ ଗୁରୁତ୍ୱ ଆରୋପ କରାଯାଇଛି ।) 'ସାମ୍ୟ' ଓ 'ସ୍ୱାଧୀନତା' ସହ ଏହି 'ମୈତ୍ରୀ' ସପକ୍ଷରେ ହିଁ ଫରାସୀ ରାଷ୍ଟ୍ର ବିପ୍ଳବ ସମୟରେ ବିପ୍ଳବୀମାନେ ସ୍ୱର ଉତ୍ତୋଳନ କରିଥିଲେ । ଆମ ସାଧାରଣତନ୍ତ୍ର ପାଇଁ ଏହି 'ମୈତ୍ରୀ' ଭାବ ହିଁ ବିଶେଷ ମହତ୍ୱ ରଖେ । କାରଣ, ଭାରତ ହେଉଛି ଏଭଳି ଏକ ବିଶାଳ ଦେଶ, ଯେଉଁଠି ବହୁ ଜାତି, ବହୁ ଧର୍ମ, ବହୁ ବର୍ଣ୍ଣ, ବହୁ ଭାଷା ଓ ଚଳଣିର ଲୋକ ବାସ କରନ୍ତି । ସୁତରାଂ ବହୁ ଅନୈକ୍ୟରେ ଭରପୂର ଭାରତବର୍ଷରେ ରାଷ୍ଟ୍ରୀୟ ଐକ୍ୟ ଓ ସଂହତି ପ୍ରତିଷ୍ଠା ହୋଇ ପାଇବ କେବଳ ପାରସ୍ପରିକ ସଦ୍‌ଭାବ ଭ୍ରାତୃତ୍ୱ ଓ ମୈତ୍ରୀର ଭାବ-ବନ୍ଧନ ଦ୍ୱାରା । ନ୍ୟାୟ, ସାମ୍ୟ ଓ ସ୍ୱାଧୀନତାର ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ ଏକ ରାଷ୍ଟ୍ର ନିର୍ମାଣରେ ସମସ୍ତେ ଭାରତୀୟ ଯେଭଳି ଅନୁଭବ କରିବେ ଯେ, ସେମାନେ ସମସ୍ତ ହେଉଛନ୍ତି, ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଗୋଟିଏ ମାଟି-ମାଆର ସନ୍ତାନ ଏବଂ ଏକ ବିଶାଳ ପରିବାରର ସଦସ୍ୟ ।

ହଁ, ନ୍ୟାୟ, ସ୍ୱାଧୀନତା, ସାମ୍ୟ ଓ ମୈତ୍ରୀ – ଏହା ହିଁ ଥିଲା ଆମ ସାଧାରଣତନ୍ତ୍ରର ଆଦର୍ଶ – ଆମ ସମ୍ବିଧାନର ଘୋଷିତ ନୀତି । ମାତ୍ର **ଆମର ସାଧାରଣତନ୍ତ୍ରର ବୟସ ବଢ଼ିବା ସଂଗେସଂଗେ ଏହାର ଆଦର୍ଶର ଉଲ୍ଲଙ୍ଘନ ମଧ୍ୟ ଅଧିକରୁ ଅଧିକମାତ୍ରାରେ ବଢ଼ି ଚାଲିଛି । ସାମାଜିକ, ଅର୍ଥନୈତିକ କ୍ଷେତ୍ରରେ ବୈଷମ୍ୟ, ମୈତ୍ରୀ ବଦଳରେ ଜାତି, ଧର୍ମକୁ ନେଇ ବୈରତା, ତୀବ୍ର ଆଞ୍ଚଳିକବାଦ ଭିତରେ ଜାତୀୟ ଐକ୍ୟ ଓ ସଂହତି ବିପନ୍ନ ହେବାରେ ଲାଗିଛି ।** ଆଇନ୍‌ର ପ୍ରଣେତା ଓ ପାଳନକର୍ତ୍ତାମାନେ ମଧ୍ୟ ଆଇନ୍‌କୁ ମାନ୍ୟତା ଦେଉନାହାନ୍ତି । ନ୍ୟାୟର ମାର୍ଗ ଅପହଂଚ ହୋଇ ଯାଉଛି । ସ୍ୱାଧୀନତା ହୁଏତ ସ୍ୱେଚ୍ଛାଚାରିତା ଅବା ଅରାଜକତାର ରୂପ ନେଉଛି । ସାରା ପୃଥିବୀରେ ଏକ ନୂତନ ଶକ୍ତି ଭାବରେ ମୁଣ୍ଡ ଟେକି ଠିଆ ହେବା ପାଇଁ ସ୍ୱପ୍ନ ଦେଖୁଥିବା ଭାରତର ନେତୃବର୍ଗ ଏହି ଦୁଃସ୍ଥିତି ସଂପର୍କରେ ଗଭୀର ଭାବରେ ଅନୁଧ୍ୟାନ କରିବାର ବେଳ ଆସିଛି । କାରଣ ଆମର ଗଣତାନ୍ତ୍ରିକ ଶକ୍ତିର ପରାଜୟ ଘଟିଲେ ଆଉ କୌଣସି କ୍ଷେତ୍ରରେ ଅଭ୍ୟୁଦୟ ଆଦୌ ସହଜ କିମ୍ବା ସମ୍ଭବ ହେବ ନାହିଁ ।

ନେତାଜୀ ନିବାସ
୧୯୯, କଂସାରିଫର, ୟୁନିଟ୍-୬
ଭୁବନେଶ୍ୱର-୧



# ଆମ ସାଧାରଣତନ୍ତ୍ରର ଆଭିମୁଖ୍ୟ

ଲକ୍ଷ୍ମୀ ନାରାୟଣ ପାଠୀ

୧୯୫୦ ଜାନୁଆରୀ ୨୬ ତାରିଖ । ଭାରତକୁ ସେହିଦିନ ଏକ ସାର୍ବଭୌମ ସାଧାରଣତନ୍ତ୍ର ରାଷ୍ଟ୍ରର ସ୍ୱୀକୃତି ମିଳିଲା । ୧୮ ଜୁଲାଇ ୧୯୪୭ରେ ବିଲାତ ପାର୍ଲାମେଣ୍ଟରେ ଭାରତୀୟ ସ୍ୱାଧୀନତା ବିଲ ଆଗତ ହୋଇଥିଲା । ୧୯୪୭ ଅଗଷ୍ଟ ୧୫ରେ ଦେଶ ସ୍ୱାଧୀନ ହେଲା । ସ୍ୱାଧୀନତା ଇତିହାସରେ ଦେଶ ବିଭାଜନ ଥିଲା ଅତ୍ୟନ୍ତ ଦୁଃଖଦ ଘଟଣା । ଦେଶପ୍ରେମୀ ନାଗରିକଙ୍କୁ ଏହା ଦାରୁଣ ଆଘାତ ଦେଇଥିଲା ।

ଭାରତ ସ୍ୱରାଜ ହାସଲ କରିବାର ବହୁବର୍ଷ ପୂର୍ବରୁ ଗାନ୍ଧିଜୀ ଜାନୁଆରୀ ୨୬ ଦିବସରେ ଦେଶକୁ ସ୍ୱାଧୀନ ରାଷ୍ଟ୍ର ରୂପେ ଘୋଷଣା କରିଥିଲେ । ପ୍ରତି ଜାନୁଆରୀ ୨୬ରେ କଂଗ୍ରେସର କର୍ମୀମାନେ ପ୍ରଭାତଫେରି କରୁଥିଲେ । ଏହା ସାଙ୍ଗକୁ ଦେଶଭକ୍ତି ସଙ୍ଗୀତ ଗାନ କରି ତ୍ରିରଙ୍ଗା ଉତ୍ତୋଳନ କରୁଥିଲେ । ୧୯୪୭ ଜାନୁଆରୀ ୨୬ ତାରିଖରେ ଭାରତକୁ ସ୍ୱାଧୀନତା ଦେବା ଥିଲା ଇଂରେଜ ସରକାରଙ୍କ ଇଚ୍ଛା । ମାତ୍ର ସାଂପ୍ରଦାୟିକ ଦଙ୍ଗା ଯୋଗୁଁ ଏହା ସମ୍ଭବପର ହୋଇ ନଥିଲା ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଅଖଣ୍ଡ ଭାରତବର୍ଷର ଶାସନଗତ ସୁବିଧା ଲାଗି ଏକ ସମ୍ବିଧାନର ଆବଶ୍ୟକତାକୁ ଭାରତୀୟ ନେତୃବୃନ୍ଦ ଚିନ୍ତା କରିଥିଲେ । ଏଥିଲାଗି ୧୯୪୬ ଡିସେମ୍ବର ୯ ତାରିଖରେ କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲି ଗଠିତ ହେଲା । ଆସେମ୍ବ୍ଲିର ସଭ୍ୟସଂଖ୍ୟା ଥିଲା ୩୮୫ । ପ୍ରାଦେଶିକ ବିଧାନସଭା ସଦସ୍ୟଙ୍କ ଦ୍ୱାରା ମନୋନୀତ ସଭ୍ୟ ଥିଲେ ୨୯୨ ଜଣ । ଅନ୍ୟ ୯୩ ଜଣ ଥିଲେ ରାଜୋଡ଼ା ଶାସିତ ଅଞ୍ଚଳର । ଦେଶ ବିଭାଜନ ପରେ ପାକିସ୍ଥାନର ସଭ୍ୟମାନେ ଆସେମ୍ବ୍ଲିରୁ ବାଦ୍ ପଡ଼ିଥିଲେ । ଏହାପରେ କନ୍‌ଷ୍ଟିଚ୍ୟୁଏଣ୍ଟ ଆସେମ୍ବ୍ଲିର ପୁନର୍ବିନ୍ୟାସ ହୋଇଥିଲା । ନବଗଠିତ ଆସେମ୍ବ୍ଲିରେ ୨୮୪ ଜଣ ସଭ୍ୟ ରହିଲେ । ସଚ୍ଚିଦାନନ୍ଦ ସିଂହ୍ନା ଥିଲେ ଏହାର ସଭାପତି । ତାଙ୍କର ମୃତ୍ୟୁପରେ ସ୍ୱାଧୀନ ଭାରତର ପ୍ରଥମ ରାଷ୍ଟ୍ରପତି ଡଃ ରାଜେନ୍ଦ୍ର ପ୍ରସାଦ ଏହାର ଅଧକ୍ଷତା କରିଥିଲେ । ୧୯୪୮ ଫେବୃଆରୀରେ ସମ୍ବିଧାନର ଏକ ଚିଠା ପ୍ରକାଶ ପାଇଥିଲା । ୧୯୪୯ ନଭେମ୍ବର ୨୬ ତାରିଖରେ ଆସେମ୍ବ୍ଲିର ସମସ୍ତ ସଭ୍ୟ ସ୍ୱାକ୍ଷର କରି ଏହାକୁ ଚୂଡ଼ାନ୍ତ ରୂପ ଦେଇଥିଲେ । ଫଳରେ ୧୯୫୦ ଜାନୁଆରୀ ୨୬ ତାରିଖରୁ ଭାରତୀୟ ସମ୍ବିଧାନ କାର୍ଯ୍ୟକାରୀ ହେଲା ।

ପ୍ରଥମଥର ଲାଗି ଭାରତର ସାଧାରଣତନ୍ତ୍ର ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା । ଏହାର ପୂର୍ବରାତ୍ରିରେ ସାଧାରଣତନ୍ତ୍ର ଦିବସର ମର୍ମ ବୁଝାଇବାକୁ ଯାଇ ପଣ୍ଡିତ ଜବାହରଲାଲ ନେହେରୁ ଜାତି ଉଦ୍ଦେଶ୍ୟରେ ବେତାର ଭାଷଣରେ କହିଥିଲେ, "To found our republican freedom on the basic factors on which Gandhiji laid stress throughout his career - high character, integrity of mind and purpose, a spirit of tolerance and co-operation and hard work" - Pandit Nehru asked them to shed fear and hatred and think always of the betterment of the millions of our people."

୧୯୫୦ର ସାଧାରଣତନ୍ତ୍ର ଦିବସରେ ସ୍ୱତନ୍ତ୍ର ନିମନ୍ତ୍ରିତ ଅତିଥି ଥିଲେ ଇଣ୍ଡୋନେସିଆର ତତ୍‌କାଳୀନ ରାଷ୍ଟ୍ରପତି ଡଃ ସୁକର୍ଣ୍ଣ । ଜାନୁଆରୀ ୨୪ ତାରିଖ ଦିନ ବିମାନରେ ଆସି ଦିଲ୍ଲୀର ୱିଲିଙ୍ଗଡ଼ନ୍ ବିମାନ ବନ୍ଦରରେ ସେ ପଦାର୍ପଣ କରିଥିଲେ । ସେଠାରେ ତାଙ୍କୁ ସ୍ୱାଗତ ଜଣାଇବା ଲାଗି ଉପସ୍ଥିତ ଥିଲେ ପଣ୍ଡିତ ନେହେରୁ, ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ଓ ଅନ୍ୟାନ୍ୟ ନେତୃବୃନ୍ଦ । ୨୫ ତାରିଖ ଦିନ ଦିଲ୍ଲୀର କାଉନ୍‌ସିଲ ଅଫ୍ ଷ୍ଟେଟ୍ ଚାମ୍ବର ସଭାଗୃହରେ ଡଃ ସୁକର୍ଣ୍ଣଙ୍କର ବିଶେଷ କାର୍ଯ୍ୟକ୍ରମ ଥିଲା । ସାମରିକ ପୋଷାକ ପରିଧାନ କରି ଡଃ ସୁକର୍ଣ୍ଣ ନିର୍ଦ୍ଧାରିତ ସମୟରେ ସେଠାକୁ ଯାଇଥିଲେ । ଡଃ ସୁକର୍ଣ୍ଣଙ୍କ ଧର୍ମପତ୍ନୀ ହଲାଣ୍ଡର ରାଷ୍ଟ୍ରଦୂତ ଏମ୍ ଲାମ୍ପିଙ୍ଗ ଓ ମାଡ଼ାମ୍ ଲାମ୍ପିଙ୍ଗ ତଥା ଆମେରିକାରେ ଅବସ୍ଥାପିତ ଭାରତର ରାଷ୍ଟ୍ରଦୂତ ବିଜୟଲକ୍ଷ୍ମୀ ପଣ୍ଡିତ ଇଣ୍ଡୋନେସିଆର ରାଷ୍ଟ୍ରପତିଙ୍କୁ ଅନୁସରଣ କରିଥିଲେ ।

ସେ ସମୟରେ ଭାରତୀୟ ସଂସଦର ବାଚସ୍ପତି ଥିଲେ ଜି.ଭି. ମାଭଲଙ୍କର । ଡଃ ସୁକର୍ଣ୍ଣଙ୍କୁ ସ୍ୱାଗତ ଜଣାଇ ସେ କହିଥିଲେ – "It is a great privilege to have this opportunity to welcome to our country the great fighter for independence in Indonesia. Both our countries have been for a long time in the same fight, and both countries have achieved their independence about the same time. We are happy that he should come on a day when we are going to declare our republic. On behalf of myself and members of Parliament, I extend you a hearty and cordial welcome."

ଭାରତ ଲାଗି ସାଧାରଣତନ୍ତ୍ର ରାଷ୍ଟ୍ରର ପରିଚୟ ହାସଲ କରିବା ଥିଲା ଏକ ଯୁଗାନ୍ତକାରୀ ଘଟଣା । ଆଜିକୁ ୫୨ ବର୍ଷ ପୂର୍ବେ ଜାନୁଆରୀ ୨୬ର ଐତିହାସିକ ମୁହୂର୍ତ୍ତରେ ଏହାର ଶୁଭାରମ୍ଭ ହୋଇଥିଲା । ଏହି ଉପଲକ୍ଷେ ରାଜଧାନୀର ଦରବାର ହଲରେ ବିଶିଷ୍ଟ ନେତୃବୃନ୍ଦ ଏକତ୍ରିତ ଥିଲେ । ସମୟ ଥିଲା ପୂର୍ବାହ୍ନ ୧୦ ଘଣ୍ଟା ୧୫ ମିନିଟ । ଡଃ ରାଜେନ୍ଦ୍ର ପ୍ରସାଦ ହଲରେ ପହଞ୍ଚିଲେ । ତାଙ୍କୁ ପାଛୋଟି ନେଇଥିଲେ ତତ୍କାଳୀନ ଗଭର୍ଣ୍ଣର ଜେନେରାଲ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ । ଏଡ଼ିସିଗଣ ଥିଲେ ସମ୍ମୁଖ ଭାଗରେ । ସ୍ୱାଧୀନ ଭାରତକୁ ସାର୍ବଭୌମ ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଘୋଷଣା କରିବାର ବହୁ ପ୍ରତୀକ୍ଷିତ କାର୍ଯ୍ୟକ୍ରମ ଅଳ୍ପ ସମୟ ଭିତରେ ସଂପନ୍ନ ହୋଇଥିଲା । ଏହାପରେ ଡଃ ରାଜେନ୍ଦ୍ର ପ୍ରସାଦ ରାଷ୍ଟ୍ରପତି ରୂପେ ଶପଥ ଗ୍ରହଣ କରିଥିଲେ । ସେ ହେଲେ ଦେଶର ପ୍ରଥମ ରାଷ୍ଟ୍ରପତି । ପାର୍ଶ୍ୱବର୍ତ୍ତୀ ଏକ ଗୃହରେ ଦେଶର ପ୍ରଧାନମନ୍ତ୍ରୀ, ମନ୍ତ୍ରିଗଣ, ସୁପ୍ରିମ କୋର୍ଟର ମୁଖ୍ୟ ବିଚାରପତି ଓ ଅନ୍ୟ ବିଚାରପତିମାନେ ଶପଥ ନେଇଥିଲେ ।

କିଛି ସମୟ ପରେ ନିଜର ଅଙ୍ଗରକ୍ଷୀମାନଙ୍କ ସମେତ ଇର୍‌ୱିନ ଷ୍ଟାଡ଼ିୟମଠାରେ ଅପରାହ୍ନ ୩ ଘଣ୍ଟା ୩୦ ମିନିଟ୍‌ରେ ରାଷ୍ଟ୍ରପତି ପହଞ୍ଚିଥିଲେ । ନବନିଯୁକ୍ତ ପ୍ରତିରକ୍ଷା ମନ୍ତ୍ରୀ ସେଠାରେ ରହି ରାଷ୍ଟ୍ରପତିଙ୍କୁ ପାଛୋଟି ନେଇଥିଲେ । ରାଷ୍ଟ୍ରପତିଙ୍କ ସହ ଭାରତୀୟ ସେନାର ତିନିବାହିନୀ ମୁଖ୍ୟଙ୍କ ପରିଚୟ ପର୍ବ ସମାପ୍ତ ହୋଇଥିଲା । ପ୍ୟାରେଡ୍ କମାଣ୍ଡର ବ୍ରିଗେଡ଼ିୟର ଜେ.ଏସ୍. ଧୀଲନଙ୍କ ସହ ଏକ ଜିପ୍‌ରେ ରାଷ୍ଟ୍ରପତି ସେନାବାହିନୀର ପ୍ୟାରେଡ୍ ପରିଦର୍ଶନ କରିଥିଲେ । ୩୧ଟି କମାଣରୁ ଗୋଳାବର୍ଷଣ ହୋଇ ରାଷ୍ଟ୍ରପତିଙ୍କୁ ବିଶେଷ ଭାବେ ସମ୍ମାନିତ କରିବା ସହ ତିନିଥର ତାଙ୍କର ଜୟ କୁହାଯାଇଥିଲା । ଏହାପରେ ବିଶେଷ ଆକର୍ଷଣୀୟ କାର୍ଯ୍ୟକ୍ରମ ଥିଲା ମାର୍ଚ୍ଚ ପାଷ୍ଟ । ଜଳ, ସ୍ଥଳ ଓ ବାୟୁସେନା ତଥା ପୋଲିସ ବିଭାଗର ପଦସ୍ଥ ଅଧିକାରୀଙ୍କ ସମେତ ୩୦୦୦ ଜଣ ମାର୍ଚ୍ଚ ପାଷ୍ଟରେ ଭାଗ ନେଇଥିଲେ । ନିର୍ଦ୍ଧାରିତ ସ୍ଥାନରେ ରହି ରାଷ୍ଟ୍ରପତି ସେମାନଙ୍କର ସାଲ୍ୟୁଟ ଗ୍ରହଣ କରିଥିଲେ । ଷ୍ଟାଡ଼ିୟମକୁ ଆସିବା ପୂର୍ବରୁ ରାଷ୍ଟ୍ରପତିଙ୍କ ସହିତ ଥିଲେ ଗୋଆଲିୟର୍ ବର୍ଚ୍ଛାଧାରୀ ଅଶ୍ୱାରୋହୀ ସୈନ୍ୟ । ସଙ୍ଗୀତର ତାଳେ ତାଳେ ବ୍ୟାଣ୍ଡବାଦନ କରି ରାଷ୍ଟ୍ରପତିଙ୍କୁ ସେମାନେ ଷ୍ଟାଡ଼ିୟମ ପର୍ଯ୍ୟନ୍ତ ନେଇ ଯାଇଥିଲେ । ମାର୍ଚ୍ଚ ପାଷ୍ଟର ସମାପ୍ତିରେ ରାଷ୍ଟ୍ରପତିଙ୍କ ପ୍ରତ୍ୟାବର୍ତ୍ତନ ପଥରେ ପୁନର୍ବାର ବ୍ୟାଣ୍ଡବାଦନ କରି ରାଷ୍ଟ୍ରପତି ଭବନ ପର୍ଯ୍ୟନ୍ତ ସେମାନେ ଯାଇଥିଲେ ।

କେନ୍ଦ୍ରରେ ସାଧାରଣତନ୍ତ୍ର ଦିବସକୁ ମହାସମାରୋହରେ ପାଳନ କରାଯାଉଥିବା ବେଳେ ରାଜ୍ୟଗୁଡ଼ିକ ପଛରେ ପଡ଼ି ନଥିଲା । ସୂର୍ଯ୍ୟୋଦୟରେ ଜାତୀୟ ପତାକା ଉତ୍ତୋଳନରୁ ସବୁ ରାଜ୍ୟରେ ଜାନୁଆରୀ ୨୬ ଭଳି ମହାନ ଦିବସ ପାଳନର ଶୁଭାରମ୍ଭ ହୋଇଥିଲା । ସର୍ବଧର୍ମ ପ୍ରାର୍ଥନା ସଭା ପରେ ରାଜ୍ୟପାଳମାନେ ଶପଥ ଗ୍ରହଣ କରିଥିଲେ । ରାଜ୍ୟପାଳ ଭବନ ଉପରେ ଜାତୀୟ ପତାକା ଉତ୍ତୋଳିତ ହେବା ସଙ୍ଗେ ସଙ୍ଗେ ରାଜ୍ୟପାଳଙ୍କୁ ୧୭ ତୋପ ସଲାମି ଦିଆଯାଇଥିଲା । ରାଜ୍ୟର ମୁଖ୍ୟମନ୍ତ୍ରୀ ଓ ମନ୍ତ୍ରୀମାନେ ଭାରତୀୟ ସମ୍ବିଧାନ ପ୍ରତି ଆନୁଗତ୍ୟ ପ୍ରଦର୍ଶନ କରି ଶପଥ ଗ୍ରହଣ କରିବା ପରେ ନିମନ୍ତ୍ରିତ ଅତିଥିମାନଙ୍କ ସହ ଏକ ବନ୍ଧୁମିଳନର ଆୟୋଜନ ହୋଇଥିଲା । ହାଇକୋର୍ଟର ମୁଖ୍ୟ ବିଚାରପତି ଓ ଅନ୍ୟ ବିଚାରପତିଗଣ ମଧ୍ୟ ଶପଥ ଗ୍ରହଣ କରିଥିଲେ । ସବୁ ରାଜ୍ୟରେ ପୋଲିସ ଓ ସାମରିକ ବିଭାଗର ପ୍ୟାରେଡ୍ ବିଶେଷ ଭୂମିକା ଗ୍ରହଣ କରିଥିଲା ।

ବିଦେଶୀ ଶାସନର ପ୍ରଭାବରେ ଭାରତ ବହୁକାଳ ସ୍ୱାତନ୍ତ୍ର୍ୟ ହରାଇ ବସିଥିଲା । ଭାରତର ପୂର୍ଣ୍ଣ ସ୍ୱରାଜ ଲାଗି ସ୍ୱାଧୀନତା ସେନାନୀର ବହୁ କର୍ଣ୍ଣଧାର ଯେଉଁ ସ୍ୱପ୍ନ ଦେଖିଥିଲେ ଏବଂ ୧୯୨୯ର ଲାହୋର କଂଗ୍ରେସରେ ଗୋଟିଏ ପାଦ ଆଗକୁ ଯାଇ ମହାତ୍ମା ଗାନ୍ଧୀ ଯେଉଁ ଦାବି କରିଥିଲେ, ତାହାର ସଫଳ ରୂପାୟନ ହେଲା ୧୯୫୦ ଜାନୁଆରୀ ୨୬ ତାରିଖରେ । ସ୍ୱାଧୀନତା ସଂଗ୍ରାମର ଉଦ୍‌ଗାତାଙ୍କ ମଧ୍ୟରୁ ଅନେକ ସେତେବେଳକୁ ଜୀବିତ ନଥିଲେ । ଗାନ୍ଧିଜୀ ମଧ୍ୟ ଏହା ପୂର୍ବରୁ ପରପାରିକୁ ଚାଲି ଯାଇଥିଲେ । ଭାରତ ପକ୍ଷରେ ପ୍ରଥମ ସାଧାରଣତନ୍ତ୍ର ଉତ୍ସବ ପାଳନର ଗୁରୁତ୍ୱ ଯଥେଷ୍ଟ ଅଧିକ ଥିଲା । ସେହିଦିନ ଦେଶର ୩୦ କୋଟି ନାଗରିକ ସେମାନଙ୍କର ଦେଶ ନିର୍ମାଣରେ ଭୂମିକା ଓ ଅଧିକାର ପ୍ରତି ସଚେତନ ହେଲେ । ଆନ୍ତର୍ଜାତୀୟ ସ୍ତରରେ ଭାରତର

ଭୂମିକା କଣ ହେବ, ବିଦେଶୀ ରାଷ୍ଟ୍ରଗୁଡ଼ିକ ତାହା ଜାଣିପାରିଲେ । ଶୁଭେଚ୍ଛା ଜଣାଇ ବିଭିନ୍ନ ରାଷ୍ଟ୍ରର ଜନନାୟକ ଓ ରାଷ୍ଟ୍ରମୁଖ୍ୟ ବାର୍ତ୍ତାମାନ ଭାରତକୁ ପ୍ରେରଣ କରିଥିଲେ ।

ଅତୀତରେ ଆମ ଦେଶ ଥିଲା ବହୁଧା ବିଭକ୍ତ । ଭାରତ ବୋଲି ସେତେବେଳେ କିଛି ଅସ୍ତିତ୍ୱ ନଥିଲା । ରାଜା ରାଜୋଡ଼ା ଓ ସମ୍ରାଟଙ୍କ ଶାସନାଧୀନ ଭାରତ ଭୂଖଣ୍ଡ ବହୁ ଭାଗରେ ବିଭକ୍ତ ହୋଇ ରହିଥିଲା । ମଧ୍ୟଯୁଗ ଥିଲା ମୋଗଲ ରାଜତ୍ୱକାଳ । ସେହି ସମୟରେ ଦେଶର ପ୍ରଶାସନିକ ଓ ରାଜନୈତିକ ଏକତା କିଛିକାଳ ରହିଥିଲା । ମୋଗଲ ରାଜତ୍ୱର ପତନ ହେବା ସଙ୍ଗେ ସଙ୍ଗେ ତାହା ଲୋପ ପାଇଲା । ଇଂରେଜ ରାଜତ୍ୱରେ ତାହାର ପୁନରୁତ୍ଥାନ ହେଲା । ମେରୀରାୟ ନୀତିରେ ବିଶ୍ୱାସ ରଖୁଥିବା ଇଂରେଜ ସରକାରଙ୍କ ଏକଛତ୍ରବାଦ ଓ ଅମାନବୀୟ କ୍ଷମତା ପ୍ରୟୋଗ ଯୋଗୁଁ ତାହା ସମ୍ଭବ ହୋଇଥିଲା ।

ସ୍ୱାଧୀନତାର ଅବ୍ୟବହିତ ପୂର୍ବରୁ ଭାରତକୁ ପୁନର୍ବାର ଖଣ୍ଡ ଖଣ୍ଡ କରିବା ଲାଗି ଇଂରେଜମାନେ ପରିକଳ୍ପନା କରିଥିଲେ । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ଭାରତ, ବର୍ମା, ଶ୍ରୀଲଙ୍କା ଓ ମାଳଦ୍ୱୀପରୁ ଇଂରେଜ ଶାସନର ସୂର୍ଯ୍ୟାସ୍ତ ହୋଇ ଆସୁଥିବା ବ୍ରିଟିଶ ସରକାର ଉପଲବ୍ଧି କରିଥିଲେ । ଇଂଲଣ୍ଡର ତତ୍କାଳୀନ ପ୍ରଧାନମନ୍ତ୍ରୀ ଥିଲେ ଉଇନଷ୍ଟନ ଚର୍ଚ୍ଚିଲ । ୧୯୪୪ ସେପ୍ଟେମ୍ବର ୧୦ ତାରିଖ ଦିନ ଆମେରିକାର ତତ୍କାଳୀନ ରାଷ୍ଟ୍ରପତି ରୁଜଭେଲ୍ଟଙ୍କ ସହ ତାଙ୍କର ଏକ ଗୁପ୍ତ ମନ୍ତ୍ରଣା ହୋଇଥିଲା । ଏହାପରେ ଫୋର୍ସ ଓ୍ୱନ୍-ଥ୍ରୀ-ସିକ୍ସର ପ୍ରମୁଖ କଲିନ ହରକ୍ୟୁଲିଜ ମିକେଞ୍ଜିଙ୍କୁ ଚର୍ଚ୍ଚିଲ ଏକ ଗୋପନୀୟ ଆଦେଶ ଦେଇଥିଲେ । ପୋଷ୍ଟ କ୍ୱିଟ ପ୍ଲାନ ପ୍ରସ୍ତୁତ କରିବାକୁ ଉକ୍ତ ଆଦେଶରେ କୁହାଯାଇଥିଲା ।

ଚର୍ଚ୍ଚିଲଙ୍କ ଆଦେଶକୁ କାର୍ଯ୍ୟରେ ପରିଣତ କରିବା ଲାଗି ମିକେଞ୍ଜି ମେରଠକୁ ଆସିଲେ । କର୍ଣ୍ଣେଲ ପ୍ଲ୍ୟୁସ୍ ପଗ୍ ଥିଲେ ତାଙ୍କର ପରାମର୍ଶଦାତା । କର୍ଣ୍ଣେଲ ପଗଙ୍କ ସହ ବିଚାର ବିମର୍ଷ କରି କଲିକତାରୁ ଷ୍ଟୁଆର୍ଟଙ୍କୁ ଓ ଶ୍ରୀଲଙ୍କାର କୈଣ୍ଡିରୁ କାଁଲି ସାହେବଙ୍କୁ ସେ ମେରଠକୁ ଡକାଇଥିଲେ । ସେମାନେ ଆସି ପହଞ୍ଚିବା ପରେ ଦୀର୍ଘ ସମୟ ଗୁପ୍ତ ମନ୍ତ୍ରଣା ଚାଲିଲା । ଫୋର୍ସ ଓ୍ୱନ-ଥ୍ରୀ-ସିକ୍ସ ଅଧୀନରେ ଜି.ଏସ୍. ଆଇ.(କେ) ନାମକ ଏକ ଶାଖା ପ୍ରତିଷ୍ଠା କରିବା ସଙ୍ଗେ ସଙ୍ଗେ ଦେଶୀୟ ରାଜ୍ୟଗୁଡ଼ିକ ସହ ଯୋଗସୂତ୍ର ରଖିବା ଥିଲା ସେମାନଙ୍କ ମନ୍ତ୍ରଣାର ବିଷୟବସ୍ତୁ । କଥାବାର୍ତ୍ତା ପରେ ମେରଠର ୧୩୨ ବାରାକ ଷ୍ଟ୍ରିଟ୍ ଓ ୧୦୬ ବ୍ରିଜ ଷ୍ଟ୍ରିଟଠାରେ ଜି.ଏସ୍.ଆଇ. (କେ)ର ଦୁଇଟି କାର୍ଯ୍ୟାଳୟ ସ୍ଥାପିତ ହେଲା ।

୧୯୪୫ର ପ୍ରାରମ୍ଭରେ କର୍ଣ୍ଣେଲ ପ୍ଲ୍ୟୁସଙ୍କ ନେତୃତ୍ୱରେ ମେଜର୍ ପିଂଚ୍ ଓ ମେଜର୍ ଡ୍ରେକ୍ ୧୪୫, ନର୍ଥ ରୋ ମେରଠ କେଣ୍ଟ ସ୍ଥିତ ଏକ ବିରାଟ ବଙ୍ଗଳାରେ ବସି ପୋଷ୍ଟକ୍ୱିଟ ପ୍ଲାନକୁ ବିଧିବଦ୍ଧଭାବେ ପ୍ରସ୍ତୁତ କରିଥିଲେ । ମିକେଞ୍ଜି, ଷ୍ଟୁଆର୍ଟ, ନୀଲ ଓ କାଁଲି ପ୍ରମୁଖ ସେମାନଙ୍କ ସହ ସହମତ ଥିଲେ । ଚର୍ଚ୍ଚିଲ ମଧ ତାହାକୁ ଅନ୍ତିମ ସ୍ୱୀକୃତି ଦେଇଥିଲେ ।

ପୋଷ୍ଟ କ୍ୱିଟ ପ୍ଲାନ ଥିଲା ଭାରତ ଛାଡ଼ିବା ପରର ଯୋଜନା । ଫୋର୍ସ ଓ୍ୱନ-ଥ୍ରୀ- ସିକ୍ସର କର୍ମଚାରୀଙ୍କୁ ସିକ୍ରେଟ ଏଜେଣ୍ଟର ଟ୍ରେନିଂ ଦିଆଯାଇଥିଲା । ଭାରତର ରାଷ୍ଟ୍ରୀୟ ସରକାରଙ୍କ ବିରୁଦ୍ଧରେ ଦ୍ୱେଷଭାବନା ରଖୁଥିବା ସଂପ୍ରଦାୟକୁ ଇନ୍ଧନ ଯୋଗାଇ ସୁସଂଗଠିତ କରିବା ସହ ସେମାନଙ୍କୁ ଅସ୍ତ୍ରଶସ୍ତ୍ର ଓ ଗୋଳାବାରୁଦ ଦେବା ଇଂରେଜଙ୍କ ଯୋଜନାରେ ସ୍ଥାନ ପାଇଥିଲା । ଏତଦ୍‌ବ୍ୟତୀତ ଭାରତ ସରକାରଙ୍କ ବିରୁଦ୍ଧରେ ଦେଶୀୟ ରାଜ୍ୟଗୁଡ଼ିକୁ ମତାଇ ବିନା କାରଣରେ ହତ୍ୟାଦି ଲୁଣ୍ଠନ ଓ ସାଂପ୍ରଦାୟିକ ଦଙ୍ଗା କରିବା ଥିଲା ସେମାନଙ୍କ ଯୋଜନାର ଅଂଶବିଶେଷ । ବିଶେଷ କରି ମୁଦ୍ରାସ୍ଫୀତି ମାଧ୍ୟମରେ ଭାରତର ଅର୍ଥନୀତିକୁ ବିପର୍ଯ୍ୟସ୍ତ କରିବା ଇଂରେଜଙ୍କ ଲକ୍ଷ୍ୟ ଥିଲା । ଗୁପ୍ତଚର ବିଭାଗ ଓ ସେନାବାହିନୀର ଗୋପନୀୟ ଦସ୍ତାବେଜ ଓ କାଗଜପତ୍ର ଲଣ୍ଡନକୁ ପଠାଇଦେବା ଲାଗି ନତୁବା ନିଆଁରେ ପୋଡ଼ି ପାଉଁଶ କରି ଦେବାକୁ ବ୍ରିଟିଶ କର୍ତ୍ତୃପକ୍ଷ ନିର୍ଦ୍ଦେଶ ଦେଇଥିଲେ ।

ସ୍ୱାଧୀନତା ପରେ ଭାରତର ଆଭ୍ୟନ୍ତରୀଣ ସ୍ଥିରତାକୁ ଭଙ୍ଗ କରିବା ଲାଗି ଏହା ଥିଲା ଏକ ଭୟଙ୍କର ଷଡ଼ଯନ୍ତ୍ର । ଚର୍ଚ୍ଚିଲ ଏହି ଯୋଜନାକୁ ତୁରନ୍ତ କାର୍ଯ୍ୟକାରୀ କରିବାକୁ ଚାହୁଁଥିଲେ । ଭାରତ ଛାଡ଼ିବା ପୂର୍ବରୁ ଇଂରେଜମାନେ ମୁସଲିମ ଲିଗ ସହ ସୁସଂପର୍କ ରକ୍ଷା କରିଥିଲେ । ଦେଶର ପ୍ରମୁଖ ସ୍ଥାନଗୁଡ଼ିକରେ ଫୋର୍ସ ଓ୍ୱନ-ଥ୍ରୀ-ସିକ୍ସ ଦ୍ୱାରା ସରକାରୀ ଗୁଣ୍ଡାମାନଙ୍କୁ ସୃଷ୍ଟି କରାଗଲା । ରାଜାରାଜୋଡ଼ା, ତାଲୁକଦାର ଓ ଜମିଦାରଙ୍କ ଶାସନନୀତିରେ ସିଧାସଳଖ ହସ୍ତକ୍ଷେପ କରି ଇଂରେଜମାନେ ସେମାନଙ୍କୁ ପ୍ରଚୁର ମାତ୍ରାରେ ଗୋଳାବାରୁଦ ଓ ଯୁଦ୍ଧର ସାଜସରଞ୍ଜାମ ଆଦି ପ୍ରଦାନ କରିଥିଲେ ।

ଏହି କାର୍ଯ୍ୟକୁ ସୁଚାରୁରୂପେ ସଂପନ୍ନ କରିବା ଲାଗି ମୁସଲିମ୍ ଲିଗ୍‌ର ସମର୍ଥକ ଆଇ.ସି.ଏସ୍. ଓ ଆଇ.ପି. ଏସ୍. ଅଫିସର ତଥା କେନ୍ଦ୍ରୀୟ ଓ ପ୍ରାନ୍ତୀୟ ସରକାରଙ୍କ ଅଧୀନରେ ଥିବା କତିପୟ ଇଂରେଜ ଏବଂ ଆଙ୍ଗ୍ଲୋଇଣ୍ଡିଆନ ଅଫିସରଙ୍କୁ କରାୟତ୍ତ କରାଗଲା । ଗୋପନୀୟତାର ଶପଥପାଠ କରାଇ

ସେମାନଙ୍କ ଆଗରେ ରହସ୍ୟୋଦ୍‌ଘାଟନ ହେଲା । ଶପଥରେ ବନ୍ଧା ଅଫିସରମାନେ ସେମାନଙ୍କର ଅନୁଗତ ଏଜେଣ୍ଟଙ୍କ ଜରିଆରେ କାର୍ଯ୍ୟ ସଂପନ୍ନ କରିବାକୁ ଦାୟିତ୍ୱ ଗ୍ରହଣ କଲେ । ଫୋର୍ସ ଓ୍ୱାନ୍‌-ଥ୍ରୀ-ସିକ୍ସର ସମସ୍ତ ଅଧିକାରୀ ଓ କର୍ମଚାରୀଙ୍କୁ ସରକାରୀ କାର୍ଯ୍ୟରେ ଅଧିକରୁ ଅଧିକ ଖର୍ଚ୍ଚ କରିବା ଲାଗି ଆଦେଶ ମିଳିଲା । ଆଠଅଣା ସ୍ଥାନରେ ଶହେ ଟଙ୍କାର ବିଲ୍ କରିବାଭଳି ପନ୍ଥାର ଆଶ୍ରୟ ନେଇ ମୁଦ୍ରାସ୍ଫୀତିକୁ ଆମନ୍ତ୍ରଣ କରାଗଲା । ଏଥିଲାଗି ନାସିକ ରୋଡ଼ସ୍ଥିତ ଗଭର୍ଣ୍ଣମେଣ୍ଟ ସିକ୍ୟୁରିଟ ପ୍ରେସ୍‌ରୁ କଲିକତା, ମାଡ୍ରାସ, ମେରଠ, ଲାହୋର, ରାଓଲପିଣ୍ଡି ଓ ପେଶାଓ୍ୱରକୁ ଓ୍ୱାଗନଭର୍ତ୍ତି ଅସୁମାରି ଟଙ୍କା ପଠାଯାଇଥିଲା ।

ମୁସଲିମ୍ ଲିଗ୍‌ର ପ୍ରମୁଖ ନେତାମାନେ ଥିଲେ ଫୋର୍ସ ଓ୍ୱାନ୍‌-ଥ୍ରୀ-ସିକ୍ସର ନିୟନ୍ତ୍ରଣରେ । ଇସକନ୍ଦର ମିର୍ଜା ଥିଲେ ସେମାନଙ୍କ ମଧ୍ୟରେ ଅନ୍ୟତମ । ପରେ ସେ ପାକିସ୍ଥାନର ଗଭର୍ଣ୍ଣର ଜେନେରାଲ ହୋଇଥିଲେ । ଫୋର୍ସ ଓ୍ୱାନ୍‌-ଥ୍ରୀ-ସିକ୍ସର କ୍ରୀଡ଼ନକ ସାଜି ସେ ଯେଉଁଭଳି ଅପକର୍ମରେ ଭାଗୀଦାର ହୋଇଥିଲେ, ତାହାର ପ୍ରତିଫଳ ତାଙ୍କୁ ଜୀବଦ୍ଦଶାରେ ହିଁ ଭୋଗିବାକୁ ପଡ଼ିଥିଲା । ସାମରିକ ବିଦ୍ରୋହ ଯୋଗୁଁ ସେ କ୍ଷମତାଚ୍ୟୁତ ହୋଇଥିଲେ । ଚବିଶ ଘଣ୍ଟା ଭିତରେ ଦେଶଛାଡ଼ି ଚାଲିଯିବାକୁ ତାଙ୍କୁ କୁହାଯାଇଥିଲା । ପ୍ରାଣରକ୍ଷା ଲାଗି ସାଧାରଣ ଯାତ୍ରୀଙ୍କ ଭଳି ବିମାନ ବନ୍ଦରରେ ନିଜେ ଟିକେଟ କିଣି ଅପମାନଜନକ ପରିସ୍ଥିତିରେ ସେ ଦେଶ ତ୍ୟାଗ କରିଥିଲେ ।

ଇସ୍‌ମାଇଲ ବା ଜହୁର ଅନ୍ୟନାମ ଶୌକତ୍ ଥିଲା ଜଣେ ଦୁର୍ଦ୍ଦାନ୍ତ ଏଜେଣ୍ଟ । ବଙ୍ଗରେ ହିନ୍ଦୁ-ମୁସଲିମ୍ ଦଙ୍ଗା କରିବାକୁ ଶୌକତ୍ ଉପରେ ଦାୟିତ୍ୱ ନ୍ୟସ୍ତ ହୋଇଥିଲା । ସେ ମୁତୟନ କରିଥିବା ଏଜେଣ୍ଟମାନେ କଲିକତା, କୋମିଲ୍ଲା, ଚଟ୍ଟଗ୍ରାମ, ଖୁଲନା ଓ ରାଜଶାହୀ ଆଦି ସହରରେ ବିଛାଇ ହୋଇ ରହିଥିଲେ । ସାଂପ୍ରଦାୟିକ ଦଙ୍ଗା ସୃଷ୍ଟି କରିବାକୁ ସେମାନେ ଥିଲେ ଆଦେଶ ପ୍ରତୀକ୍ଷାରେ । ୧୯୪୬ ଅଗଷ୍ଟ ୧୬ ତାରିଖ । ମୁସଲିମ ଲିଗ୍‌ର ରାଜନୈତିକ ଆକ୍ରୋଶର ନଗ୍ନରୂପ ସେହିଦିନ ପ୍ରକାଶ ପାଇଲା । ଲିଗ୍ ପକ୍ଷରୁ ''ଆକ୍‌ସନ୍ ଡ଼େ''ର ଘୋଷଣା କରାଗଲା । ପୂର୍ବରୁ ପ୍ରସ୍ତୁତ ହୋଇ ରହିଥିବା ଏଜେଣ୍ଟ ଓ ସରକାରୀ ଗୁଣ୍ଡାମାନେ କଲିକତା, ନୂଆଖାଲି, ବରିସାଲ, ଚଟ୍ଟଗ୍ରାମ, ଢାକା, ଖୁଲନା, ନାରାୟଣଗଞ୍ଜ, ଟିପରା (କୋମିଲ୍ଲା), ମରାଦୀପୁର ଓ ରାଜଶାହୀ ଆଦି ସ୍ଥାନରେ ଅମାନୁଷିକ ନରସଂହାର ଚଳାଇଲେ । ଅନ୍ୟ ସଂପ୍ରଦାୟର ଲୋକଙ୍କୁ ନୃଶଂସଭାବରେ ହତ୍ୟା କଲେ । ପଚାଶ ହଜାରରୁ ଅଧିକ ଲୋକଙ୍କର ଏହାଫଳରେ ପ୍ରାଣହାନି ଘଟିଥିଲା । ସେତେବେଳେ ବଙ୍ଗର ପ୍ରଧାନମନ୍ତ୍ରୀ ଥିଲେ ହସନ ଶହୀଦ ସୋହରାଦ୍ଦୀ । ''ଆକ୍‌ସନ୍ ଡେ''ର ନୃଶଂସ ଲୀଳାରେ ସେ ପରୋକ୍ଷ ଭାବରେ ଜଡ଼ିତ ରହିଥିଲେ । ସରକାରୀ କାର୍ଯ୍ୟାଳୟଗୁଡ଼ିକରେ ଛୁଟି ଘୋଷଣା କରି ହତ୍ୟାକାଣ୍ଡ ଲାଗି ସେ ଗୁପ୍ତ ଆଦେଶ ଦେଇଥିଲେ । କଲିକତାର ଲାଲବଜାରସ୍ଥିତ ପୋଲିସ ହେଡ୍ କ୍ୱାଟର୍ସରେ ଚାରିଦିନ କାଳ ରହଣି କରି ତାଙ୍କର ଆଦେଶ ପାଳନ ହେଉଛି କି ନାହିଁ, ସେ ତାହା ତଦାରଖ କରୁଥିଲେ ।

ସ୍ୱାଧୀନତାପ୍ରାପ୍ତି ବେଳକୁ ଭାରତ ଓ ପାକିସ୍ଥାନ ଦୁଇଟି ପ୍ରମୁଖ ରାଷ୍ଟ୍ର ଜନ୍ମ ନେବା ସଂଗେସଂଗେ ଦେଶୀୟ ରାଜ୍ୟଗୁଡ଼ିକ ସ୍ୱାଧୀନ ହୋଇ ରହିଥିଲା । ଭାରତ ଓ ପାକିସ୍ଥାନ ମଧ୍ୟରୁ ଯେ କୌଣସି ରାଷ୍ଟ୍ର ସହିତ ମିଶିବା କିମ୍ବା ସ୍ୱାଧୀନ ରାଷ୍ଟ୍ର ହୋଇ ରହିବା ଦେଶୀୟ ରାଜ୍ୟଗୁଡ଼ିକର ନିଷ୍ପତ୍ତି ଉପରେ ଛାଡ଼ି ଦିଆଯାଇଥିଲା । ଭାରତ ଭିତରେ ଏଭଳି ଦେଶୀୟ ରାଜ୍ୟ ଓ ଗଡ଼ଜାତ ଅଞ୍ଚଳର ସଂଖ୍ୟା ଥିଲା ବହୁତ । ଜାତୀୟତାର ସ୍ରୋତରୁ ସେସବୁ ଅଞ୍ଚଳବାସୀ ବିଚ୍ଛିନ୍ନ ହୋଇ ରହିଥିଲେ । ସ୍ୱାଧୀନତାକୁ ବିପନ୍ନ କରୁଥିବା ତତ୍ତ୍ୱଗୁଡ଼ିକ ସେଠାରେ ସକ୍ରିୟ ଥିଲେ । ଏଭଳି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଦେଶମାତୃକାକୁ ଦୁର୍ଦ୍ଦିନରୁ ରକ୍ଷା କରିବାଲାଗି ଯେଉଁମାନେ ଅଣ୍ଟା ଭିଡ଼ିଥିଲେ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ସେମାନଙ୍କ ମଧ୍ୟରେ ଥିଲେ ଅଗ୍ରଗଣ୍ୟ । ଭାରତୀୟ ସମ୍ବିଧାନର ଏକତା ରଜ୍ଜୁରେ ସମଗ୍ର ଦେଶକୁ ବାନ୍ଧି ରଖିବା ପାଇଁ ସେ ପଦକ୍ଷେପ ନେଇଥିଲେ । ତାଙ୍କର ପ୍ରୟାସରେ ସର୍ବମୋଟ ୫୨୬ଟି ଦେଶୀୟ ରାଜ୍ୟର ଭାରତରେ ମିଶ୍ରଣ ହୋଇଥିଲା ।

ବହୁ କଷ୍ଟଲବ୍ଧ ରାଜନୈତିକ ସ୍ୱାଧୀନତା ପ୍ରାପ୍ତିର ୬୧ ବର୍ଷ ଆଜିକୁ ବିତି ଯାଇଥିଲେ ମଧ୍ୟ ଦେଶବାସୀଙ୍କୁ ଅର୍ଥନୈତିକ ଓ ସାମାଜିକ ସ୍ୱାଧୀନତା ଅଦ୍ୟାପି ପୂର୍ଣ୍ଣମାତ୍ରାରେ ମିଳିନାହିଁ । ଦୁର୍ନୀତି ଓ ଭ୍ରଷ୍ଟାଚାର ସବୁ କ୍ଷେତ୍ରରେ ଲାଗି ରହିଛି । ନୈତିକତାର ଖୁବ୍ ହ୍ରାସ ଘଟିଛି । ଦେଶ ଆଜି ମୂଲ୍ୟବୋଧର ସଙ୍କଟ ଦେଇ ଗତି କରୁଛି । ସନ୍ତ୍ରାସବାଦର ଜ୍ୱାଳାରେ ସାଧାରଣ ନାଗରିକ କ୍ଷତବିକ୍ଷତ । କାଶ୍ମୀରରୁ କନ୍ୟାକୁମାରୀ ପର୍ଯ୍ୟନ୍ତ ସବୁ ଅଞ୍ଚଳ ଗୋଟିଏ ସମ୍ବିଧାନ ଦ୍ୱାରା ଶାସିତ ହେଉଛି ସତ୍ ମାତ୍ର ବିଚ୍ଛିନ୍ନତାବାଦ ଜାତୀୟ ସଂହତି ପଥରେ ଗଳଗ୍ରହ ହୋଇଛି । ସମ୍ବିଧାନର ଉଦ୍ଦେଶ୍ୟ ପୂରଣରେ ଏସବୁ ସମସ୍ୟା ପ୍ରତିବନ୍ଧକ ସାଜୁଛି । ସାଧାରଣତନ୍ତ୍ରର ପ୍ରକୃତ ଲକ୍ଷ୍ୟ ଏ ପର୍ଯ୍ୟନ୍ତ ପୂରଣ ହୋଇନାହିଁ । ବହୁତ ଦୂରରେ ତାହା ରହିଛି ।

ରାମଚନ୍ଦ୍ରପୁର, ଡେଲାଙ୍ଗ
ପୁରୀ - ୭୫୨୦୧୫

# ସଂକ୍ଷେପରେ ଭାରତୀୟ ସମ୍ବିଧାନର ଇତିହାସ

ମିନତୀ ପଣ୍ଡା

୧୪୯୮ ମସିହା ବୈଶାଖର ଏକ ଉତ୍ତପ୍ତ ଅପରାହ୍ଣରେ ପର୍ତ୍ତୁଗୀଜ ନାବିକ ଭାସ୍କୋଡ଼ାଗାମା ଯେତେବେଳେ କାଲିକଟ୍ ଉପକୂଳରେ ପହଞ୍ଚିଲେ, 'ସେ କ'ଣ ଭାବିଥିଲେ ସେ ନିଜେ ହିଁ ଜାଣନ୍ତି ?' ଇତିହାସ ଟିପ୍ପଣୀ ଦିଏ, କାଲିକଟ୍‌ର ରାଜା ଜାମୋରିନ୍‌ଙ୍କୁ ସେ କେତେକ ବାଣିଜ୍ୟ ସୁବିଧା ସୁଯୋଗ ପାଇଁ ପ୍ରାର୍ଥନା କରିଥିଲେ । ବୋଧହୁଏ ଏହା ହିଁ ଭାରତୀୟ ଭୂଖଣ୍ଡରେ ଇଉରୋପୀୟମାନଙ୍କର ଜୟଯାତ୍ରାର ଅୟମାରମ୍ଭ । ପରେ ପରେ ଡଚ୍, ଇଂରେଜ ଓ ଫରାସୀମାନେ ଭାରତରେ ବାଣିଜ୍ୟ ବ୍ୟବସାୟ ନିମିତ୍ତ ପ୍ରବେଶ କରନ୍ତି । ସାର୍ ଟମାସ୍‌ରୋ ନାମକ ଜଣେ ଚତୁର ଇଂରେଜ ମୋଗଲ ସମ୍ରାଟ୍ ଜାହାଙ୍ଗୀରଙ୍କଠାରୁ ତାଙ୍କ ସାମ୍ରାଜ୍ୟରେ ବ୍ୟବସାୟ କେନ୍ଦ୍ର ଖୋଲିବାର ସୁବିଧା ହାସଲ କରିଥିଲେ । ଏହାପରେ ସେମାନେ ଆଉ ପଛକୁ ଫେରି ଚାହିଁ ନାହାନ୍ତି । ଗୋଟିଏ ପରେ ଗୋଟିଏ ବାଣିଜ୍ୟ କେନ୍ଦ୍ର କଲିକତା, ବମ୍ବେ ଓ ମାଡ୍ରାସରେ ଖୋଲିଛନ୍ତି ସେମାନେ । ଧୀରେ ଧୀରେ ଭାରତର ଶାସନ ବ୍ୟବସ୍ଥାରେ ମଧ୍ୟ ସେମାନେ ହୋଇଛନ୍ତି ମୁଖ୍ୟ ଅଂଶୀଦାର । ୧୭୫୭ ମସିହାର ପଲାସୀ ରଣକ୍ଷେତ୍ରରୁ ଯେଉଁ ଜୟଯାତ୍ରା ଆରମ୍ଭ ହେଲା, ତାହାର କ୍ରମପରିଣତିରେ ଭାରତ ହେଲା ବ୍ରିଟିଶ୍ ଶାସନାଧୀନ ।


Part XVI

Special Provisions relating to Certain Classes

ସମ୍ବିଧାନର ଷୋଡ଼ଶ ଭାଗରେ ଟିପୁ ସୁଲତାନ ଓ ଲକ୍ଷ୍ମୀ ବାଈଙ୍କର ଫଟୋଚିତ୍ର

୧୭୬୫ ମସିହାରେ ବକ୍‌ସାର୍ ଯୁଦ୍ଧ ପରେ ଇଂରେଜମାନେ ବଙ୍ଗଳା, ବିହାର ଓ ଓଡ଼ିଶାରୁ ରାଜସ୍ୱ ଆଦାୟ କରିବାର ଅଧିକାର ବା ଦେୱାନୀ ଲାଭ କଲେ । ଭାରତର ଭୌଗୋଳିକ ସୀମାରେ ଥିବା ସମସ୍ତ ଦେଶୀୟ ରାଜ୍ୟ ଇଂରେଜ ଆନୁଗତ୍ୟ ସ୍ୱୀକାର କରିଥିଲେ । ଏହି ସମୟରେ ଇଂଲଣ୍ଡରେ ଏକପ୍ରକାର ଗଣତନ୍ତ୍ର ଶାସନ ଚାଲୁଥିଲା । ଇଂଲଣ୍ଡ ପାର୍ଲାମେଣ୍ଟର ସଭ୍ୟମାନେ ଉଦାରନୀତିରେ ଆସ୍ଥାବାନ୍ ଥିଲେ । ତେଣୁ ସେମାନେ ଭାରତରେ ଗଣତନ୍ତ୍ରର ଛାଞ୍ଚରେ ଶାସନ ପରିଚାଳନା କରିବା ପାଇଁ ଇଷ୍ଟଇଣ୍ଡିଆ କମ୍ପାନୀକୁ ପ୍ରବର୍ତ୍ତାଇଲେ ।

୧୭୬୫ରୁ ୧୮୫୭ ପର୍ଯ୍ୟନ୍ତ ଭାରତ ଶାସନ, ଇଷ୍ଟଇଣ୍ଡିଆ କମ୍ପାନୀ ନାମକ ଏକ ବାଣିଜ୍ୟ ପ୍ରତିଷ୍ଠାନ ହାତରେ ଥିଲା । ଏହି ୯୩ ବର୍ଷ ଭିତରେ କମ୍ପାନୀ ବାଣିଜ୍ୟ କରିବା ସଂଗେସଂଗେ କ୍ରମେ ଅଧିକରୁ ଅଧିକ ଶାସନ କ୍ଷମତା ନିଜ ହାତକୁ ନେଇଥିଲା । କ୍ରମଶଃ ଇଂଲଣ୍ଡର ପାର୍ଲାମେଣ୍ଟ କମ୍ପାନୀର କାର୍ଯ୍ୟଧାରାକୁ ନିୟନ୍ତ୍ରଣ କଲା । ଏହି ଉଦ୍ଦେଶ୍ୟରେ ୧୭୭୩ ନିୟନ୍ତ୍ରଣ ଆଇନ, ୧୮୬୧ର ପିଟ୍‌ଙ୍କ ଭାରତ ଆଇନ ଏବଂ ୧୭୯୩, ୧୮୧୩, ୧୮୩୩ ଓ ୧୮୫୩ର ସନନ୍ଦ ଆଇନ ପ୍ରଣୟନ କରିଥିଲେ । ୧୮୫୭ର ମହାନ୍ ବିପ୍ଳବ ପରେ ଇଂଲଣ୍ଡର ପାର୍ଲାମେଣ୍ଟ ଭାରତର ଶାସନ ଦାୟିତ୍ୱ କମ୍ପାନୀ ହାତରୁ ନେଇ, ଇଂଲଣ୍ଡର ରାଣୀ ଭିକ୍ଟୋରିଆଙ୍କ ହାତରେ ଅର୍ପଣ କଲା ।

ଏହି ୯୩ ବର୍ଷ ଭିତରେ ଭାରତ ଶାସନର ଛାଞ୍ଚ ପଡ଼ିଯାଇଥିଲା । ସମଗ୍ର ଭାରତ ପାଇଁ ଜଣେ ବଡ଼ଲାଟ ରହିଲେ ।

ଭାରତକୁ କେତେଗୁଡ଼ିଏ ପ୍ରଦେଶରେ ବିଭକ୍ତ କରି ଦିଆଗଲା । ପ୍ରତ୍ୟେକ ପ୍ରଦେଶ ପାଇଁ ଜଣେ ଜଣେ ଲାଟ ରହିଲେ । ଭାରତବର୍ଷରେ କେନ୍ଦ୍ର ଓ ପ୍ରାଦେଶିକ ଶାସନ ସୃଷ୍ଟି ହୋଇଥିଲା । ଜିଲ୍ଲାସ୍ତରରେ ଜଣେ ଜଣେ କଲେକ୍ଟର ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ଏବଂ ନ୍ୟାୟବିଚାର କରିବା ପାଇଁ ଜଣେ ଜଣେ ନ୍ୟାୟାଧୀଶ ନିଯୁକ୍ତ ହୋଇଥିଲେ । ପ୍ରତ୍ୟେକ ଜିଲ୍ଲାକୁ କେତେଗୋଟି ଥାନାରେ ବିଭକ୍ତ କରାଯାଇଥିଲା । ପ୍ରତ୍ୟେକ ଥାନା ଲାଗି ଜଣେ ମୁନ୍‌ସି ଓ କେତେଗୋଟି ଥାନା ଲାଗି ଜଣେ ଦାରୋଗା ରହିଲେ । ଭାରତ ଶାସନର ସର୍ବେସର୍ବା ବଡ଼ଲାଟ ଥିଲେ । ସେ ପ୍ରାଦେଶିକ ଲାଟମାନଙ୍କର କାର୍ଯ୍ୟକଳାପକୁ ନିୟନ୍ତ୍ରଣ କରୁଥିଲେ । ଶାସନ କାର୍ଯ୍ୟରେ ବଡ଼ଲାଟଙ୍କୁ ସାହାଯ୍ୟ କରିବା ଲାଗି ଗୋଟିଏ ଶାସନ ପରିଷଦ ଥିଲା । ୧୮୫୩ ମସିହାର ସନନ୍ଦ ଆଇନ ଅନୁସାରେ, ଏଥିରେ କେତେଜଣ ନବନିଯୁକ୍ତ ସଭ୍ୟ ଆଇନ ପ୍ରଣୟନ ଲାଗି ନିଯୁକ୍ତ ହୋଇଥିଲେ । ଏହି ପରିବର୍ଦ୍ଧିତ ପରିଷଦ ଭବିଷ୍ୟତ ପାର୍ଲାମେଣ୍ଟର ମୂଳଦୁଆ ସ୍ୱରୂପ ହୋଇଥିଲା ।

୧୮୫୮ ମସିହାରେ ଇଂରେଜ ସରକାର ପ୍ରତ୍ୟକ୍ଷ ଭାବରେ ଭାରତ ଶାସନ ଦାୟିତ୍ୱ ବହନ କରିବା ପରେ ସେମାନେ ୮୯ ବର୍ଷ ଶାସନ ଚଳାଇଥିଲେ । ଇଂରେଜମାନେ ୧୯୪୭ରେ ଭାରତକୁ ସ୍ୱାଧୀନ ରାଷ୍ଟ୍ରରୂପେ ଘୋଷଣା କରି ଅପସରି ଗଲେ । ଭାରତୀୟ ଜାତୀୟ କଂଗ୍ରେସ ପ୍ରତିଷ୍ଠିତ ହୋଇଥିଲା ୧୮୮୫ ମସିହାରେ । ଏହାର ଇଙ୍ଗିତ ଓ ନେତୃତ୍ୱରେ ଭାରତରେ ସ୍ୱାଧୀନତା ଆନ୍ଦୋଳନ ପରିଚାଳିତ ହୋଇଥିଲା । ଏହି ଆନ୍ଦୋଳନର କ୍ରମପରିଣତିରେ ଭାରତ ସ୍ୱାଧୀନତା ଲାଭ କରିଥିଲା ଏବଂ ଭାରତରେ ଗଣତନ୍ତ୍ରର ବିକାଶ ଘଟିଥିଲା ।

ସଂସଦୀୟ ଗଣତନ୍ତ୍ରରେ, ସଂସଦ ବା ବିଧାନମଣ୍ଡଳ ହେଉଛି ସର୍ବପ୍ରଧାନ ଅଙ୍ଗ । ଜନସାଧାରଣ ସଂସଦ ବା ବିଧାନମଣ୍ଡଳ ଲାଗି ସଭ୍ୟ ନିର୍ବାଚନ କରନ୍ତି । ଏହି ସଂସଦ ଓ ବିଧାନମଣ୍ଡଳ ଆଇନ ପ୍ରଣୟନ କରନ୍ତି ଏବଂ ସେଠାରେ ଥିବା ସଂଖ୍ୟା ଗରିଷ୍ଠ ଦଳ ମନ୍ତ୍ରିମଣ୍ଡଳ ଗଠନ କରି ଶାସନ ଦାୟିତ୍ୱ ବହନ କରନ୍ତି । ଇଂରେଜ ସରକାର ୧୮୬୧, ୧୮୯୨ ଓ ୧୯୦୯ରେ ତିନିଥର ଆଇନ ପ୍ରଣୟନ କରି କେନ୍ଦ୍ର ଓ ପ୍ରାଦେଶିକ ବିଧାନମଣ୍ଡଳ ଗଠନ ପ୍ରଣାଳୀ ଓ କ୍ଷମତା ପରିସରକୁ ସଂପ୍ରସାରିତ କରିଥିଲେ । ୧୮୬୧ ମସିହାରେ ବେସରକାରୀ ଲୋକମାନଙ୍କୁ ବିଧାନମଣ୍ଡଳର ସଭ୍ୟପଦ ଦିଆଗଲା ଏବଂ ସଭ୍ୟମାନଙ୍କୁ କେତେକ ଅଧିକ କ୍ଷମତା ମିଳିଲା । ୧୮୯୨ ମସିହାରେ ପରୋକ୍ଷ ନିର୍ବାଚନ ଏବଂ ୧୯୦୯ ମସିହାରେ ପ୍ରତ୍ୟକ୍ଷ ନିର୍ବାଚନ ପ୍ରଣାଳୀ ଅନୁସୃତ ହେଲା । ପ୍ରଥମ ବିଶ୍ୱଯୁଦ୍ଧ ପରେ ବିଧାନମଣ୍ଡଳ ସହିତ ଶାସନ ପରିଷଦପ୍ରତି ମଧ୍ୟ ଦୃଷ୍ଟି ଦିଆଗଲା । କେନ୍ଦ୍ର ଶାସନ ବଡ଼ଲାଟ ଓ ତାଙ୍କ ଶାସନ ପରିଷଦ ହାତରେ ରହିଲା । ପ୍ରାଦେଶିକ ଶାସନ ପାଇଁ କେତେକ କ୍ଷମତା ଲାଟ ଓ ତାଙ୍କ ଶାସନ ପରିଷଦ ହାତରେ ଏବଂ ଅବଶିଷ୍ଟ କ୍ଷମତା ବିଧାନମଣ୍ଡଳର ନିର୍ବାଚିତ ସଭ୍ୟମାନଙ୍କ ମଧ୍ୟରୁ ମନୋନୀତ କେତେଜଣ ମନ୍ତ୍ରୀଙ୍କ ହାତରେ ରହିଲା । ଏହି ଦ୍ୱୈତ ଶାସନ ବ୍ୟବସ୍ଥା ୧୯୧୯ ମସିହାରେ ମେଣ୍ଟଗୁ କେମସ୍‌ଫୋର୍ଡ଼ ଶାସନ ବ୍ୟବସ୍ଥା ଭାବରେ ପ୍ରବର୍ତ୍ତିତ ହୋଇଥିଲା । ଦ୍ୱୈତ ଶାସନ ବ୍ୟବସ୍ଥା ଭାରତରେ ବିଶେଷ ଆଦୃତ ହୋଇ ପାରିନଥିଲା । ତେଣୁ ଏହା ଅନେକ ସ୍ଥାନରେ ଭୁଷୁଡ଼ି ପଡ଼ିଥିଲା । ଏହାପରେ ଭାରତକୁ ସାଇମନ୍ କମିଶନ ଓ ୧୯୩୦, ୧୯୩୧ ଓ ୧୯୩୨ର ଅନୁଷ୍ଠିତ ଗୋଲଟେବୁଲ ସମ୍ମିଳନୀର ସୁପାରିଶ ଅନୁସାରେ ୧୯୩୫ର ଭାରତ ଶାସନ ଆଇନ ପ୍ରଣୟନ କରି ଭାରତବର୍ଷରେ ଗୋଟିଏ ରାଷ୍ଟ୍ରସଂଘ ପ୍ରତିଷ୍ଠା କରିବାକୁ ପ୍ରସ୍ତାବ ଦେଇଥିଲେ । ପ୍ରଥମେ ପ୍ରାଦେଶିକ ପରିସରରେ ମନ୍ତ୍ରିମଣ୍ଡଳର ଶାସନ ୧୯୩୭ ଅପ୍ରେଲ୍ ପହିଲାରୁ ଆରମ୍ଭ ହେଲା । କେନ୍ଦ୍ର ଶାସନର କୌଣସି ପରିବର୍ତ୍ତନ ହେବା ଆଗରୁ ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେଲା ଓ ପ୍ରାଦେଶିକ ସ୍ୱାତନ୍ତ୍ର୍ୟ ମନ୍ତ୍ରିମଣ୍ଡଳ ଭୁଷୁଡ଼ି ପଡ଼ିଲା । ୧୯୪୬ ମସିହାରେ ମନ୍ତ୍ରିପରିଷଦର ଘୋଷଣା ଅନୁସାରେ କେନ୍ଦ୍ର ଶାସନରେ, ଅନ୍ତବର୍ତ୍ତୀ ସରକାର ଗଠିତ ହୋଇ, ୧୯୩୫ର ଭାରତ ଶାସନ ଆଇନର ପରିଧି ଭିତରେ ବେସରକାରୀ ପ୍ରତିନିଧିମାନଙ୍କ ଦ୍ୱାରା କେନ୍ଦ୍ର ଶାସନ ପ୍ରତିଷ୍ଠିତ ହେଲା । ୧୯୪୭ରେ ଭାରତୀୟ ସ୍ୱାଧୀନତା ଆଇନଦ୍ୱାରା କେନ୍ଦ୍ର ଓ ପ୍ରାଦେଶିକ ସ୍ତରରେ ପୂର୍ଣ୍ଣ ଦାୟିତ୍ୱଶୀଳ ମନ୍ତ୍ରିମଣ୍ଡଳ ଶାସନ ବ୍ୟବସ୍ଥା ପ୍ରବର୍ତ୍ତିତ ହେଲା । ତେଣୁ ଭାରତ ଶାସନ ତାନ୍ତ୍ରିକ ବିବର୍ତ୍ତନର ପ୍ରତ୍ୟେକ ସୋପାନରେ ବିଧାନମଣ୍ଡଳଗୁଡ଼ିକରେ ଗଠନ ପ୍ରଣାଳୀ ଓ କ୍ଷମତା ପରିସର ବୃଦ୍ଧି ପାଉଥିଲା । କ୍ରମେ ଅଧିକ ଭାରତୀୟ ନିର୍ବାଚନରେ ମତଦାନର ଅଧିକାର ଲାଭ କଲେ । ଏହି ପୃଷ୍ଠଭୂମି ଓ ପରମ୍ପରାକୁ ବିଚାରକରି ଶାସନ ବିଧାୟକ ସଭା ଭାରତରେ ସମ୍ବିଧାନ ପ୍ରଣୟନ କଲେ ।

୧୯୪୬ ମସିହା ମଇ ମାସ ୧୬ ତାରିଖରେ କ୍ୟାବିନେଟ୍ ମିଶନ୍‌ର ପରାମର୍ଶକ୍ରମେ ଭାରତରେ ସମ୍ବିଧାନ ପ୍ରଣୟନ ଲାଗି ଏକ ଶାସନ ବିଧାୟକ ସଭା ଗଠିତ ହୋଇଥିଲା । ଲୋକ ସଂଖ୍ୟା ଅନୁସାରେ ପ୍ରତ୍ୟେକ ପ୍ରଦେଶରୁ ଶାସନ ବିଧାୟକ ସଭାରେ ପ୍ରତିନିଧି ରହିଥିଲେ । ଶାସନ ବିଧାୟକ ସଭାରେ ୩୮୯ ଜଣ ସଭ୍ୟ ଥିଲେ । ଏହା ୧୯୪୬ ମସିହା ଡିସେମ୍ବର ୯ ତାରିଖ ଦିନ ଆରମ୍ଭ ହୋଇଥିଲା ଏବଂ ସଭାର ବୟୋଜ୍ୟେଷ୍ଠ ସଭ୍ୟ ବିହାରର

ଡକ୍ଟର ସଚ୍ଚିଦାନନ୍ଦ ସିଂହ ଅସ୍ଥାୟୀ ସଭାପତି ନିର୍ବାଚିତ ହୋଇଥିଲେ । ବିହାରର ଡକ୍ଟର ରାଜେନ୍ଦ୍ର ପ୍ରସାଦ ଓ ଡକ୍ଟର ହରେନ୍ଦ୍ର କୁମାର ମୁଖାର୍ଜୀ ଯଥାକ୍ରମେ ସଭାର ସଭାପତି ଓ ଉପସଭାପତି ନିର୍ବାଚିତ ହୋଇଥିଲେ । ମୁସଲିମ୍‌ଲିଗ୍ ସଭ୍ୟମାନେ ଏହାକୁ ବର୍ଜନ କରିଥିଲେ ।

ଶାସନ ବିଧାୟକ ସଭା ୧୯୪୬ ଡିସେମ୍ବର ୯ ତାରିଖଠାରୁ ୧୯୪୯ ଡିସେମ୍ବର ୨୬ ତାରିଖ ପର୍ଯ୍ୟନ୍ତ ୨ ବର୍ଷ ୧୧ ମାସ ୧୮ ଦିନ ପରିଶ୍ରମ କରି ୩୯୫ ଧାରା ଓ ଆଠଗୋଟି ପରିଶିଷ୍ଟବିଶିଷ୍ଟ ଗୋଟିଏ ସମ୍ବିଧାନ ପ୍ରଣୟନ କଲେ । ୧୯୫୦ ଜାନୁଆରୀ ୨୬ ତାରିଖରେ ଏହା କାର୍ଯ୍ୟକାରୀ ହୋଇଥିଲା । କିନ୍ତୁ ୧୯୫୨ ମସିହାର ପ୍ରଥମ ନିର୍ବାଚନ ପର୍ଯ୍ୟନ୍ତ ଏହା ଅସ୍ଥାୟୀ ସଂସଦ ରୂପେ କାର୍ଯ୍ୟ କରିଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଇଂଲଣ୍ଡ ଭାରତକୁ ଶାସନ କ୍ଷମତା ହସ୍ତାନ୍ତର କରିଥିବାରୁ ଏହି ଦିନଟି ସ୍ୱାଧୀନତା ଦିବସ ରୂପରେ ପାଳିତ ହୁଏ । ୧୯୩୦ ମସିହାରେ ପାଳିତ ହୋଇଥିବା ପ୍ରଥମ ସ୍ୱାଧୀନତା ଦିବସର ସ୍ମରଣରେ, ୧୯୫୦ ଜାନୁଆରୀ ୨୬ ତାରିଖଦିନ ଭାରତୀୟ ସମ୍ବିଧାନ ପ୍ରବର୍ତ୍ତିତ ହୋଇ ଭାରତ ଗୋଟିଏ ସାଧାରଣତନ୍ତ୍ରରେ ପରିଣତ ହେଲା । ଭାରତୀୟ ସମ୍ବିଧାନ ପୃଥିବୀର ବୃହତ୍ତମ ସମ୍ବିଧାନ । ଏହା ଅନମନୀୟ । ସମ୍ବିଧାନର ପ୍ରାକ୍ କଥନରେ ଭାରତର ସ୍ୱାଧୀନତା, ସମାନତା, ନ୍ୟାୟ ଓ ଭ୍ରାତୃତ୍ୱ ପ୍ରତିଫଳିତ ହେବ ବୋଲି ମଧ୍ୟ କୁହାଯାଇଛି । ଭାରତୀୟ ସମ୍ବିଧାନର ସୁରକ୍ଷା ତଥା ସମ୍ମାନ ପ୍ରତ୍ୟେକ ଭାରତୀୟ ନାଗରିକର ମହତ୍ କର୍ତ୍ତବ୍ୟ ।

ଅଧ୍ୟାପିକା, ଇତିହାସ ବିଭାଗ
ସାମନ୍ତ ଚନ୍ଦ୍ରଶେଖର ମହାବିଦ୍ୟାଳୟ (ସ୍ୱୟଂ ଶାସିତ)
ପୁରୀ

# ଓଡ଼ିଆରେ ଫାଇଲ୍ ଓ ଚିଠିପତ୍ର ଲେଖାପାଇଁ ସରକାରୀ ସ୍ତରରେ ନିଷ୍ପତ୍ତି

୨୦୧୦ ମସିହା ଓଡ଼ିଆ ଭାଷାର ବର୍ଷ ହେବ । ସରକାରୀ ସ୍ତରରେ ସବୁ ଚିଠି ପତ୍ର, ଫାଇଲ ଓ ନିର୍ଦ୍ଦେଶନାମା ଓଡ଼ିଆରେ ଲେଖାଯିବ । ଇଂରାଜୀ ଭାଷାର ବିଲୋପ ହେବ ନାହିଁ ବରଂ ସରକାରୀ ସ୍ତରରେ ଓଡ଼ିଆ ଭାଷାର ବହୁଳ ବ୍ୟବହାର କରାଯିବ । ବର୍ଷ ଆରମ୍ଭର ଦ୍ୱିତୀୟ ଦିନରେ ମୁଖ୍ୟ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର ସଚିବସ୍ତରୀୟ ବୈଠକ ଡାକି ଗତ ତା.୨.୦୧.୨୦୧୦ରିଖରେ ଉପରୋକ୍ତ ନିଷ୍ପତ୍ତି ନେଇଛନ୍ତି । ନିଷ୍ପତ୍ତି ଅନୁଯାୟୀ ପ୍ରଥମ ପର୍ଯ୍ୟାୟରେ ଗ୍ରାମପଞ୍ଚାୟତ, ତହସିଲ ଓ ବ୍ଲକ୍‌ରେ ଓଡ଼ିଆ ଭାଷାରେ ସବୁ କାମ କରାଯିବ । ଜନସାଧାରଣଙ୍କୁ ଦିଆଯାଉଥିବା ଚିଠିପତ୍ର ଓ ନିର୍ଦ୍ଦେଶନାମା ଓଡ଼ିଆରେ ହେବ । ପରବର୍ତ୍ତୀ ସମୟରେ ଜିଲ୍ଲାସ୍ତରର କାର୍ଯ୍ୟାଳୟ ଓ ସଚିବାଳୟରେ ଓଡ଼ିଆ ଶବ୍ଦର ବ୍ୟବହାର ବ୍ୟାପକ କରାଯିବ । ଏଣିକି ସବୁ ସରକାରୀ ବିଭାଗର ବିଜ୍ଞପ୍ତିଗୁଡ଼ିକ ଉଭୟ ଇଂରାଜୀ ଓ ଓଡ଼ିଆ ଭାଷାରେ ପ୍ରକାଶିତ ହେବ । ସରଳ ଓଡ଼ିଆରେ ସବୁକିଛି ଲେଖାଯିବ । ସେହି ବୈଠକ ପରେ ମୁଖ୍ୟ ଶାସନ ସଚିବ ଶ୍ରୀ ମିଶ୍ର ସୂଚନା ଦେଇ କହିଥିଲେ ଯେ, ନୂଆ ପ୍ରଶାସନିକ ଶବ୍ଦକୋଷ ପାଇଁ କୃଷି ଉତ୍ପାଦନ କମିଶନରଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଯାଇଛି । ଏହି କମିଟିରେ ଆଇନ ବିଭାଗ ଏବଂ ଭାଷା ପ୍ରତିଷ୍ଠାନର ଅଧିକାରୀ ସଦସ୍ୟ ଅଛନ୍ତି । ଆସନ୍ତା ଉତ୍କଳ ଦିବସ ପୂର୍ବରୁ ଇଂରାଜୀ ଶବ୍ଦର ସରଳ ଓଡ଼ିଆ ଭାବାର୍ଥକୁ ନେଇ ନୂଆ ପ୍ରଶାସନିକ ଶବ୍ଦକୋଷ ପ୍ରସ୍ତୁତ ହେବ । ସେହିପରି କମ୍ପ୍ୟୁଟରରେ ଓଡ଼ିଆ ଭାଷାରେ କାର୍ଯ୍ୟ ଲାଗି ସରକାରୀ ସ୍ତରରେ ଏକ ଓଡ଼ିଆ ଲିପି ଓକାକ୍ ଜରିଆରେ ପ୍ରସ୍ତୁତ ହେବ । ଓଡ଼ିଆରେ ଚିଠିପତ୍ର ଦେବାନେବା ପାଇଁ ଅଭ୍ୟାସ ଆରମ୍ଭ କରିବାକୁ ଅଫିସରମାନଙ୍କୁ କୁହାଯାଇଛି ବୋଲି ସେ କହିଥିଲେ । ଉଲ୍ଲେଖନୀୟ ଯେ ଓଡ଼ିଆ ଭାଷାରେ ସରକାରୀ କାମ କରିବା ଲାଗି ୧୯୮୦ ଦଶକରୁ ସରକାରୀ ନିର୍ଦ୍ଦେଶନାମା ରହିଛି । ଅନେକ ତାହାକୁ ପାଳନ କରୁ ନାହାନ୍ତି । କେତେକ ସ୍ତରରେ ଇଂରାଜୀ ଶବ୍ଦର ଅନୁବାଦ କରିବାକୁ ଯାଇ ବିକୃତ ଓଡ଼ିଆ ଶବ୍ଦ ବ୍ୟବହାର କରାଯାଉଛି । ସେହି ବୈଠକରେ ଏ ନେଇ ମଧ୍ୟ ଗୁରୁତ୍ୱାରୋପ କରାଯାଇଛି । ଓଡ଼ିଆ ଶବ୍ଦ ଲେଖିଲାବେଳେ ଇଂରାଜୀର ପ୍ରକୃତ ଅନୁବାଦ କରିବାକୁ ଯାଇ ତାହାକୁ ବିକୃତ ନକରି ସରଳ ଓଡ଼ିଆ ଶବ୍ଦର ବ୍ୟବହାର କରିବାକୁ ଅଫିସରମାନଙ୍କୁ ପରାମର୍ଶ ଦିଆଯାଇଛି ।

# ଆମ ଲୋକଙ୍କ ପାଇଁ ସମ୍ବିଧାନ

ବିଜୟ କୁମାର ଦାଶ

**ସ**ମ୍ବିଧାନ ଗୋଟିଏ ରାଷ୍ଟ୍ରର ଅମୂଲ୍ୟ ସଂପଦ । ରାଷ୍ଟ୍ରର ରାଜନୈତିକ, ସାମାଜିକ ଓ ଅର୍ଥନୈତିକ ଚିତ୍ର ସମ୍ବିଧାନରେ ହିଁ ସ୍ପଷ୍ଟ ଭାବେ ପ୍ରତିଫଳିତ ହୋଇଥାଏ । ସମ୍ବିଧାନକୁ ସାଧାରଣତଃ ରାଷ୍ଟ୍ରର ଦର୍ପଣ ଭାବରେ ଗ୍ରହଣ କରାଯାଇଥାଏ । ସମଗ୍ର ବିଶ୍ୱରେ ଭାରତର ସମ୍ବିଧାନର ଏକ ସ୍ୱତନ୍ତ୍ର ଗୁରୁତ୍ୱ ରହିଛି । ଭାରତୀୟ ସମ୍ବିଧାନ ହେଉଛି ପୃଥିବୀର ସର୍ବାପେକ୍ଷା ବୃହତ୍ତମ ଲିଖିତ ସମ୍ବିଧାନ । ଏହାର କଳେବର କାରଣରୁ ନୁହେଁ, ବରଂ ଆଭିମୁଖ୍ୟ ଦୃଷ୍ଟିରୁ ଆମର ସମ୍ବିଧାନର ସ୍ଥାନ ଅନେକ ଊର୍ଦ୍ଧ୍ୱରେ । ବିଶ୍ୱର ଅନ୍ୟାନ୍ୟ ରାଷ୍ଟ୍ରର ଗଣତାନ୍ତ୍ରିକ ସମ୍ବିଧାନକୁ ଗଭୀର ଭାବେ ବିଶ୍ଳେଷଣ କରି ସେସବୁର ଉତ୍ତମ ନୀତିଗୁଡ଼ିକ ସୁନିର୍ବାଚିତ କରି ଆମର ସମ୍ବିଧାନର ପ୍ରଣେତାମାନେ ବିଶେଷ କରି ଇଂଲଣ୍ଡର ସଂସଦୀୟ ଶାସନ ବ୍ୟବସ୍ଥା, ଆମେରିକାର ରାଷ୍ଟ୍ର ସଂଘୀୟ ବ୍ୟବସ୍ଥା, ମୌଳିକ ଅଧିକାର ଏବଂ ଆୟର୍ଲାଣ୍ଡର ରାଷ୍ଟ୍ରୀୟ ନିର୍ଦ୍ଦେଶକ ନୀତି ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇ ସେସବୁକୁ ସମ୍ବିଧାନରେ ସ୍ଥାନ ଦେଇଛନ୍ତି । ଏହା ସହ ଦେଶର ମହାନ୍ ଐତିହ୍ୟ ଓ ପରମ୍ପରାକୁ ଦୃଷ୍ଟିରେ ରଖି ସେମାନେ ଅନେକ ନୂତନ ନୀତି ମଧ୍ୟ ସମ୍ବିଧାନରେ ଅନ୍ତର୍ଭୁକ୍ତ କରିଛନ୍ତି । ପୁନଶ୍ଚ, ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଚିନ୍ତାଧାରାକୁ ଦୃଷ୍ଟିରେ ରଖି ସମ୍ବିଧାନ ପ୍ରଣେତାମାନେ ପଞ୍ଚାୟତିରାଜ ବ୍ୟବସ୍ଥା ଓ ଅସ୍ପୃଶ୍ୟତା ଦୂରୀକରଣ ପାଇଁ ଆବଶ୍ୟକୀୟ ସାମ୍ବିଧାନିକ ନୀତି ପ୍ରଣୟନ କରିଯାଇଛନ୍ତି । ଦେଶର ସମସ୍ତ ନାଗରିକମାନଙ୍କୁ ସମାନ ଅଧିକାର ବିଶ୍ୱର କୌଣସି ରାଷ୍ଟ୍ରରେ ଗୋଟିଏ ଦିନରେ ପ୍ରାପ୍ତ ହୋଇ ନଥିଲା । ଦୀର୍ଘକାଳର ସଂଘର୍ଷ, ଘାତପ୍ରତିଘାତ ପରେ ଏହା ହାସଲ ହୋଇପାରିଥିଲା । କିନ୍ତୁ ଆମ ସ୍ୱାଧୀନ ଭାରତର ସମ୍ବିଧାନରେ ପ୍ରାରମ୍ଭରୁ ହିଁ ସମସ୍ତ ନାଗରିକଙ୍କ ପାଇଁ ଏକ ବିସ୍ତୃତ ସମାନ ଅଧିକାରର ସୂଚୀ ସ୍ଥାନିତ ହୋଇଥିଲା । ଏହାକୁ ମୌଳିକ ଅଧିକାରର ମାନ୍ୟତା ଦିଆଯାଇଥିଲା । ସମ୍ବିଧାନର ତୃତୀୟ ଭାଗରେ ଏ ସଂପର୍କରେ ଉଲ୍ଲେଖ କରାଯାଇଛି ଏବଂ ବିଭିନ୍ନ ସାମ୍ବିଧାନିକ ଅଧିକାରର ପ୍ରତିକାର ବ୍ୟବସ୍ଥା ୩୨ ଧାରାରେ ଦର୍ଶାଯାଇଛି । ଏହିସବୁ ମୌଳିକ ଅଧିକାରଗୁଡ଼ିକ ଭାରତୀୟ ଗଣତନ୍ତ୍ରର ରକ୍ଷକ ଭାବରେ କାର୍ଯ୍ୟ କରିଥାଏ ଏବଂ ଏହା ହିଁ ଭାରତୀୟ ଗଣତନ୍ତ୍ରକୁ ସୁଦୃଢ଼ କରିଛି । ଆମ ସମ୍ବିଧାନର ଏହା ଏକ ବିଶେଷତ୍ୱ ଅଟେ । ସେହିପରି ଭାରତ ଗୋଟିଏ ବହୁଭାଷୀ ରାଷ୍ଟ୍ର ହୋଇଥିବାରୁ ସମ୍ବିଧାନରେ ଭାଷାକୁ ଯଥେଷ୍ଟ ଗୁରୁତ୍ୱ ଦିଆଯାଇଛି । ସମ୍ବିଧାନର ଅଷ୍ଟମ ଅନୁଚ୍ଛେଦରେ ଅଠରଟି ଭାଷାକୁ ସ୍ୱୀକୃତି ଦିଆଯାଇଛି ।

୧୯୪୬ ମସିହା ଡିସେମ୍ବର ୯ ତାରିଖରେ ତତ୍କାଳୀନ ସମ୍ବିଧାନ ପ୍ରକୋଷ୍ଠରେ ଏବେ ଯାହାକୁ ସଂସଦ ଭବନରେ କେନ୍ଦ୍ରୀୟ ଭବନ ବା Central Hall କୁହାଯାଉଛି, ପ୍ରଥମ ଥର ପାଇଁ କେନ୍ଦ୍ର ସମ୍ବିଧାନ ସଭାର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ପଣ୍ଡିତ ଜବାହରଲାଲ ନେହେରୁ, ରାଜେନ୍ଦ୍ର ପ୍ରସାଦ, ଆଚାର୍ଯ୍ୟ ଜେ.ବି. କ୍ରିପାଲାନୀ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଅବଦୁଲ୍ କାଲାମ୍ ଆଜାଦ୍, ଗୋବିନ୍ଦ ବଲ୍ଲଭ ପନ୍ଥ, ବି.ଆର୍. ଆମ୍ବେଦକର, ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ସରୋଜିନୀ ନାଇଡୁ, ହରେକୃଷ୍ଣ ମହତାବ ଏବଂ ଦଶ ଜଣ ନାରୀ ପ୍ରତିନିଧିଙ୍କ ସମେତ ୨୫୭ ଜଣ ପ୍ରତିନିଧି ଯୋଗ ଦେଇଥିଲେ । ୧୯୫୦ ମସିହା ଜାନୁଆରୀ ୨୬ ତାରିଖରେ ଭାରତର ସାଧାରଣତନ୍ତ୍ର ପ୍ରବର୍ତ୍ତିତ ହୋଇଥିଲା । ସ୍ୱାଧୀନ ଭାରତର ସଂସଦ ମଧ୍ୟ ଏହି ଦିନ ପ୍ରତିଷ୍ଠିତ ହୋଇଥିଲା । ୧୯୫୨ ମସିହା ଏପ୍ରିଲ୍ ୧୭ ତାରିଖରେ ସଂସଦର ଦୁଇ ଗୃହ ସ୍ୱାଧୀନ ଭାରତର ପ୍ରଥମ ସାଧାରଣ ନିର୍ବାଚନରେ ନିର୍ବାଚିତ ପ୍ରତିନିଧିମାନଙ୍କୁ ନେଇ ଗଠିତ ହୋଇଥିଲା । ଏହି ନିର୍ବାଚନରେ ୨୧ ଏବଂ ତଦୁର୍ଦ୍ଧ୍ୱ ବୟସର ଜନସାଧାରଣ ମତଦାନ କରିବାର ଅଧିକାର ପାଇଥିଲେ । ଏହି ନିର୍ବାଚନ ପରେ ଭାରତ ବିଶ୍ୱର ବୃହତ୍ତମ ଗଣତାନ୍ତ୍ରିକ ରାଷ୍ଟ୍ରଭାବରେ ସମ୍ମାନ ପାଇଲା ।

ଭାରତର ଲିଖିତ ସମ୍ବିଧାନ କୋଣାର୍କର ମୁଖଶାଳା ହେଉଛି ଏହାର ପ୍ରସ୍ତାବନା (Preamble) । ଏହା ଆମ

ସମ୍ବିଧାନର ଲକ୍ଷ୍ୟ ଓ ଆଦର୍ଶର ସୂଚନା ଦେଇଥାଏ । ଭାରତୀୟ ସମ୍ବିଧାନର ଆତ୍ମା ଏହି ପ୍ରସ୍ତାବନାରେ କୁହାଯାଇଛି – 'ଆମେ ଭାରତର ଜନସାଧାରଣ ଭାରତକୁ ଏକ ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ର ରୂପେ ଗଠନ କରିବା ପାଇଁ ଏବଂ ଏହାର ସମସ୍ତ ନାଗରିକଙ୍କୁ ସାମାଜିକ, ଅର୍ଥନୈତିକ, ରାଜନୈତିକ ନ୍ୟାୟ ଏବଂ ଚିନ୍ତା, ମତପ୍ରକାଶ, ବିଶ୍ୱାସ ଓ ଉପାସନାର ସ୍ୱାଧୀନତା, ସ୍ଥିତି ଓ ସୁଯୋଗର ସମାନତାର ଅଧିକାର ପ୍ରଦାନ କରିବା ତଥା ସେମାନଙ୍କ ମଧ୍ୟରେ ବ୍ୟକ୍ତିର ମର୍ଯ୍ୟାଦା ଓ ଜାତୀୟ ଐକ୍ୟ ଏବଂ ସଂହତି ସୁନିଶ୍ଚିତ ଭାବରେ ରକ୍ଷା କରିବାରେ ଅନୁକୂଳ ଭ୍ରାତୃଭାବ ବୃଦ୍ଧି କରିବା ନିମିତ୍ତ ସତ୍ୟ ଓ ନିଷ୍ଠାର ସହିତ ସଂକଳ୍ପ କରି ଆମ୍ଭମାନଙ୍କର ଏହି ଶାସନ ବିଧାୟକ ସଭାରେ ଅଦ୍ୟ ୧୯୪୯ ମସିହା ନଭେମ୍ବର ମାସ ୨୬ ତାରିଖରେ ଏତଦ୍ୱାରା ଏହି ସମ୍ବିଧାନକୁ ଅଙ୍ଗୀକାର, ପ୍ରଣୟନ ଓ ସମର୍ପଣ କଲୁ ।

ଏହି ପ୍ରସ୍ତାବନାକୁ ବିଶ୍ଳେଷଣ କଲେ ଭାରତ ଏକ ସାର୍ବଭୌମ, ଗଣତାନ୍ତ୍ରିକ ସାଧାରଣତନ୍ତ୍ର ରାଷ୍ଟ୍ରର ସୂଚନା ମିଳିଥାଏ । ଭାରତକୁ ସାଧାରଣତନ୍ତ୍ର ରାଷ୍ଟ୍ରରୂପେ ଘୋଷଣା କରାଯାଇ ରାଜତନ୍ତ୍ରକୁ ପ୍ରତ୍ୟାଖାନ କରାଯାଇଛି । ଭାରତର ଶାସନ ମୁଖ୍ୟ ରାଷ୍ଟ୍ରପତି ପ୍ରତି ପାଞ୍ଚବର୍ଷରେ ଥରେ ପରୋକ୍ଷ ଭାବରେ ନିର୍ବାଚିତ ହୋଇଥାନ୍ତି । ଭାରତର ସମ୍ବିଧାନ ଏଭଳି ଏକ ସରକାର ପ୍ରତିଷ୍ଠା କରିବାର ଉଦ୍ୟମ କରିଛି, ଯାହାର କ୍ଷମତା ଜନତାଠାରୁ ହିଁ ଆସିଛି ।

ଆମ ସମ୍ବିଧାନର ଅନ୍ୟ ଏକ ବିଶେଷତ୍ୱ ହେଉଛି ଯେ ଏହାକୁ ଆବଶ୍ୟକତା ଅନୁଯାୟୀ ନମନୀୟ (Flexible) ଓ ଅନମନୀୟ (Rigid) କରାଯାଇଛି । ଏଥିରୁ ଆମର ସମ୍ବିଧାନ ପ୍ରଣେତାମାନଙ୍କର ଦୂରଦୃଷ୍ଟି ଏବଂ ଗତିଶୀଳତାର ପ୍ରମାଣ ମିଳିଥାଏ । ପଣ୍ଡିତ ଜବାହରଲାଲ ନେହେରୁ ଏକଦା କହିଥିଲେ 'ଆମେ ସମ୍ବିଧାନକୁ ଦୃଢ଼ ଓ ଚିରସ୍ଥାୟୀ କରିବାକୁ ଚାହୁଁ । କିନ୍ତୁ ଏହା ସଂଗେସଂଗେ ଏଥିରେ ନମନୀୟତା ରହିବା ଆବଶ୍ୟକ । ଯଦି ସମ୍ବିଧାନକୁ ଅନମନୀୟ କରାଯାଏ, ତେବେ ଜାତିର ଅଭିବୃଦ୍ଧି ବାଧାପ୍ରାପ୍ତ ହେବ । ଜାତି ହେଉଛି ଜୀବନ୍ତ । ତେଣୁ ପରିବର୍ତ୍ତନଶୀଳ ପରିସ୍ଥିତିର ସମ୍ମୁଖୀନ ହେବା ପାଇଁ ସୁଯୋଗ ରଖିବା ଏକାନ୍ତ ଆବଶ୍ୟକ । ଆମେ ଭାବି ବଂଶଧରମାନଙ୍କର ହାତ ବାନ୍ଧି ଦେଇପାରିବା ନାହିଁ ।' ୧୯୫୦ ଜାନୁଆରୀ ୨୬ରେ ସମ୍ବିଧାନ କାର୍ଯ୍ୟକାରୀ ହେବା ପରଠାରୁ ଆଜି ପର୍ଯ୍ୟନ୍ତ ଏହା ବହୁବାର ସଂଶୋଧିତ ହୋଇଛି ଏବଂ ଏଥିପାଇଁ ଅନେକ ବିତର୍କର ମଧ୍ୟ ସୂତ୍ରପାତ ହୋଇଛି । ଏଠାରେ ଉଲ୍ଲେଖଯୋଗ୍ୟ ଯେ ବିଗତ ଦୁଇଶହ ବର୍ଷ ମଧ୍ୟରେ ଯୁକ୍ତରାଷ୍ଟ୍ର ଆମେରିକାର ସମ୍ବିଧାନ ମାତ୍ର ଛବିଶ ଥର ସଂଶୋଧିତ ହୋଇଥିଲାବେଳେ ବିଗତ ପଚାଶ ବର୍ଷ ମଧ୍ୟରେ ଭାରତୀୟ ସମ୍ବିଧାନ ୯୦ରୁ ଅଧିକ ଥର ସଂଶୋଧିତ ହୋଇସାରିଲାଣି ।

ପୂର୍ବରୁ ଆମ ଦେଶରେ ସାବାଳକତ୍ୱର ବୟସ ସୀମା ୨୧ ବର୍ଷ ଥିଲା । ୧୯୮୯ର ୬୨ତମ ସମ୍ବିଧାନ ସଂଶୋଧନ ପରେ ଏହି ବୟସ ସୀମା ୧୮ ବର୍ଷକୁ ହ୍ରାସ କରାଯାଇଛି । ସଂପ୍ରତି ପ୍ରତିଟି ନିର୍ବାଚନରେ ୧୮ ବର୍ଷ କିମ୍ବା ତଦୁର୍ଦ୍ଧ୍ୱ ଭାରତୀୟ ନାଗରିକ ଭୋଟ ଅଧିକାର ପାଇଛନ୍ତି । ପାଶ୍ଚାତ୍ୟ ଗଣତାନ୍ତ୍ରିକ ରାଷ୍ଟ୍ରଗୁଡ଼ିକରେ ସାର୍ବଜନୀନ ଭୋଟ ଅଧିକାର ପାଇବାପାଇଁ ଦୀର୍ଘକାଳ ସଂଗ୍ରାମ କରିବାକୁ ପଡ଼ିଥିଲା । କିନ୍ତୁ ସ୍ୱାଧୀନତା ଲାଭ ପରେ ଭାରତୀୟ ନାଗରିକମାନେ ଏହି ଅଧିକାର ସ୍ୱଳ୍ପ ସମୟରେ ପାଇପାରିଛନ୍ତି । ଏଥିପାଇଁ ଭାରତ ହେଉଛି ପୃଥିବୀର ବୃହତ୍ତମ ଗଣତନ୍ତ୍ର ।

ଆମର ଗଣତାନ୍ତ୍ରିକ ସମ୍ବିଧାନ ସମୟର କଷଟି ପଥରରେ ଦୃଢ଼ ବୋଲି ପ୍ରମାଣିତ ହୋଇ ସାରିଛି । ୭୩ତମ ସମ୍ବିଧାନ ସଂଶୋଧନରେ ଭାରତରେ ତ୍ରି-ସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥାକୁ ସାମ୍ବିଧାନିକ ମାନ୍ୟତା ଦିଆଗଲା । ଏହାଫଳରେ ପଞ୍ଚାୟତର ନିର୍ବାଚନ କରାଗଲା ଏବଂ ତୃଣମୂଳ ସ୍ତରରେ ଗଣତନ୍ତ୍ରର ଭିତ୍ତିଭୂମି ପ୍ରତିଷ୍ଠା ହେଲା । ଏକଦା ପଟ୍ଟାଭି ସୀତାରାମାୟା ପ୍ରକାଶ କରିଥିଲେ ଯେ ଭାରତୀୟ ରାଜ୍ୟ ହେଉଛି ଗୋଟିଏ ସୁଉଚ୍ଚ ମହଲ, ଏହାର ଆଧାର ହେଲା ପ୍ରାୟ ପାଞ୍ଚ ଲକ୍ଷ ପଞ୍ଚାୟତ ଏବଂ ପଞ୍ଚାୟତଗୁଡ଼ିକ ବାସ୍ତବରେ ହେଉଛନ୍ତି ଗ୍ରାମ୍ୟ ଗଣତନ୍ତ୍ର । ମହାତ୍ମା ଗାନ୍ଧୀ ଭାରତରେ ପ୍ରକୃତ ଗଣତନ୍ତ୍ରକୁ ଫଳପ୍ରସୂ କରିବା ପାଇଁ ସର୍ବଦା ପଞ୍ଚାୟତ ଉପରେ ଗୁରୁତ୍ୱ ଦେଉଥିଲେ । ସେ କହୁଥିଲେ, 'ମୋର ଗ୍ରାମ୍ୟ ସ୍ୱରାଜ ହେଲା ପ୍ରତ୍ୟେକ ଗ୍ରାମ ଏକ ପୂର୍ଣ୍ଣ ଗଣତନ୍ତ୍ର ହେଉ । ବ୍ୟକ୍ତିଗତ ସ୍ୱାଧୀନତା ଆଧାରରେ ଏଠାରେ ଜନତନ୍ତ୍ର ରହୁ । ପ୍ରକୃତ ଗଣତନ୍ତ୍ର କଦାପି କେନ୍ଦ୍ରରେ ବସିଥିବା କୋଡ଼ିଏ ଜଣ ବ୍ୟକ୍ତିଙ୍କ ଦ୍ୱାରା କାର୍ଯ୍ୟକାରୀ ହୋଇପାରିବ ନାହିଁ । ଏହା କେବଳ ତୃଣମୂଳ ସ୍ତରରେ ପ୍ରତିଟି ଗାଁର ଲୋକମାନଙ୍କ ଦ୍ୱାରା ହିଁ କାର୍ଯ୍ୟକାରୀ କରାଯାଇପାରିବ । ଭାରତର ପ୍ରକୃତ ଗଣତନ୍ତ୍ରରେ ଗାଁ ହିଁ ମୁଖ୍ୟ । ଯଦି ଗୋଟିଏ ମାତ୍ର ଗାଁ ପଞ୍ଚାୟତିରାଜ ଚାହେଁ, ଯାହାକୁ ଇଂରାଜୀରେ Republic

କୁହାଯାଏ, କେହି ତାକୁ ବାଧା ଦେଇପାରିବେ ନାହିଁ । ପଞ୍ଚାୟତର ଏକ ଅତି ପ୍ରାଚୀନ ସୁଗନ୍ଧ ରହିଛି । ଏହା ଗୋଟିଏ ଅତି ଉତ୍ତମ ଶବ୍ଦ । ଏହାର ଅର୍ଥ ହେଲା ଗ୍ରାମବାସୀଙ୍କ ଦ୍ୱାରା ନିର୍ବାଚିତ ପାଞ୍ଚଜଣ ବ୍ୟକ୍ତିଙ୍କର ଏକ ଗୋଷ୍ଠୀ । ଏହା ଏପରି ଏକ ବ୍ୟବସ୍ଥାର ପ୍ରତିନିଧିତ୍ୱ କରେ, ଯାହାଦ୍ୱାରା ଭାରତର ଅସଂଖ୍ୟ ଗ୍ରାମ୍ୟ ରିପବ୍ଲିକ୍ ଶାସିତ ହୋଇଥାଏ ।

ଓଡ଼ିଶାର କିମ୍ବଦନ୍ତୀ ପୁରୁଷ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତାଙ୍କ ଉଦ୍‌ଘାଟନୀ ଅଭିଭାଷଣରେ କହିଥିଲେ, 'ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖୁଥିଲି । ମୋ ସ୍ୱପ୍ନର ଭାରତରେ ଗଣତନ୍ତ୍ର କେତେଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହିନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନସର୍ବସ୍ୱ ହେବ ନାହିଁ ।

୧୯୬୧ ମସିହା ଜାନୁଆରୀ ୨୬ ସାଧାରଣତନ୍ତ୍ର ଦିବସରୁ ଓଡ଼ିଶାରେ ତ୍ରିସ୍ତରୀୟ ପଞ୍ଚାୟତିରାଜ ବ୍ୟବସ୍ଥା ପ୍ରବର୍ତ୍ତିତ ହୋଇଥିଲା । ଏପ୍ରିଲ୍ ୨୩, ୧୯୯୪ରେ ଅନୁଷ୍ଠିତ ପାର୍ଲାମେଣ୍ଟ ଭବନ ଆନେକ୍ସ୍‌ରେ 'ପଞ୍ଚାୟତରାଜ, ପାର୍ଲାମେଣ୍ଟ ସଦସ୍ୟ ଓ ବିଧାୟକ' ଶୀର୍ଷକ ଜାତୀୟ ସମ୍ମିଳନୀରେ ଓଡ଼ିଶାର କିମ୍ବଦନ୍ତୀ ପୁରୁଷ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ତାଙ୍କ ଉଦ୍‌ଘାଟନୀ ଅଭିଭାଷଣରେ କହିଥିଲେ, 'ବହୁତ ଦିନ ତଳେ ମୁଁ ଗୋଟିଏ ନୂଆ ଭାରତବର୍ଷର ସ୍ୱପ୍ନ ଦେଖୁଥିଲି । ମୋ ସ୍ୱପ୍ନର ଭାରତରେ ଗଣତନ୍ତ୍ର କେତେଜଣ କୁହାଳିଆ ବା ତଥାକଥିତ ବୁଦ୍ଧିଜୀବୀଙ୍କ ବିଳାସ ହୋଇ ରହିନଥାନ୍ତା । ମୁଁ ସ୍ୱପ୍ନ ଦେଖୁଥିଲି ଏପରି ଏକ ଭାରତବର୍ଷ ଯେଉଁଠାରେ ଗଣତନ୍ତ୍ର କେବଳ ନିର୍ବାଚନସର୍ବସ୍ୱ ହେବ ନାହିଁ । ଏହାହେବ ଲୋକଙ୍କୁ ପ୍ରତ୍ୟେକ କ୍ଷେତ୍ରରେ ଘନିଷ୍ଠ ଭାବେ ଜଡ଼ିତ କରାଇବାର ଏକ ମାଧ୍ୟମ । ଗାଁଗଣ୍ଡା ହେଉଛି ଭାରତର ଆତ୍ମା । ମୋ ସ୍ୱପ୍ନର ଭାରତରେ ଗାଁ ଗହଳିରୁ ଗଣତନ୍ତ୍ର ଆରମ୍ଭ ହୋଇ କ୍ରମଶଃ ଉପରକୁ ପ୍ରସାରିତ ହୋଇଥାନ୍ତା ।' ତେଣୁ ଆମ ସମ୍ବିଧାନର ପଞ୍ଚାୟତିରାଜ ବ୍ୟବସ୍ଥାଦ୍ୱାରା ତୃଣମୂଳ ସ୍ତରରେ ଗଣତନ୍ତ୍ରକୁ ପହଞ୍ଚାଇଥିଲେ ମଧ୍ୟ ଏ ଦିଗରେ ଅନେକ କିଛି କରିବାର ଆବଶ୍ୟକତା ରହିଛି ।

**ମହାତ୍ମା ଗାନ୍ଧୀ କହିଛନ୍ତି ଯେ ମୁଁ ଭାରତରେ ଏପରି ଏକ ସମ୍ବିଧାନ ପାଇଁ ଉଦ୍ୟମ କରିବି, ଯାହା ଭାରତକୁ ସମସ୍ତ ଦାସତ୍ୱ ଏବଂ ଅନ୍ୟମାନଙ୍କ ଅନୁଗ୍ରହରୁ ମୁକ୍ତ କରିବ । ଭାରତୀୟ ଗଣତନ୍ତ୍ରରେ ସବଳ ପରି ଦୁର୍ବଳର ମଧ୍ୟ ସମାନ୍ ସୁଯୋଗ ରହିବ ।** ଦେଶର ଦରିଦ୍ରତମ ବ୍ୟକ୍ତିର ଅନୁଭବ ହେବା ଉଚିତ୍ ଯେ ଏହା ହେଉଛି ତା'ର ଦେଶ ଏବଂ ଏହାର ନିର୍ମାଣରେ ତା'ର ମଧ୍ୟ ଏକ ପ୍ରଭାବଶାଳୀ ସ୍ୱର ରହିଛି । ସୁସ୍ଥ ଗଣତନ୍ତ୍ରରେ ହିଂସାର ସ୍ଥାନ ନାହିଁ । ଏକ ଅହିଂସା, ଶୃଙ୍ଖଳିତ, ଆଲୋକିତ ଓ ଗଣତନ୍ତ୍ର ବିଶ୍ୱର ସର୍ବୋତ୍ତମ ବିଷୟ ଅଟେ । ଗୋଟିଏ ଜାତିର ସୁଦୃଢ଼ ସ୍ଥିତି ପାଇଁ ଏକ ଜାତୀୟ ଭାବାବେଗ ଆବଶ୍ୟକ । ଜାତୀୟ ପତାକା କେବଳ ଏପରି ଗୋଟିଏ ଭାବାବେଗ ପାଇଁ ଏକ ଭୌତିକ ସହାୟକ ଅଟେ । ବିଶ୍ୱ ଦରବାରରେ ଆମକୁ ଗୋଟିଏ ପ୍ରକୃତ ସମୃଦ୍ଧ ଗଣତାନ୍ତ୍ରିକ ରାଷ୍ଟ୍ର ଭାବରେ ପ୍ରତିପାଦିତ କରିବାକୁ ହେଲେ ଆମର ରାଜନୈତିକ ଜୀବନରେ ସର୍ବାଧିକ ସାଧୁତାର ଆବଶ୍ୟକତା ରହିଛି ।

ଭାରତର ସମ୍ବିଧାନ ପୃଥିବୀର ବୃହତ୍ତମ ଗଣତାନ୍ତ୍ରିକ ସମ୍ବିଧାନ । ଦେଶର ନାଗରିକ ଏବଂ ରାଜନୈତିକ ନେତୃବୃନ୍ଦ ଭାରତୀୟ ସମ୍ବିଧାନର ମହତ୍ତ୍ୱ ଓ ମହନୀୟତାକୁ ଅକ୍ଷୁଣ୍ଣ ରଖିବା ପାଇଁ ସଂକଳ୍ପବଦ୍ଧ ହେବା ଆବଶ୍ୟକ । ଭାରତୀୟ ଗଣତନ୍ତ୍ରର ସଫଳତା ଏହାର ନାଗରିକମାନଙ୍କର ଦେଶପ୍ରୀତି, ଜାତୀୟ ସଂହତି ଓ ସ୍ୱଚ୍ଛତା ଉପରେ ନିର୍ଭର କରେ । ଏକ ସୁସ୍ଥ ଗଣତାନ୍ତ୍ରିକ ସମାଜ ଓ ଶାସନ ପ୍ରତିଷ୍ଠା ପାଇଁ ନିର୍ବାଚନ ଏକ ମାଧ୍ୟମ ହେବା ଉଚିତ୍ କିନ୍ତୁ ସର୍ବଶେଷ ଲକ୍ଷ୍ୟ ହେବା ଉଚିତ୍ ନୁହେଁ । ରାଷ୍ଟ୍ରର ଗଣତାନ୍ତ୍ରିକ ପରମ୍ପରାକୁ ଶୀର୍ଷରେ ପହଞ୍ଚାଇବା ପାଇଁ ନାଗରିକମାନଙ୍କର ଏକନିଷ୍ଠ ସଚେତନତା, ଜାଗୃତି ହିଁ ଆବଶ୍ୟକ । ଭାରତର ସମ୍ବିଧାନରେ ପ୍ରତ୍ୟେକ ନାଗରିକ ପାଇଁ ଦଶଟି ମୌଳିକ କର୍ତ୍ତବ୍ୟ ଉଲ୍ଲେଖ କରାଯାଇଛି । ଗଣତନ୍ତ୍ରର ସୁରକ୍ଷା ପାଇଁ ଆମେ ଏହି ଅନୁଶାସନକୁ ପାଳନ କରିବା ଉଚିତ । ଦେଶର ପୂର୍ଣ୍ଣାଙ୍ଗ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ସମୃଦ୍ଧି ଆମର ଗଣତାନ୍ତ୍ରିକ ସମ୍ବିଧାନ ପ୍ରତି ଆନ୍ତରିକ ସମ୍ମାନ ପ୍ରଦର୍ଶନ ଏବଂ ଶୃଙ୍ଖଳିତ ଆଚରଣ ଦ୍ୱାରା ହିଁ ହାସଲ ହୋଇ ପାରିବ ।

ଅଧ୍ୟାପକ, ଅର୍ଥନୀତି ବିଭାଗ
ଆଞ୍ଚଳିକ ପଞ୍ଚାୟତ ମହାବିଦ୍ୟାଳୟ
ସୁଜନପୁର, ଯାଜପୁର-୭୫୫୦୧୭

# ଭାରତରେ ସାଧାରଣତନ୍ତ୍ର ବ୍ୟବସ୍ଥା

ତପନ କୁମାର ଶତପଥୀ

**ଦ୍ୱି**ତୀୟ ବିଶ୍ୱଯୁଦ୍ଧ ଶେଷ ହେବା ପରେ କ୍ରମଶଃ ଔପନିବେଶବାଦର ବିଲୟ ଘଟିଲା । ମିଳିତ ଜାତିସଂଘ ଗଠିତ ହୋଇ ଏହି ସ୍ୱାଧୀନତା ହାସଲର ପ୍ରକ୍ରିୟାକୁ ତ୍ୱରାନ୍ୱିତ କରିଥିଲା । ଫଳତଃ ଆଫ୍ରିକା, ଏସିଆ ଓ ଦକ୍ଷିଣ ଆମେରିକାର ଅନେକ ରାଷ୍ଟ୍ର ବିଭିନ୍ନ ବୈଦେଶିକ ଶାସନରୁ ମୁକ୍ତିଲାଭ କରି ସ୍ୱାଧୀନ ରାଷ୍ଟ୍ରରେ ପରିଣତ ହୋଇପାରିଲେ । ଏହି କ୍ରମରେ ପ୍ରାଥମିକ ପଦକ୍ଷେପ ସ୍ୱରୂପ ୧୯୪୬ ମସିହାରେ କ୍ୟାବିନେଟ୍ ମିଶନ୍ ଗଠିତ ହେଲା । ଭାରତର ସମ୍ବିଧାନ ପ୍ରସ୍ତୁତି ନିମନ୍ତେ ୧୯୪୬ ମସିହା ଡିସେମ୍ବର ୯ ତାରିଖରେ ସମ୍ବିଧାନ ପ୍ରଣୟନ ସଭାର ପ୍ରଥମ ବୈଠକ ଅନୁଷ୍ଠିତ ହେଲା । ସମ୍ବିଧାନ ପ୍ରସ୍ତୁତି ନିମନ୍ତେ ବିଶିଷ୍ଟ ଆଇନଜୀବୀ ଡଃ ବି.ଆର୍. ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଅନ୍ୟ ସାତ ଜଣ ସଦସ୍ୟଙ୍କୁ ନେଇ ଏକ ଚିଠା ପ୍ରସ୍ତାବ କମିଟି ଗଠିତ ହେଲା । ଏହି କାର୍ଯ୍ୟ ଚାଲୁଥିବା ବେଳେ ଭାରତ ସ୍ୱାଧୀନତା ଲାଭ କଲା ଅଗଷ୍ଟ ୧୫, ୧୯୪୭ ମସିହାରେ । ଏହି ସ୍ୱାଧୀନତା ଏକ ଔପନିବେଶିକ ସ୍ୱାଧୀନତା ଥିଲା, ଯାହା କେବଳ ବ୍ରିଟିଶ ଶାସନ କବଳରୁ ଭାରତକୁ ମୁକ୍ତି ଦେଇଥିଲା, ମାତ୍ର ନିଜସ୍ୱ ସମ୍ବିଧାନ ସେତେବେଳକୁ ଭାରତ ନିକଟରେ ନଥିଲା । ବିଭିନ୍ନ ତର୍ଜମା ଓ ପରୀକ୍ଷାନିରୀକ୍ଷା ପରେ ସମ୍ବିଧାନ ପ୍ରଣୟନ ସଭା ୧୯୪୯ ନଭେମ୍ବର ୨୬ ଦିନ ଏହି ଚିଠା ସମ୍ବିଧାନକୁ ଅନୁମୋଦନ କଲା । ୧୯୫୦, ଜାନୁଆରୀ ୨୬ ତାରିଖ ଦିନ ଏହି ସମ୍ବିଧାନଟିକୁ ଭାରତରେ କାର୍ଯ୍ୟକାରୀ କରାଗଲା । ଭାରତର ସମ୍ବିଧାନର ରୂପରେଖର ମୌଳିକତା ହେଉଛି ଯେ ଏହା ସାର୍ବଭୌମ, ସମାଜବାଦୀ, ଧର୍ମନିରପେକ୍ଷ ଓ ଗଣତାନ୍ତ୍ରିକ ସମାଜତନ୍ତ୍ରକୁ ଅଙ୍ଗୀକାର କରିଅଛି ।

ଭାରତ ଏକ ସାର୍ବଭୌମ ରାଷ୍ଟ୍ର ହୋଇଥିବାରୁ ଏହାର ଆଭ୍ୟନ୍ତରୀଣ ନୀତି ନିର୍ଦ୍ଧାରଣ, ବୈଦେଶିକ ନୀତି ନିର୍ଦ୍ଧାରଣ ସହିତ ଶାସନ କ୍ଷେତ୍ରରେ ଭାରତ ସରକାର ହେଉଛନ୍ତି ସର୍ବମୟ କର୍ତ୍ତା । ସମାଜବାଦୀ ଓ ଧର୍ମନିରପେକ୍ଷ – ଏହି ଦୁଇଟି ବିଷୟକୁ ୧୯୭୬ ମସିହାରେ ୪୨ତମ ସମ୍ବିଧାନ ସଂଶୋଧନ ବଳରେ ଯୋଗ କରାଗଲା । ସମାଜବାଦୀ (socialistic) ଚିନ୍ତାଧାରାକୁ ଅଙ୍ଗୀକାର କରି ଆମେ ସାମାଜିକ, ଅର୍ଥନୈତିକ ଓ ରାଜନୈତିକ ସମାନତା ହାସଲର ଲକ୍ଷ୍ୟ ରଖିଛୁଁ । ଏହାଦ୍ୱାରା ରାଷ୍ଟ୍ର ଉତ୍ପାଦନ ଓ ସମ୍ବଳର ସୁଷମ ବଣ୍ଟନ, ଦାରିଦ୍ର୍ୟ ଦୂରୀକରଣ, ଶିକ୍ଷା, ସ୍ୱାସ୍ଥ୍ୟ, କର୍ମ ନିୟୋଜନ, ଖାଦ୍ୟ ଯୋଗାଣ ପ୍ରଭୃତି ବିଷୟରେ ନିର୍ଦ୍ଦିଷ୍ଟ ପଦକ୍ଷେପ ନିଆଯାଇପାରୁଛି । ଧର୍ମ ନିରପେକ୍ଷତା (Secular) ଭାରତବାସୀଙ୍କୁ ଇଚ୍ଛାନୁସାରେ କୌଣସି ଧର୍ମକୁ ଗ୍ରହଣ ବା ପରିତ୍ୟାଗ କରିବାର ଅଧିକାର ଦେଇଛି । ଭାରତର ସମ୍ବିଧାନ ଆମ ପାଇଁ ଲୋକ ପ୍ରତିନିଧିମୂଳକ ଗଣତନ୍ତ୍ର ନିର୍ଦ୍ଧାରଣ କରିଛି । ଭାରତର ପ୍ରତ୍ୟେକ ସାବାଳକ ଭୋଟର ଏହି ନିର୍ବାଚନ ପ୍ରକ୍ରିୟାରେ ଭାଗନେଇ ସରକାର ଗଠନରେ ପ୍ରତ୍ୟକ୍ଷ ଭୂମିକା ଗ୍ରହଣ କରିଥାନ୍ତି ।

ଆମ ସମ୍ବିଧାନରେ ଭାରତକୁ ଏକ ସାଧାରଣତନ୍ତ୍ର ରାଷ୍ଟ୍ର ହିସାବରେ ଉପସ୍ଥାପିତ କରାଯାଇଛି । ଏହି ବ୍ୟବସ୍ଥାନୁସାରେ ରାଷ୍ଟ୍ରପତି ହେଉଛନ୍ତି ରାଷ୍ଟ୍ରମୁଖ୍ୟ । ସେ ପରୋକ୍ଷ ଭାବରେ ନିର୍ବାଚିତ ହୋଇଥାନ୍ତି । ସଂଘୀୟ ଶାସନର ସେ ହେଉଛନ୍ତି କର୍ଣ୍ଣଧାର । ଏଥିପାଇଁ କୌଣସି ପାରମ୍ପରିକ ବା ବଂଶାନୁକ୍ରମିକ ଧାରା ନାହିଁ । ଯାହାଫଳରେ ସାଧାରଣ ଜୀବନରୁ ଯାଇ ସମାଜର ଯେକୌଣସି ବର୍ଗର, ଯେକୌଣସି ଧର୍ମର, ଯେକୌଣସି ସଂପ୍ରଦାୟର, ଯେକୌଣସି ବୃତ୍ତିର ପୁରୁଷ ବା ମହିଳା ଏହି ସର୍ବଶ୍ରେଷ୍ଠ ମର୍ଯ୍ୟାଦାଜନକ ଆସନରେ ଅଧିଷ୍ଠିତ ହୋଇପାରୁଛି । ଭାରତର ଷାଠିଏ ବର୍ଷରୁ ଊର୍ଦ୍ଧ୍ୱ ସାଧାରଣତନ୍ତ୍ରରେ ଆମେ ବୁଦ୍ଧିଜୀବୀ, ଓକିଲ, ଦାର୍ଶନିକ, ବୈଜ୍ଞାନିକ, ରାଷ୍ଟ୍ରନୀତିଜ୍ଞ, ଅର୍ଥନୀତିଜ୍ଞ, ନିର୍ବିଶେଷରେ ହିନ୍ଦୁ, ମୁସଲମାନ, ଶିଖ୍, ଖ୍ରୀଷ୍ଟିୟାନ୍ ନିର୍ବିଶେଷରେ ଦଳିତ ବର୍ଗରୁ, ମହିଳା ବର୍ଗରୁ ମଧ୍ୟ ଏହି ସର୍ବୋଚ୍ଚ ପଦରେ ଅଧିଷ୍ଠିତ ବ୍ୟକ୍ତିମାନଙ୍କୁ ଦେଖି ପାରିଛେଁ । ଏହା ଆମ ସାଧାରଣତନ୍ତ୍ର ବ୍ୟବସ୍ଥାର ସୁମହତ ବୈଶିଷ୍ଟ୍ୟ । ଭାରତର ରାଷ୍ଟ୍ରପତି ହେଉଛନ୍ତି ଶାସନ ମୁଖ୍ୟ,

ସମ୍ବିଧାନର ରକ୍ଷକ ଏବଂ ସମସ୍ତ କ୍ଷମତାର ଆଧାର । ତାଙ୍କ ନାମରେ ଶାସନ ପରିଚାଳିତ ହେଲେ ହେଁ ସେ ନିର୍ଣ୍ଣାୟକ ଭୂମିକା ନେଇ ନଥାନ୍ତି । ବାସ୍ତବ ନିୟାମକ କ୍ଷମତା ସଂସଦୀୟ ଗଣତନ୍ତ୍ର ଉପରେ ନ୍ୟସ୍ତ ହୋଇଥାଏ । ତେଣୁ ଗଣତାନ୍ତ୍ରିକ ସାଧାରଣତନ୍ତ୍ରରେ ବାସ୍ତବରେ ସଂସଦ, ସଂସଦୀୟ ସଂଖ୍ୟାଗରିଷ୍ଠ ଦଳର ପ୍ରଧାନମନ୍ତ୍ରୀ ଓ ମନ୍ତ୍ରିମଣ୍ଡଳ ହିଁ ପ୍ରକୃତ କ୍ଷମତାର କେନ୍ଦ୍ର ପାଲଟିଥାନ୍ତି । ପରୋକ୍ଷରେ କହିବାକୁ ଗଲେ ଏହା ହିଁ ହେଉଛି ଲୋକ ପ୍ରତିନିଧିମୂଳକ ଶାସନ ବ୍ୟବସ୍ଥା ଓ ତାହାର ରୂପାୟନ । ରାଷ୍ଟ୍ରପତିଙ୍କ କ୍ଷମତା ପରିସର ସୁସଂହତ ଓ ସମ୍ବିଧାନଦ୍ୱାରା ନିରୂପିତ ।

ସାଧାରଣତନ୍ତ୍ର ଶାସନ ବ୍ୟବସ୍ଥାର ସାର୍ବଭୌମତ୍ୱ ଏକ ଅଖଣ୍ଡ ଓ ଅପରିସୀମ କ୍ଷମତାକୁ ସୂଚାଏ । ରାଷ୍ଟ୍ର କାହାର ନିର୍ଦ୍ଦେଶରେ ପରିଚାଳିତ ହୁଏ ନାହିଁ । ରାଷ୍ଟ୍ର ନିଜର ଭୌଗୋଳିକ ପରିସୀମା ମଧ୍ୟରେ ବସବାସ କରୁଥିବା ସମସ୍ତ ବ୍ୟକ୍ତିବିଶେଷ, ସଂଘ, ସଂଗଠନ ଓ ଅନୁଷ୍ଠାନଗୁଡ଼ିକୁ ବିଭିନ୍ନ ସାମ୍ବିଧାନିକ ନିର୍ଦ୍ଦେଶ ଓ ବୈଧାନିକ ନିର୍ଦ୍ଦେଶ ଦେଇ ସେଗୁଡ଼ିକ ଉପରେ ନିୟନ୍ତ୍ରଣ ରଖେ । ଗଣତାନ୍ତ୍ରିକ ବ୍ୟବସ୍ଥାରେ ସଂଘୀୟ ଶାସନ ବିଭିନ୍ନ ନିର୍ବାଚନ ସମୟରେ ବଦଳିଥାଏ ହେଲେ ଏହାର ସାର୍ବଭୌମ ସାଧାରଣତନ୍ତ୍ର କ୍ଷମତା ଓ କାର୍ଯ୍ୟକାରିତା ବଦଳେ ନାହିଁ । ଏହା ଚିରସ୍ଥାୟୀ ।

ଏକ ସାଧାରଣତନ୍ତ୍ର ରାଷ୍ଟ୍ରରେ ସମ୍ବିଧାନ ଓ ସମ୍ବିଧାନସମ୍ମତ ବିଭିନ୍ନ ଆଇନର ବ୍ୟବସ୍ଥା ମଧ୍ୟରେ ବ୍ୟକ୍ତି କେତେକ ମୌଳିକ ସୁବିଧା, ଅଧିକାର ଓ ସ୍ୱାତନ୍ତ୍ର୍ୟ ଉପଭୋଗ କରିଥାଏ । ଏହିସବୁ ବ୍ୟବସ୍ଥାଦ୍ୱାରା ସାମାଜିକ କଲ୍ୟାଣ ସାଧିତ ହେବା ସହିତ ବ୍ୟକ୍ତିଗତ ସ୍ୱାର୍ଥ ମଧ୍ୟ ସୁରକ୍ଷିତ ହୋଇଥାଏ । ସାଧାରଣତନ୍ତ୍ରରେ ଆଇନର ଶାସନ ଚାଲେ । ତେଣୁ କ୍ଷମତା ପ୍ରୟୋଗକାରୀ ସରକାର ବା ଶାସକ ସର୍ବଦା ଆଇନର ପରିସର ମଧ୍ୟରେ କାର୍ଯ୍ୟ କରିବାକୁ ବାଧ୍ୟ ହୋଇଥାଏ । ଗଣତାନ୍ତ୍ରିକ ସାଧାରଣତନ୍ତ୍ର (Democratic Republic) ବ୍ୟବସ୍ଥାରେ ସନ୍ତୁଳିତ କ୍ଷମତା, କାର୍ଯ୍ୟଧାରା ଓ ପରିଚାଳନା ନିମିତ୍ତ ଚାରିଗୋଟି ସୁଦୃଢ଼ ସ୍ତମ୍ଭର ପରିକଳ୍ପନା କରାଯାଇଛି । ଏଗୁଡ଼ିକ ହେଲା ପ୍ରଶାସନିକ ବ୍ୟବସ୍ଥା (Bureaucracy), ବ୍ୟବସ୍ଥାପକ (Legislature), ନ୍ୟାୟପାଳିକା (Judiciary) ଓ ସମ୍ବାଦପତ୍ର (Press) । ସାଧାରଣତନ୍ତ୍ରରେ ପ୍ରଶାସନିକ ବ୍ୟବସ୍ଥା ଏକ ଷ୍ଟିଲ୍ ଫ୍ରେମ୍ ପରି । ଏହା କୌଣସି ପରିସ୍ଥିତିରେ ବଦଳେ ନାହିଁ । ବିଭିନ୍ନ କଲ୍ୟାଣକର ପ୍ରଶାସନିକ ସଂସ୍କାରଦ୍ୱାରା ଏହା ବିଭିନ୍ନ ସମୟୋଚିତ ପଦକ୍ଷେପ ନେଇ ଶାସନ ବ୍ୟବସ୍ଥାକୁ ଲୋକାଭିମୁଖୀ, ଉତ୍ତରଦାୟୀ, ସ୍ୱଚ୍ଛ ଏବଂ ନିରପେକ୍ଷ ଭାବରେ ନିଜକୁ ପରିଚାଳନା କରିଥାଏ । ସେହିପରି ବିଭିନ୍ନ ବ୍ୟବସ୍ଥାପକ ଅନୁଷ୍ଠାନ ଯଥା– ଲୋକସଭା, ରାଜ୍ୟସଭା, ବିଧାନସଭା, ବିଧାନ ପରିଷଦ ପ୍ରଭୃତି ଲୋକ ପ୍ରତିନିଧିମୂଳକ ସଂସ୍ଥାରେ ଦେଶର ଶାସନ ବ୍ୟବସ୍ଥାକୁ ସୁନିୟନ୍ତ୍ରିତ କରିବା ପାଇଁ ବିଭିନ୍ନ ଆଇନ ପ୍ରଣୟନ ଓ ସଂଶୋଧନ କରାଯାଇଥାଏ । ଉନ୍ନୟନମୂଳକ, ଜନକଲ୍ୟାଣକାରୀ ଯୋଜନା ପ୍ରଣୟନ କରି ତାହାର ରୂପାୟନ ନିମନ୍ତେ ଯତ୍ନଶୀଳ ହୋଇଥାଏ । ସେହିପରି ନ୍ୟାୟପାଳିକା ଏହାର ନିରପେକ୍ଷତା ଓ ଆଇନଗୁଡ଼ିକର କାର୍ଯ୍ୟକାରିତା ନିମନ୍ତେ ପ୍ରସିଦ୍ଧ । ସମ୍ବିଧାନ ଓ ପ୍ରଚଳିତ ଆଇନଗୁଡ଼ିକର ପାଳନ ଠିକ୍ ଭାବରେ ହେବାରେ ଏହାର ଭୂମିକା ଗୁରୁତ୍ୱପୂର୍ଣ୍ଣ । ଏକ ଶୃଙ୍ଖଳିତ ସମାଜ ଓ ସୁସ୍ଥ ସାମାଜିକ ଜୀବନ ଆଇନ ଅନୁମୋଦିତ ଶାସନଦ୍ୱାରା ସମ୍ଭବ ହୋଇପାରିଥାଏ । ଏକ ସ୍ୱାଧୀନ, ନିର୍ଭୀକ ଓ ଉତ୍ତରଦାୟୀ ପ୍ରେସ୍ ଏହାର ଉତ୍ତମ କର୍ତ୍ତବ୍ୟ ସମ୍ପାଦନ ମାଧ୍ୟମରେ ସମାଜକୁ ଦିଗ୍‌ଦର୍ଶନ ଦେଇଥାଏ । ସତ୍ୟ ଉପରେ ଆଧାରିତ ସମ୍ବାଦ ସମାଜରେ ସଚେତନତା ସୃଷ୍ଟି କରିଥାଏ । ଏହା ଗଣତନ୍ତ୍ରର ଚତୁର୍ଥ ସ୍ତମ୍ଭ । ଉପରୋକ୍ତ ଚାରିଗୋଟି ସ୍ତମ୍ଭମାନଙ୍କ ମଧ୍ୟରେ ଉତ୍ତମ ସମନ୍ୱୟ ରହିବା ବାଞ୍ଛନୀୟ । ସମସ୍ତେ ନିଜ ନିଜର ଲକ୍ଷ୍ମଣରେଖା ମଧ୍ୟରେ ବିବେକାନୁମୋଦିତ କର୍ତ୍ତବ୍ୟ ସମ୍ପାଦନ କଲେ ସାଧାରଣତନ୍ତ୍ର ରାଷ୍ଟ୍ରରେ ସାମାଜିକ ସ୍ଥିରତା, ନ୍ୟାୟ, ବିକାଶଧାରା, ବ୍ୟକ୍ତି ସ୍ୱାତନ୍ତ୍ର୍ୟ ଓ ରାଷ୍ଟ୍ରୋନ୍ନତି ଏକାଧାରରେ ସମ୍ଭବ ହୋଇପାରିବ । ଭାରତ ପୃଥିବୀର ବୃହତ୍ତମ ସାର୍ବଭୌମ ଗଣତାନ୍ତ୍ରିକ ସାଧାରଣତନ୍ତ୍ର ହୋଇଥିବାରୁ ଓ ଏହାର ବିଭିନ୍ନ ପଦ୍ଧତି ସମୟର କଷଟି ପଥରରେ ପରୀକ୍ଷିତ ହୋଇଥିବାରୁ ଏହି ସଂଘୀୟ ଶାସନ ବ୍ୟବସ୍ଥା ସୂଚାରୁରୂପେ ପରିଚାଳିତ ହୋଇ ବିଶ୍ୱରେ ଆଦର୍ଶ ସ୍ଥାପନ କରିପାରିଛି । ପଡ଼ୋଶୀ ରାଷ୍ଟ୍ରଗୁଡ଼ିକ ବିଭିନ୍ନ ସମୟରେ ସାମରିକ ଏକଛତ୍ରବାଦୀ ଶାସନରେ କବଳିତ ହୋଇ ବ୍ୟକ୍ତି ସ୍ୱାଧୀନତା କ୍ଷୁଣ୍ଣ ହୋଇଥିଲେ ହେଁ ଭାରତ ସାଧାରଣତନ୍ତ୍ରରେ ଆମ ଗଣତନ୍ତ୍ର ଏହାର ଆଦର୍ଶ ବଜାୟ ରଖିପାରିଛି ।

ଭାରତୀୟ ସାଧାରଣତନ୍ତ୍ର ୧୯୭୬ ମସିହାରେ ୪୨ତମ ସମ୍ବିଧାନ ସଂଶୋଧନ କରି ଏହାକୁ ଏକ ଧର୍ମନିରପେକ୍ଷ ରାଷ୍ଟ୍ରରେ ପରିଣତ କରିଛି । ତେଣୁ ଭାରତ ସରକାର କୌଣସି ନିର୍ଦ୍ଦିଷ୍ଟ ଧର୍ମକୁ ଏହାର ରାଷ୍ଟ୍ରଧର୍ମର ମାନ୍ୟତା ଦେଇ ନାହାନ୍ତି । ଆମ ସାଧାରଣତନ୍ତ୍ରରେ ଆମେ କୌଣସି ଏକ ନିର୍ଦ୍ଦିଷ୍ଟ ଧର୍ମକୁ ପ୍ରୋତ୍ସାହନ ଦେଇ ନଥାଉଁ ବା କୌଣସି ଧର୍ମର ବିରୁଦ୍ଧାଚରଣ କରି ନଥାଉ । ଭାରତର ନାଗରିକ ସ୍ୱାଧୀନ ଭାବରେ ଯେକୌଣସି ଧର୍ମ ଆଇନର ବିଧିବ୍ୟବସ୍ଥା ଅନୁସାରେ ଗ୍ରହଣ କରିପାରିବ ବା

ପରିବର୍ତ୍ତନ କରିପାରିବ । ଏହି ଧର୍ମଗତ ସ୍ୱାଧୀନତାର ଅଧିକାରକୁ ସମୟ ସମୟରେ ବିଭିନ୍ନ ପ୍ରରୋଚନା ଓ ପ୍ରଲୋଭନର ବଶବର୍ତ୍ତୀ ହୋଇ କୌଣସି ନାଗରିକ ଦୁରୁପଯୋଗ କରିବା ଅନୁଚିତ । ବେଳେ ବେଳେ ଏହା ସମାଜରେ ଶାନ୍ତିପୂର୍ଣ୍ଣ ସହାବସ୍ଥାନକୁ କ୍ଷତି ପହଞ୍ଚାଇଥାଏ, ଯାହା ଆମେ ବେଳେବେଳେ ଅଙ୍ଗେ ନିଭାଇଥାଉଁ । ତେଣୁ ଯଥାର୍ଥରେ କୁହାଯାଇଛି ଯେ ଜାତି, ଧର୍ମ, ଭାଷା, ମତବାଦ, ସମ୍ପ୍ରଦାୟ, ଶ୍ରେଣୀ ବିଭାଗର ବହୁଧା ବିଭକ୍ତ ସମାଜରେ ବସବାସ କରି ଆମ୍ଭେମାନେ ଯେପରି 'ବିଭିନ୍ନତା ମଧ୍ୟରେ ଐକ୍ୟ' – ପ୍ରତିପାଦନ କରିଛେଁ, ତାହା ଅନ୍ୟମାନଙ୍କପ୍ରତି ଓ ସମକାଳୀନ ମାନବ ସଭ୍ୟତାପ୍ରତି ଆମ୍ଭର ଉତ୍ସର୍ଗୀକୃତ ଅବଦାନ ।

ଭାରତୀୟ ସାଧାରଣତନ୍ତ୍ରର ବୈଶିଷ୍ଟ୍ୟ ହେଉଛି ଏହାର ସର୍ବବୃହତ୍ ଲିଖିତ ସମ୍ବିଧାନ । ଏହାର ମୋଟ ବାରଟି ଅନୁଚ୍ଛେଦରେ ୩୯୫ଟି ଧାରା ରହିଛି । ଏଥିରେ ଉଲ୍ଲିଖିତ ସଂଘୀୟ ଶାସନ ପଦ୍ଧତି ରାଜ୍ୟମାନଙ୍କ ତୁଳନାରେ କେନ୍ଦ୍ରକୁ ପର୍ଯ୍ୟାପ୍ତ କ୍ଷମତା ଦେଇଛି । ଏହା ଐକ୍ୟବଦ୍ଧ ରାଷ୍ଟ୍ର ଓ ସ୍ଥିର ରାଷ୍ଟ୍ରର ପ୍ରାଥମିକ ଆବଶ୍ୟକତା । ସମ୍ବିଧାନ ଭାରତର ନାଗରିକମାନଙ୍କୁ କେତେକ ମୌଳିକ ଅଧିକାର ଦେଇଛି । ସେହି ମୌଳିକ ଅଧିକାରଗୁଡ଼ିକ ହେଲା – ସମାନତାର ଅଧିକାର, ସ୍ୱାଧୀନତାର ଅଧିକାର, ଶୋଷଣ ବିରୋଧରେ ଅଧିକାର, ଧର୍ମଗତ ସ୍ୱାଧୀନତାର ଅଧିକାର, ଶିକ୍ଷାଗତ ଓ ସାଂସ୍କୃତିକ ଅଧିକାର ଓ ସାମ୍ବିଧାନିକ ପ୍ରତିବିଧାନର ଅଧିକାର । ଭାରତୀୟ ସାଧାରଣତନ୍ତ୍ରକୁ ଏକ ସମାଜବାଦୀ ଜନମଙ୍ଗଳ ରାଷ୍ଟ୍ରରେ ପରିଣତ କରିବା ଲକ୍ଷ୍ୟରେ ସମ୍ବିଧାନରେ ନିର୍ଦ୍ଦେଶମୂଳକ ରାଷ୍ଟ୍ରନୀତି ମଧ୍ୟ ପ୍ରଣୟନ ହୋଇଛି । ସମ୍ବିଧାନ ଭାରତରେ ଥିବା ସମସ୍ତ ସାମ୍ବିଧାନିକ ଅଧିକାରୀମାନଙ୍କର କ୍ଷମତା ପରିସର ନିର୍ଦ୍ଦିଷ୍ଟ ଭାବରେ ବ୍ୟାଖ୍ୟା କରିଛି । ରାଜ୍ୟ ଓ କେନ୍ଦ୍ର ମଧ୍ୟରେ ଦ୍ୱନ୍ଦ୍ୱ ଉପୁଜିବାର ପ୍ରାୟତଃ କୌଣସି ଅବକାଶ ନଥାଏ ।

ଭାରତୀୟ ସାଧାରଣତନ୍ତ୍ର ବହୁ ଘାତପ୍ରତିଘାତ ଦେଇ ଗତି କରିଛି । ସମୟର ଆବଶ୍ୟକତା ଅନୁଯାୟୀ କେତେବେଳେ ଆଭ୍ୟନ୍ତରୀଣ ଶାନ୍ତିଶୃଙ୍ଖଳା ନିମନ୍ତେ ରାଷ୍ଟ୍ରରେ ଜରୁରୀ ପରିସ୍ଥିତି ଜାରି କରାଯାଇଛି ଓ ପରିଣାମ ସ୍ୱରୂପ ସାମୟିକ ଭାବରେ ମୌଳିକ ଅଧିକାର ସଙ୍କୁଚିତ ହୋଇଛି, ପ୍ରେସ୍ ସ୍ୱାଧୀନତା ଉପରେ ଆଂଶିକ ଅଙ୍କୁଶ ଲଗାଯାଇଛି । କେତେବେଳେ ପୁଣି ଦୁର୍ନୀତି ଓ ବ୍ୟଭିଚାର ନିମନ୍ତେ ସାମ୍ବିଧାନିକ ପଦବୀ ମଣ୍ଡନ କରୁଥିବା କୌଣସି ବିଚାରପତିଙ୍କ ବିରୋଧରେ ମହାଭିଯୋଗ ଆଗତ ହୋଇଛି । କେତେବେଳେ ପୁଣି ରାଜ୍ୟଗୁଡ଼ିକରେ ଲୋକପ୍ରତିନିଧିମୂଳକ ଶାସନକୁ ବରଖାସ୍ତ କରି ଜରୁରିକାଳୀନ ରାଷ୍ଟ୍ରପତି ଶାସନ ମଧ୍ୟ ଜାରି କରାଯିବାର ନଜିର୍ ରହିଛି । ଏହିପରି କେତେକ ଉଦାହରଣକୁ ବାଦ୍ ଦେଲେ ପ୍ରତିଟି ସମସ୍ୟା ଓ ଏହାର ସମ୍ବିଧାନର ଗଣ୍ଡି ଭିତରେ ସମାଧାନ ଯୋଗୁଁ ଆମ ସାଧାରଣତନ୍ତ୍ରର ଗଣତନ୍ତ୍ର ବ୍ୟବସ୍ଥା ସୁଦୃଢ଼ ଓ ପରିପକ୍ୱ ହୋଇପାରିଛି । ବିଶ୍ୱ ସମୁଦାୟକୁ ଭାରତୀୟ ସାଧାରଣତନ୍ତ୍ରର ଏହା ସର୍ବଶ୍ରେଷ୍ଠ ଅବଦାନ ।

ବିଷ୍ଣୁପୁର
ଭାପୁର, ଢେଙ୍କାନାଳ



ସାହିତ୍ୟ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଥିବାରୁ କେନ୍ଦ୍ରାପଡ଼ାଠାରେ 'ତୁଳସୀ କ୍ଷେତ୍ର' ସାପ୍ତାହିକ ସମ୍ବାଦପତ୍ରର ଷଷ୍ଠ ବାର୍ଷିକୋତ୍ସବରେ 'ଉତ୍କଳ ପ୍ରସଙ୍ଗ'ର ମୁଖ୍ୟ ସଂପାଦକଙ୍କୁ ରାଜ୍ୟ ଖାଉଟି କଲ୍ୟାଣ ଓ ଖାଦ୍ୟ ଯୋଗାଣ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ସାରଦା ପ୍ରସାଦ ନାୟକ ସମ୍ବର୍ଦ୍ଧନା ଜ୍ଞାପନ କରୁଛନ୍ତି । ନିକଟରେ ସ୍ଥାନୀୟ ବିଧାୟିକା ଶ୍ରୀମତୀ ସିପ୍ରା ମଲ୍ଲିକ, ତୁଳସୀ କ୍ଷେତ୍ରର ସଂପାଦକ ଶ୍ରୀ ସୁଦର୍ଶନ ମହାପାତ୍ର ଓ ସାହିତ୍ୟିକ ଡକ୍ଟର ସର୍ବେଶ୍ୱର ସେଣ ଉପସ୍ଥିତ ଅଛନ୍ତି । (୧୦.୦୧.୨୦୧୦)

# ଆମ ସମ୍ବିଧାନ ଓ ସମ୍ବିଧାନ ସଭା

ଗନ୍ଧର୍ବସେନ ରଣା

ଭାରତବର୍ଷରେ ସମ୍ବିଧାନ ସଭାର ଦାବି ଥିଲା ଏକ ପ୍ରକାରର ରାଷ୍ଟ୍ରୀୟ ସ୍ୱାଧୀନତାର ଦାବି । ଏଇ ସମ୍ବିଧାନ ସଭାର ସିଦ୍ଧାନ୍ତ ସର୍ବପ୍ରଥମ ରୂପ ନେଇଥିଲା ୧୮୯୫ ମସିହାରେ "ସ୍ୱରାଜ୍ୟ ବିଧେୟକ" ଭାବରେ ସେଇ ସ୍ୱରୂପ ରୂପରେଖ ନେଇଥିଲା ତିଳକଙ୍କ ନିର୍ଦ୍ଦେଶନାରେ ।

ବିଂଶ ଶତାବ୍ଦୀରେ ଏଇ ସ୍ୱରୂପକୁ ପୁଙ୍ଖାନୁପୁଙ୍ଖ ଭାବରେ ବିଶ୍ଳେଷଣ କରିବା ପାଇଁ ମହାତ୍ମା ଗାନ୍ଧୀ ଆହ୍ୱାନ ଦେବା ସହ ୧୯୨୨ରେ କହିଥିଲେ, ଭାରତୀୟ ସମ୍ବିଧାନ ଭାରତୀୟଙ୍କ ଇଚ୍ଛା ଅନୁସାରେ ହିଁ ହେବ ।

ଏଇ ଆହ୍ୱାନକୁ ଆଧାର କରି ମୋତିଲାଲ ନେହେରୁ ୧୯୨୪ ମସିହାରେ ସମ୍ବିଧାନ ସଭାର ନିର୍ମାଣ ନେଇ ବ୍ରିଟିଶ ସରକାରଙ୍କ ସମ୍ମୁଖରେ ଦାବି ଉପସ୍ଥାପନ କରିଥିଲେ ସତ, କିନ୍ତୁ ସେମାନେ ଏଥିପ୍ରତି କର୍ଣ୍ଣପାତ କରି ନଥିଲେ । ତହିଁପରେ ଏମ୍.ଏନ୍. ରାୟ ସମ୍ବିଧାନ ସଭାର ବିଚାର ପାଇଁ ପ୍ରତିପାଦନ କରିବାରୁ ପଣ୍ଡିତ ଜବାହରଲାଲ ନେହେରୁଙ୍କୁ ଏଇ ବିଚାରର ଲୋକପ୍ରିୟ କରିବା ନେଇ ଦାୟିତ୍ୱ ଦିଆଯାଇଥିଲା । ସେଇଥିପାଇଁ କଂଗ୍ରେସ ଔପଚାରିକତାର ସହ ଘୋଷଣା କରିଥିଲେ – ଯଦି ଭାରତକୁ ଆତ୍ମ ନିର୍ଣ୍ଣୟର ଅବସର ମିଳେ, ତେବେ ଦେଶର ସବୁ ଶ୍ରେଣୀର ଲୋକଙ୍କ ପ୍ରତିନିଧି ସଭା ଡକାଯାଉ, ଯେଉଁମାନେକି ଏକ ସର୍ବସମ୍ମତ ସମ୍ବିଧାନର ନିର୍ମାଣ କରିପାରିବେ । ତାହାହିଁ ହେବ ସମ୍ବିଧାନ ସଭା ।

୧୯୨୭ ମସିହାରେ ଇଂରେଜ ସରକାରଙ୍କ ତତ୍କାଳୀନ ଭାରତମନ୍ତ୍ରୀ ବର୍କନହେଡ "ଭାରତବାସୀ ନିଜେ ସେମାନଙ୍କ ସମ୍ବିଧାନ ତିଆରି ପାଇଁ ଅକ୍ଷମ ହୋଇଥିବା ହେତୁ ପ୍ରଶାସନରେ ଆବଶ୍ୟକୀୟ ଅଦଳ ବଦଳ କରିବା ପାଇଁ ସାଇମନ କମିଶନ ନିଯୁକ୍ତି କରିଥିଲେ । ତତ୍କାଳୀନ ଭାରତମନ୍ତ୍ରୀଙ୍କ ଏତାଦୃଶ ମନ୍ତବ୍ୟକୁ ଆହ୍ୱାନ କରି ୧୯୨୮ ମସିହାରେ ଦିଲ୍ଲୀଠାରେ ଏକ ସର୍ବଦଳୀୟ ସଭାର ଆୟୋଜନ କରିଥିଲେ କଂଗ୍ରେସ କର୍ମକର୍ତ୍ତା । ସେଇଠି ମଧ୍ୟ ଭାରତୀୟ ସମ୍ବିଧାନ ପାଇଁ ଆବଶ୍ୟକୀୟ ରିପୋର୍ଟ ପ୍ରସ୍ତୁତ କରିବାକୁ ଏକ ନଅ ଜଣିଆ ସଦସ୍ୟ ବିଶିଷ୍ଟ ସବକମିଟି ଗଠନ କରାଯାଇଥିଲା, ଯାହାର ଅଧ୍ୟକ୍ଷ ଥିଲେ ପଣ୍ଡିତ ମୋତିଲାଲ ନେହେରୁ ଏବଂ ସଚିବ ଥିଲେ ପଣ୍ଡିତ ଜବାହରଲାଲ ନେହେରୁ । ବହୁତ ବିଚାର ବିମର୍ଷ କରି ନେହେରୁ ରିପୋର୍ଟ ନାମରେ ଏକ ରିପୋର୍ଟ ପ୍ରସ୍ତୁତ କରି ଇଂରେଜ ସରକାରଙ୍କ ସମ୍ମୁଖରେ ପେଶ କରିଥିଲେ । ମାତ୍ର ସରକାର ତାହାକୁ ସ୍ୱୀକାର କରିନଥିଲେ ।

ଭାରତୀୟ ଜନତାଙ୍କ ସମ୍ବିଧାନ ସଭାର ଦାବିକୁ ଇଂରେଜ ସରକାର ଗ୍ରହଣ କରୁ ନଥିବାବେଳେ ଦ୍ୱିତୀୟ ବିଶ୍ୱ ଯୁଦ୍ଧର ଆବଶ୍ୟକତା ତଥା ରାଷ୍ଟ୍ରୀୟ–ଅନ୍ତରାଷ୍ଟ୍ରୀୟ ଶକ୍ତିର ଚାପରେ ରାଜି ହୋଇ ୧୯୪୦ ମସିହାର ପ୍ରସ୍ତାବରେ ଇଂରେଜ ସରକାର କହିଥିଲେ – ଭାରତର ସମ୍ବିଧାନ ସ୍ୱଭାବତଃ ସ୍ୱୟଂ ଭାରତବାସୀ ପ୍ରସ୍ତୁତ କରିବେ । ଫଳସ୍ୱରୂପ ୧୯୪୨ ମସିହାରେ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ, ସାର୍ ଷ୍ଟେଫୋର୍ଡ଼ କ୍ରିପ୍ସ ନେତୃତ୍ୱରେ ଗୋଟାଏ ମିଶନ ପଠାଇଥିଲେ । ମାତ୍ର କ୍ରିପ୍ସ ଯୋଜନାକୁ ଭାରତୀୟମାନେ ଅସ୍ୱୀକାର କରିବା ଫଳରେ ୧୯୪୬ ମସିହାରେ କ୍ୟାବିନେଟ ମିଶନ୍ ଭାରତୀୟ ସମ୍ବିଧାନ ସଭାର ପ୍ରସ୍ତାବକୁ ସ୍ୱୀକାର କରି ଏହାକୁ ବ୍ୟବହାରିକ ରୂପରେ କାର୍ଯ୍ୟ କରିବା ପାଇଁ ମତ ପ୍ରଦାନ କରିବା ସହ ସେହି ବର୍ଷ ୨୪ ମାର୍ଚ୍ଚରେ ଦିଲ୍ଲୀ ଆସି ପହଞ୍ଚିଥିଲେ । ମଇ ୧୬ ତାରିଖରେ ମିଶନ ତାଙ୍କର ଯୋଜନାକୁ ପ୍ରକାଶ କରିଥିଲେ । ସେଇଥିରେ ସମ୍ବିଧାନ ନିର୍ମାଣ ପାଇଁ ପ୍ରସ୍ତାବିତ ସଙ୍ଗଠନ ସମ୍ପର୍କରେ ଲେଖାଥିଲା ବୟସ୍କ ମତଦାତାଙ୍କ ଆଧାରରେ ସମ୍ବିଧାନ ସଭାର ଗଠନ ବର୍ତ୍ତମାନ ପରିସ୍ଥିତିରେ ଅସମ୍ଭବ । ମାତ୍ର ଏହାର ବ୍ୟବହାରିକ ଉପାୟ ହେଉଛି ପ୍ରାନ୍ତୀୟ ବିଧାନସଭାର ନିର୍ବାଚନକାରୀ ସଂସ୍ଥା ରୂପରେ ଉପଯୋଗ କରାଯାଇପାରେ ।

କ୍ୟାବିନେଟ ମିଶନର ଯୋଜନା ଅନୁସାରେ ସମ୍ବିଧାନ ସଭାର ମୋଟ ୩୮୯ ସ୍ଥାନରୁ ବ୍ରିଟିଶ ଭାରତକୁ (ରାଜ୍ୟ ଗଡ଼ଜାତ ଅଞ୍ଚଳକୁ ଛାଡ଼ି) ୨୯୬ଟି ସ୍ଥାନ ଏବଂ ଗଡ଼ଜାତ ଅଞ୍ଚଳକୁ ୯୩ଟି ସ୍ଥାନ ଦିଆଯାଇଥିଲା । ସେହି ୨୯୬ ସ୍ଥାନରୁ ୪ଜଣ ଥିଲେ ମନୋନୀତ ସଭ୍ୟ । ୧୯୪୬ ଜୁଲାଇ ମାସରେ ୨୯୩ଟି ସ୍ଥାନରେ ନିର୍ବାଚନ ହୋଇଥିଲା । ସେଇ ନିର୍ବାଚନରେ କଂଗ୍ରେସ ୨୦୮, ମୁସଲିମ୍ ଲିଗ୍ ୭୩ ଏବଂ ସ୍ୱାଧୀନ ପ୍ରାର୍ଥୀମାନେ ଆଠଟି ସ୍ଥାନରେ ବିଜୟ ଲାଭ କରିଥିଲେ । ବାକି ସ୍ଥାନରେ ଭିନ୍ନ ଭିନ୍ନ ଦଳର ପ୍ରାର୍ଥୀ ବିଜୟଲାଭ କରିଥିଲେ ସୁଦ୍ଧା ମହାତ୍ମା ଗାନ୍ଧୀ, ଜିନ୍ନାଙ୍କ ଭଳି ନେତା ନିର୍ବାଚନରେ ଅବତୀର୍ଣ୍ଣ ହୋଇ ନଥିଲେ ।

ସମ୍ବିଧାନ ସଭାକୁ ମୁସଲିମ୍ ଲିଗ୍‌ର ସ୍ଥିତି ଦୁର୍ବଳ ଥିବା ଜାଣି ସମ୍ବିଧାନ ସଭାର ପ୍ରଥମ ଅଧିବେଶନ (୯ ଡ଼ିସେମ୍ବର, ୧୯୪୬)ରେ କୌଣସି ପ୍ରତିନିଧି ଯୋଗ ଦେଇ ନଥିଲେ । ଏହି ପ୍ରଥମ ଅଧିବେଶନ ସଂସଦର କେନ୍ଦ୍ରୀୟ କକ୍ଷରେ ଆରମ୍ଭ ହୋଇଥିଲା । ନଅଜଣ ମହିଳା ସଭ୍ୟଙ୍କ ସମେତ ସମସ୍ତ ୨୦୭ ସଭ୍ୟ ରାଷ୍ଟ୍ରପତିଙ୍କ ଆସନ ଆଡ଼କୁ ମୁହଁ କରି ଅର୍ଦ୍ଧ ବୃତ୍ତାକାରରେ ବସିଥିଲେ । ସମ୍ମୁଖ ଧାଡ଼ିରେ ବସିଥିବା ସଭ୍ୟମାନେ ଥିଲେ – ପଣ୍ଡିତ ଜବାହରଲାଲ ନେହେରୁ, ମୌଲନା ଅବୁଲ କଲାମ ଆଜାଦ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଆଚାର୍ଯ୍ୟ ଜେ.ବି. କୃପାଳିନୀ, ରାଜେନ୍ଦ୍ର ପ୍ରସାଦ, ସରୋଜୀନୀ ନାଇଡୁ, ହରେକୃଷ୍ଣ ମହତାବ, ପଣ୍ଡିତ ଜି.ବି. ପନ୍ଥ, ବି.ଆର. ଆମ୍ବେଦକର, ଶରତଚନ୍ଦ୍ର ବୋଷ, ସି. ରାଜଗୋପାଳଚାରୀ, ଏମ୍. ଅସଫଅଲ୍ଲୀ । ଡଃ ସଚ୍ଚିଦାନନ୍ଦ ସିହ୍ନା ପ୍ରଥମ ଅସ୍ଥାୟୀ ଅଧ୍ୟକ୍ଷ ଭାବେ ମନୋନୀତ ହେବାପରେ ସଦସ୍ୟମାନେ ନିଜ ନିଜର ପରିଚୟପତ୍ର ଦେଖାଇ ଉଦ୍ଦିଷ୍ଟ ରେଜିଷ୍ଟରରେ ଦସ୍ତଖତ କରିଥିଲେ ।

୧୯୪୬ ମସିହାର ଡିସେମ୍ବର ୧୧ ତାରିଖରେ କଂଗ୍ରେସର ବରିଷ୍ଠ ନେତା ରାଜେନ୍ଦ୍ର ପ୍ରସାଦ ସମ୍ବିଧାନ ସଭାର ପ୍ରଥମ ସ୍ଥାୟୀ ଅଧ୍ୟକ୍ଷ ଭାବେ ନିର୍ବାଚିତ ହେବା ପରେ ୧୩ ଡିସେମ୍ବରରେ ପଣ୍ଡିତ ନେହେରୁ ପ୍ରସ୍ତାବ ପେଶ କରିବାରେ ଜାନୁଆରୀ ୨୨, ୧୯୪୭ରେ ତାହା ପାରିତ ହୋଇଥିଲା । ସେଇ ପ୍ରସ୍ତାବରେ କୁହାଯାଇ ଥିଲା – ଭାରତ ଏକ ସଂପୂର୍ଣ୍ଣତା ସମ୍ପନ୍ନ ଗଣରାଜ୍ୟ ହେବ, ଯିଏ ସ୍ୱୟଂ ନିଜସ୍ୱ ସମ୍ବିଧାନ ତିଆରି କରିବ । ଭାରତ ସଂଘରେ, ବ୍ରିଟିଶ ଭାରତର ଯେଉଁ ଅଞ୍ଚଳ, ଗଡ଼ଜାତ ଅଞ୍ଚଳ ସମେତ ଯେଉଁ ଅଞ୍ଚଳଗୁଡ଼ିକ ଏଥିସହ ମିଶିବା ପାଇଁ ଆଗ୍ରହ ପ୍ରକାଶ କରିବେ, ଏକତ୍ର ରହିବେ । ଭାରତର ନାଗରିକଙ୍କୁ ସାମାଜିକ, ଆର୍ଥିକ, ରାଜନୈତିକ ନ୍ୟାୟ, ପଦ, ଅବସର ଏବଂ ଆଇନର ସମାନତା, ବିଚାର, ଭାଷଣ, ବିଶ୍ୱାସ, ବ୍ୟବସାୟ, ସଙ୍ଘ ନିର୍ମାଣ ଓ କାର୍ଯ୍ୟ କରିବାର ସ୍ୱତନ୍ତ୍ରତା, ଆଇନ ଓ ସାର୍ବଜନୀନ ନୈତିକତାର ଅଧୀନରେ ପ୍ରାପ୍ତ ହେବେ । ଅଳ୍ପ ସଂଖ୍ୟକ ଲୋକ, ପଛୁଆ ବର୍ଗ ଓ ଯାଯାବରମାନଙ୍କର ରକ୍ଷା ନିମିତ୍ତ ସମୁଚିତ ବ୍ୟବସ୍ଥା କରାଯିବ ।

ସମ୍ବିଧାନର ପ୍ରଥମ ରୂପରେଖ ସମ୍ବିଧାନ ସଭାର ପରାମର୍ଶଦାତା ବି.ଏନ୍. ରାଓଙ୍କ ନିର୍ଦ୍ଦେଶମତେ ପ୍ରସ୍ତୁତ ହୋଇଥିଲା । ଏହା ପୂର୍ବରୁ ପୃଥିବୀର ପ୍ରାୟ ଷାଠିଏଟି ଦେଶର ସମ୍ବିଧାନର ମହତ୍ତ୍ୱପୂର୍ଣ୍ଣ ସନ୍ଦର୍ଭକୁ ନେଇ ତିନି ଭାଗରେ ସଂକଳିତ କରାଯାଇଥିଲା ଏବଂ ଏହାର ବିଚାରବିମର୍ଷ ନେଇ ପ୍ରତ୍ୟେକ ସଦସ୍ୟଙ୍କୁ ଗୋଟାଏ ଲେଖାଏଁ କପି ଯୋଗାଇ ଦିଆଯାଇଥିଲା ।

ସମ୍ବିଧାନ ସଭାର ଦ୍ୱିତୀୟ ବୈଠକ ୨୦.୧.୧୯୪୭, ତୃତୀୟ ବୈଠକ – ୨୨.୪.୧୯୪୭, ଚତୁର୍ଥ ବୈଠକ ୧୪.୭.୧୯୪୭ ତାରିଖରେ ଅନୁଷ୍ଠିତ ହୋଇ ପ୍ରତ୍ୟେକ ବିଭାଗଗୁଡ଼ିକ ପାଇଁ କମିଟି ଗଠନ କରାଯାଇଥିଲା । ୧୯୪୭ ମସିହାର ଅଗଷ୍ଟ ଅଣତିରିଶ ତାରିଖରେ ସମ୍ବିଧାନ ପ୍ରସ୍ତୁତି ପାଇଁ ଡ. ବି.ଆର୍. ଆମ୍ବେଦକରଙ୍କ ଅଧ୍ୟକ୍ଷତାରେ ଏକ ସାତ ଜଣିଆ କମିଟି ଗଠନ କରାଯାଇଥିଲା । ଅନ୍ୟମାନେ ହେଲେ – ସାର୍ ଆଲ୍ଲାଦି କୃଷ୍ଣସ୍ୱାମୀ ଆୟାଙ୍ଗର, କେ.ଏମ୍. ମୁନସି, ଟି.ଟି. କୃଷ୍ଣମାଚାରୀ, ଏନ୍. ଗୋପାଳ ସ୍ୱାମୀ, ମହମ୍ମଦ ଅବଦୁଲା ଏବଂ ବି.ଏଲ୍. ମିତର । ସାର୍ ଆଲ୍ଲାଦି କୃଷ୍ଣସ୍ୱାମୀ ଆୟାଙ୍ଗର ସମ୍ବିଧାନର ମୌଳିକ ଅଧିକାର ତଥା ଉଚ୍ଚ ଓ ସର୍ବୋଚ୍ଚ ନ୍ୟାୟାଳୟ ସମ୍ବନ୍ଧୀୟ, ଟି.ଟି. କୃଷ୍ଣମାଚାରୀ ମୁଖ୍ୟତଃ ସଂଘୀୟ ସ୍ୱରୂପ, ଅର୍ଥ ଓ ଆନ୍ତଃରାଷ୍ଟ୍ରୀୟ ବାଣିଜ୍ୟ ସମ୍ବନ୍ଧୀୟ, ଏନ୍. ଗୋପାଳ ସ୍ୱାମୀଙ୍କ ଭାଷା ସମ୍ବନ୍ଧୀୟ ବିଷୟରେ ଅନୁଶୀଳନ କରିଥିଲେ ।

ଉପରୋକ୍ତ କମିଟି ବି.ଏନ୍. ରାଓଙ୍କ ସମ୍ବିଧାନର ପ୍ରଥମ ପ୍ରାରୂପକୁ ଅଧ୍ୟୟନ କରିବା ଅବସରରେ ଏଚ.ବି.କାମାଥ କିଛି ସଂଶୋଧନ କରିଥିଲେ । ନାଜିରୁଦ୍ଦିନ ଅହମ୍ମଦ କମା, ପୂର୍ଣ୍ଣଚ୍ଛେଦ, ବିରାମଗୁଡ଼ିକର ଶୁଦ୍ଧି କରିଥିଲେ । ପ୍ରଫେସର କେ.ଟି. ସାହ ରାଷ୍ଟ୍ରପତି ପ୍ରଣାଳୀ ପାଇଁ ପ୍ରସ୍ତାବ ରଖିଥିଲେ । ଏଚ୍.ଏନ୍. କୁଞ୍ଜୁର, ଫ୍ରାଙ୍କ୍ ଆଣ୍ଟୋନୀ, ମହାବୀର ତ୍ୟାଗି, ଦୁର୍ଗାବାହି ପ୍ରମୁଖ ଅନେକ ବିଦ୍ୱାନ ଅନେକାଂଶରେ ସାହାଯ୍ୟ ସହଯୋଗ କରିଥିଲେ ।

ଏହି ପ୍ରାରୂପ ସମ୍ବିଧାନକୁ ୧୯୪୮ ମସିହାରେ ସମ୍ବିଧାନ ସଭାର ଅଧ୍ୟକ୍ଷଙ୍କୁ ସମର୍ପଣ କରିବା ପରେ ଲୋକଲୋଚନକୁ ଆସିବା ପାଇଁ ପ୍ରକାଶିତ ହୋଇଥିଲା । ଫଳତଃ ଅନେକ ସଂଶୋଧନ

ହେବାପାଇଁ ମତ ପ୍ରାପ୍ତ ହୋଇଥିଲା । ସେସବୁର ବିଚାର ବିମର୍ଷ ଆରମ୍ଭ ହୋଇଥିଲା ସେହି ବର୍ଷ ନଭେମ୍ବର ମାସ ପନ୍ଦର ତାରିଖରୁ । ନାନା ସଂଶୋଧନ ପରେ ସମ୍ବିଧାନ ସଭାର ଅନ୍ତିମ ଦିବସ ୨୪ ଜାନୁଆରୀ ୧୯୫୦ରେ ଏଇ ପ୍ରାରୂପର ତିନୋଟି ନକଲ ଉପସ୍ଥାପନ କରି ସମ୍ବିଧାନ ସଭାର ଅଧ୍ୟକ୍ଷ ପ୍ରତ୍ୟେକ ସଦସ୍ୟଙ୍କୁ ଅନୁରୋଧ କରିଥିଲେ ପ୍ରତ୍ୟେକ କପିରେ ସନ୍ତକ କରିବାକୁ । ସମସ୍ତ ସଦସ୍ୟ ସନ୍ତକ କରିବା ପରେ ଜନ-ଗଣ-ମନ ଓ ବନ୍ଦେ ମାତରଂ ଗାନ କରି ସଭାସାଙ୍ଗ କରିଥିଲେ । ସମ୍ବିଧାନ ସ୍ୱୀକୃତି ଲାଭ କରିବାପରେ ୧୯୫୦ ଜାନୁଆରୀ ୨୬ ତାରିଖରେ ସେହି ସଭା ଭାରତୀୟ ଗଣରାଜ୍ୟର ସଂସଦ ନାମରେ ନାମିତ ହୋଇଥିଲା ।

ସମ୍ପୂର୍ଣ୍ଣ ସମ୍ବିଧାନ ପ୍ରସ୍ତୁତ ହେବା ପାଇଁ ଦୁଇ ବର୍ଷ ଏଗାର ମାସ ଅଠେଇଶ ଦିନ ଲାଗିଥିଲା । ଏଥିପାଇଁ ପ୍ରାୟ ୩୪ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା । ସମ୍ବିଧାନର ପ୍ରାରୂପକୁ ନେଇ ୧୧୪ ଦିନ ଧରି ଆଲୋଚନା ହୋଇ ୩୯୫ ଅନୁଚ୍ଛେଦ ଓ ଆଠଟି ଅନୁସୂଚୀ ରଖାଯାଇଥିଲା ।

ସମ୍ପୂର୍ଣ୍ଣ ସମ୍ବିଧାନ ପ୍ରସ୍ତୁତ ହେବା ପାଇଁ ଦୁଇ ବର୍ଷ ଏଗାର ମାସ ଅଠେଇଶ ଦିନ ଲାଗିଥିଲା । ଏଥିପାଇଁ ପ୍ରାୟ ୩୪ ଲକ୍ଷ ଟଙ୍କା ଖର୍ଚ୍ଚ ହୋଇଥିଲା । ସମ୍ବିଧାନର ପ୍ରାରୂପକୁ ନେଇ ୧୧୪ ଦିନ ଧରି ଆଲୋଚନା ହୋଇ ୩୯୫ ଅନୁଚ୍ଛେଦ ଓ ଆଠଟି ଅନୁସୂଚୀ ରଖାଯାଇଥିଲା ।

ସମ୍ବିଧାନର କିଛି ଅନୁଚ୍ଛେଦକୁ ୨୬ ନଭେମ୍ବର ୧୯୪୯ରେ ଲାଗୁ କରାଯାଇ ଅବଶିଷ୍ଟକୁ ଐତିହାସିକ କାରଣ ଯୋଗୁ ଜାନୁଆରୀ ୨୬, ୧୯୫୦ ମସିହାରେ ଲାଗୁ କରାଗଲା, ଯାହାକି ଆଜିଯାଏଁ ବଳବତ୍ତର ରହିଛି ।

ସେ ଯାହା ହେଉ, ଆମ ଭାରତର ସମ୍ବିଧାନ ହେଉଛି ପୃଥିବୀର ସବୁଠାରୁ ବଡ଼ ସମ୍ବିଧାନ । ଯୁଗ ବଦଳିବା ସହ ପରିସ୍ଥିତିକୁ ଖାପ ଖାଇବା ଭଳି ମୂଳ ସମ୍ବିଧାନରେ ଆଜିଯାଏ ୮୪ ଗୋଟି ସଂଶୋଧନ କରାଯାଇ ସାରିଲାଣି ।

ସମ୍ବିଧାନ ସଭା କାଳରେ ଗଠିତ ହୋଇଥିବା କମିଟି ଓ ସେସବୁର ଅଧ୍ୟକ୍ଷମାନଙ୍କର ତାଲିକା ଏହିପରି –

| କମିଟିର ନାମ | | ଅଧ୍ୟକ୍ଷଙ୍କ ନାମ |
|---|---|---|
| ୧. କାର୍ଯ୍ୟବିଧି ଆଇନ କମିଟି | – | ରାଜେନ୍ଦ୍ର ପ୍ରସାଦ |
| ୨. ଷ୍ଟିଅରିଂ କମିଟି | – | ରାଜେନ୍ଦ୍ର ପ୍ରସାଦ |
| ୩. ଅର୍ଥ ଓ ଷ୍ଟାଫ୍ କମିଟି | – | ରାଜେନ୍ଦ୍ର ପ୍ରସାଦ |
| ୪. ଆସ୍ଥାସ୍ଥାପକ କମିଟି | – | ଆଲାଦି କ୍ରିଷ୍ଣସ୍ୱାମୀ ଆୟାର |
| ୫. ଗୃହ କମିଟି | – | ବି. ପଟାଭି ସିତାରାମାୟା |
| ୬. ଅର୍ଡ଼ର ଅଫ୍ ବିଜିନେସ୍ କମିଟି | – | କେ.ଏମ୍. ମୁନ୍‌ସି |
| ୭. ଜାତୀୟ ପତାକାର ଆଡ୍‌ହକ୍ କମିଟି | – | ରାଜେନ୍ଦ୍ର ପ୍ରସାଦ |
| ୮. ସମ୍ବିଧାନର କାର୍ଯ୍ୟଧାରା କମିଟି | – | ଜି.ଭି. ମାଭଲକର |
| ୯. ଷ୍ଟେଟ୍ସ କମିଟି | – | ଜବାହରଲାଲ ନେହେରୁ |
| ୧୦. ସଂଖ୍ୟାଲଘୁ କମିଟି | – | ଏଚ୍.ସି. ମୁଖାର୍ଜୀ |
| ୧୧. ମୌଳିକ ଅଧିକାର କମିଟି | – | ଜେ.ବି. କ୍ରିପାଳିନୀ |
| ୧୨. କେନ୍ଦ୍ରୀୟ କ୍ଷମତା କମିଟି | – | ଜବାହରଲାଲ ନେହେରୁ |
| ୧୩. କେନ୍ଦ୍ର ସମ୍ବିଧାନ କମିଟି | – | ଜବାହରଲାଲ ନେହେରୁ |
| ୧୪. ଡ୍ରାଫ୍ଟି କମିଟି | – | ବି.ଆର୍. ଆମ୍ବେଦକର |
| ୧୫. ମୌଳିକ ଅଧିକାର, ସଂଖ୍ୟାଲଘୁ ଜନଜାତି ଏବଂ ବହିଃଷ୍କରଣ ଅଞ୍ଚଳର ଉପଦେଷ୍ଟା କମିଟି | – | ବଲ୍ଲଭଭାଇ ପଟେଲ |
| ୧୬. ଉତ୍ତରପୂର୍ବ ସୀମାନ୍ତ ଜନଜାତି ଅଞ୍ଚଳ ଏବଂ ଆସାମ ବହିଃ ଅଞ୍ଚଳ ଓ ଆଂଶିକ ବହିଃ ଅଞ୍ଚଳ ସବ୍‌କମିଟି | – | ଗୋପୀନାଥ ବରଦୋଲାଇ |
| ୧୭. ବହିଃଷ୍କରଣ ଓ ଆଂଶିକ ବହିଃ ଅଞ୍ଚଳ ସବ୍ କମିଟି | – | ଏ.ଭି. ଥାକର |

କ୍ୱା.ନଂ.:ଇ-୧୪୯
ୟୁନିଟ୍-୮, ଭୁବନେଶ୍ୱର-୧୨

# ମୋ' ଦେଶ ମୋ' ପରିବେଶ

ଡାକ୍ତର ଦୀନବନ୍ଧୁ ମହାରଣା

**ମୋ'** ଦେଶ ମହାନ୍, ସୁନ୍ଦର । ଏହାର ତିନି ପାଖରେ ଘେରି ରହିଛି ସମୁଦ୍ର । ଗୋଟିଏ ପାଖରେ ହିମାଳୟ ପର୍ବତମାଳା, ପୂର୍ବରେ ବଙ୍ଗୋପସାଗର, ପଶ୍ଚିମରେ ଆରବ ସାଗର, ଦକ୍ଷିଣରେ ଭାରତ ମହାସାଗର । ଉତ୍ତରରେ ହିମାଳୟ ବିଶାଳ ପର୍ବତମାଳା । ଏହାଛଡ଼ା ଦେଶ ଭିତରେ ରହିଛି ବିପୁଳ ଜଙ୍ଗଲ, ବିସ୍ତୃତ ପାହାଡ଼, ନଦୀ, ତା'ଛଡ଼ା ଝରଣା ଓ ଜଳପ୍ରପାତ ।ପୁଣି ରହିଛି ରାଜସ୍ଥାନର ସୁବିସ୍ତୀର୍ଣ୍ଣ ମରୁଭୂମି ।

ଏପରି ଏକ ଦେଶର ଅଧିବାସୀ ମୁଁ ଏବଂ ମୋ' ଭଳି ଅସଂଖ୍ୟ ସନ୍ତାନ । ଆମେ ସମସ୍ତେ ଦେଶକୁ ମାଆ ଭଳି ଭକ୍ତିକରୁଁ, ପୂଜାକରୁଁ । ଏ ଦେଶର ମାଟି ଚିର ସବୁଜିମାରେ ଭରପୂର । ଏ ଦେଶର ପାଣି, ପବନରେ ଶାନ୍ତି ଆନନ୍ଦର ବାଣୀ ଯେମିତି ପ୍ରତିଧ୍ୱନିତ ହୋଇଉଠେ । ଉତ୍ତରରେ ଗଙ୍ଗା, ଯମୁନା, ସରସ୍ୱତୀ ଦକ୍ଷିଣରେ କୃଷ୍ଣା, କାବେରୀ, ଗୋଦାବରୀ । ପଶ୍ଚିମରେ ନର୍ମଦା, ସିନ୍ଧୁ । ପୂର୍ବରେ ବ୍ରହ୍ମପୁତ୍ର । ମଧ୍ୟସ୍ଥଳରେ ମହାନଦୀ ଓଡ଼ିଶାର ପ୍ରଧାନ ନଦୀ ଭାବରେ ବିଖ୍ୟାତ ।

ମୋ' ଦେଶରେ ଛଅଟି ଋତୁର ଫସଲ ହସିଉଠେ । ଗ୍ରୀଷ୍ମ, ବର୍ଷା, ଶୀତ, ବସନ୍ତ, ଶରତ, ହେମନ୍ତ । କେତେ ଜାତି ଫୁଲ, ଫଳ ମୋ' ଦେଶ ମାଆର ଦେହସାରା ଘୋଡ଼େଇ ହୋଇ ରହେ । ଆମେ ସେ ସବୁକୁ ପ୍ରାଣଭରି ଉପଭୋଗ କରୁ । କେତେ ପୂଜା, ପର୍ବ, ଓଷା, ବ୍ରତରେ ବର୍ଷସାରା ମାତି ରହୁ ।

ମୋ' ଦେଶକୁ ବିଭିନ୍ନ ରାଜ୍ୟରେ ବିଭକ୍ତ କରାଯାଇଛି । ଓଡ଼ିଶା, ଆନ୍ଧ୍ର, ବଙ୍ଗଳା, ବିହାର, ମଧ୍ୟପ୍ରଦେଶ, ରାଜସ୍ଥାନ, ଉତ୍ତରପ୍ରଦେଶ, ପଞ୍ଜାବ, ହରିଆନା, ମହୀଶୂର, ମହାରାଷ୍ଟ୍ର, ବମ୍ବେ, ତାମିଲନାଡୁ, କେରଳ, ଆସାମ, ତ୍ରିପୁରା, ମଣିପୁର, ଅରୁଣାଚଳ, ନାଗାଲାଣ୍ଡ ଓ ଆଣ୍ଡାମାନ-ନିକୋବର ଦ୍ୱୀପପୁଞ୍ଜ । ରାଜ୍ୟରେ ବିଭିନ୍ନ ଭାଷା, ଓଡ଼ିଆ, ବଙ୍ଗଳା, ତେଲୁଗୁ, ତାମିଲ, ହିନ୍ଦୀ, ମରାଠୀ ଇତ୍ୟାଦିର ପ୍ରଚଳନ ରହିଛି । ସମସ୍ତେ ସବୁ ଭାଷାକୁ ଭଲ ପାଆନ୍ତି । ଏସବୁ ଭାଷା ଭିତରେ ହିନ୍ଦୀ ମୁଖ୍ୟସ୍ଥାନ ଗ୍ରହଣ କରିଛି । ହିନ୍ଦୀକୁ ଆମର ରାଷ୍ଟ୍ରଭାଷା ଭାବେ ସମ୍ବିଧାନରେ ସ୍ୱୀକାର କରାଯାଇଛି । ଏହାଛଡ଼ା ଇଂରାଜୀ ଭାଷା ମଧ୍ୟ ଆମ ଦେଶରେ ଆଦୃତ ହୋଇପାରିଛି ।

୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ମୋ' ଦେଶରୁ ବିଦେଶୀ ଶାସନ ହଟିଲା । ଇଂରେଜ ସରକାର ବିଦା ହୋଇଗଲେ ଏବଂ ଆମେ ସମସ୍ତେ ସ୍ୱାଧୀନ ଦେଶର ନାଗରିକ ହେଲୁଁ । ନିଜେ ନିଜକୁ ଶାସନ କଲୁଁ । ୧୯୫୦ ଜାନୁଆରୀ ୨୬ରେ ଆମେ ଆମର ସାଧାରଣତନ୍ତ୍ରର ପ୍ରଚଳନ କଲୁଁ । ଏ ଶାସନରେ ଜଣେ କେହି ରାଜା ନାହାନ୍ତି । ଜନଗଣ ହିଁ ସବୁ । ଏହାକୁ ଗଣତନ୍ତ୍ରର ଶାସନ କୁହାଯାଏ ।

ମୋ' ଦେଶର ସବୁଠାରୁ ବଡ଼ ଜଣେ ଜଣାଶୁଣା ନେତା ଥିଲେ । ତାଙ୍କର ନାମ ମୋହନଦାସ କରମଚାନ୍ଦ ଗାନ୍ଧୀ । ତାଙ୍କୁ 'ମହାତ୍ମା ଗାନ୍ଧୀ' ବୋଲି ଆମେ କହୁଁ । ସେ ଅହିଂସା ମାର୍ଗରେ ସ୍ୱାଧୀନତା ଆନ୍ଦୋଳନକୁ ପରିଚାଳନା କରିଥିଲେ । ସେ ଆନ୍ଦୋଳନ ଗୁଳିଗୋଳା ବନ୍ଧୁକରେ ଚାଲି ନଥିଲା । ସତ୍ୟ, ଅହିଂସା, ଶାନ୍ତି, ମୈତ୍ରୀ ହେଲା ଆମ ସ୍ୱାଧୀନତା ଆନ୍ଦୋଳନର ପ୍ରଧାନ ଆଦର୍ଶ । ମହାତ୍ମା ଗାନ୍ଧୀ ଏଇ ଆଦର୍ଶରେ ସାରା ଦେଶକୁ ଅନୁପ୍ରାଣିତ କରିଥିଲେ । ସମସ୍ତେ ଏକ ହୋଇଗଲେ । ଏକତା ବଳରେ ଆମ ଦେଶରୁ ଇଂରାଜୀ ଶାସନ ହଟିଲା । ବିଲାତର ଗୋରା ଶାସକମାନେ ଆମକୁ ଆଉ ନାଲି ଆଖି ଦେଖାଇ ଡରାଇ ହରାଇ ଶାସନ କରିପାରିଲେ ନାହିଁ । ତାଙ୍କ ଦେଶକୁ ସେମାନେ ପେଡ଼ିପୁଟୁଳା ବାନ୍ଧି ଚାଲିଗଲେ । ଦୁଇଶହ ବର୍ଷ ଧରି ସେମାନେ ଆମ ଦେଶରେ ରହିଥିଲେ । ଅବଶ୍ୟ ସେମାନେ ଶାସନ କଲାବେଳେ ଆମ ଦେଶର ବହୁତ ଉନ୍ନତି କରି ଯାଇଛନ୍ତି । ରେଳ, ମଟରଗାଡ଼ି, ଉଡ଼ାଜାହାଜ, ପାଣିଜାହାଜ ଇତ୍ୟାଦି ଗମନାଗମନର ସୁବିଧା କରିଥିଲେ । ଚିଠିପତ୍ରର ଆଦାନପ୍ରଦାନ ପାଇଁ ଡାକ ବ୍ୟବସ୍ଥା କରିଥିଲେ । ଛାପାକଳ, ରେଡ଼ିଓ, ଟେଲିଫୋନ, ଟେଲିଗ୍ରାମ୍, ବିଦ୍ୟୁତ୍ ସରବରାହ, କଳକାରଖାନା, ସହର, ଡାକ୍ତରଖାନା, ସ୍କୁଲ, କଲେଜ,

ବିଶ୍ୱବିଦ୍ୟାଳୟ ଇତ୍ୟାଦି ଅନେକ ଲୋକହିତକର କାର୍ଯ୍ୟ କରିଯାଇଛନ୍ତି । ସେଥିପାଇଁ ଆମେ ତାଙ୍କୁ ଘୃଣା ନକରି କେବଳ ସେମାନଙ୍କର ଶୋଷଣ ପେଷଣ ବିରୋଧରେ ସ୍ୱର ଉଠାଇଥିଲୁଁ ।

ମୋ' ଦେଶ ଗୋଟିଏ ଅଦ୍ଭୁତ ଦେଶ । ଏଠି ଗୋଟିଏ ଜାତି, ବର୍ଣ୍ଣ କି ଭାଷାର ଲୋକ ନାହାନ୍ତି । ଲୋକେ ଯେମିତି ବିଚିତ୍ର, ଦେଶ ସେମିତି ବିଚିତ୍ର । ଏଇ ବିଚିତ୍ରତା ହିଁ ଆମର ବିଶେଷତ୍ୱ । ତା'ରି ଭିତରେ ଏକତା ବଜାୟ ରଖିବା ଏକ ହୋଇ ଚଳିବା ପାଇଁ ଆମକୁ ଆମର ନେତାମାନେ, ମୁରବୀମାନେ ଶିକ୍ଷା ଦେଇଛନ୍ତି । ସେମାନେ ଆମକୁ ଗୋଟିଏ ଦେଶ ମାଆର ସନ୍ତାନ ଭାବେ, ଭିନ୍ନ ଭିନ୍ନ ରୁଚି, ଭିନ୍ନ ଭିନ୍ନ ଅଭ୍ୟାସ ନେଇ ବଞ୍ଚି ରହିବା ଓ ଅନ୍ୟକୁ ବଞ୍ଚେଇବା ପାଇଁ ପ୍ରେରଣା ଦେଇଛନ୍ତି । ପରସ୍ପରକୁ ଭଲ ପାଇବା, ବୁଝିବା, ସୁଖଦୁଃଖରେ ଭାଗୀ ହୋଇ ଚଳିବା ହେଉଛି ଆମର ଲକ୍ଷ୍ୟ । ତା'ରି ଭିତରେ ଦେଶର ମାଟି, ପାଣି, ପବନକୁ ବିଶୁଦ୍ଧ କରିବା ପାଇଁ ତା'ର ପରିବେଶକୁ ସୁସ୍ଥ ସବଳ ରଖିବା ପାଇଁ ଆମକୁ ଅନେକ ବିଷୟପ୍ରତି ସତର୍କ ରହିବାକୁ ପଡ଼ିବ ବୋଲି କୁହାଯାଉଛି । ତା' ନହେଲେ ଦେଶ ନାଶ ହୋଇଯିବ । ଦେଶକୁ ତା'ର ପରିବେଶ ରକ୍ଷା କରିଛି । ତେଣୁ ଦେଶ ଆଉ ପରିବେଶ ଏ ଉଭୟ ଆମର ଉପାସ୍ୟ । ଆମେ ଦେଶ କହିଲେ ଏହାର ପରିବେଶର ସୁରକ୍ଷା କଥା ବୁଝୁଁ । ଦେଶକୁ ଶତ୍ରୁ କବଳରୁ ମୁକ୍ତ କରିବା ପାଇଁ ଆମେ ଯେମିତି ଲଢ଼େଇ କରୁ ସେମିତି ପରିବେଶର ପ୍ରଦୂଷଣରୁ ମୁକ୍ତ କରିବା ପାଇଁ ମଧ୍ୟ ଲଢ଼େଇ କରିବାକୁ ପଡ଼ିବ । ଆଜି ପରିବେଶର ଚିନ୍ତା ଆମକୁ ବେଶି ଘାରିଛି । କାରଣ ଦେଶରୁ ସବୁଜ ସଂପଦର ଘୋର ଅବକ୍ଷୟ ଘଟୁଛି ଜଙ୍ଗଲ ନଷ୍ଟ ହୋଇଯାଉଛି । ଏଥିପାଇଁ ଆମକୁ ଜଙ୍ଗଲ ସୃଷ୍ଟି କରିବାକୁ ପଡ଼ିବ ।

ମୋ' ଦେଶର ପରିବେଶ କେଉଁ ଆଦିମକାଳରୁ ବେଶ୍ ସୁନ୍ଦର, ସୁମଧୁର ଥିଲା । ଘନ ସବୁଜିମାରେ ମୋ' ଦେଶର ବୁକୁ ହସି ଉଠୁଥିଲା । ଋଷିମୁନିମାନେ ଘୋର ବନଭୂମିରେ ବସି ତପସ୍ୟା କରୁଥିଲେ । ମନ୍ତ୍ର ପଢୁଥିଲେ । ସେମାନେ ମୋ' ଦେଶର ପ୍ରକୃତିକୁ ପୂଜା କରୁଥିଲେ । ସେମାନେ ଥିଲେ ପ୍ରକୃତିର ଉପାସକ । ପ୍ରକୃତି ଆମ ସମସ୍ତଙ୍କର ଆଶ୍ରୟ । ତା'ରି କୋଳରେ ଅସଂଖ୍ୟ ଜୀବଜନ୍ତୁ ପଶୁପକ୍ଷୀ, କୀଟପତଙ୍ଗ, ଜଡ଼ ଉଦ୍ଭିଦ ଲକ୍ଷ ଲକ୍ଷ ବର୍ଷ ଧରି ଆତଯାତ ହୋଇ ଆସିଛନ୍ତି । ଆମେ ମଣିଷ ପ୍ରକୃତିର ଗୋଟିଏ ସୃଷ୍ଟି । ଆମର କେତେ ଆଶା ଭରସା ସବୁ ସେଇ ପ୍ରକୃତିକୁ ନେଇ ଗଢ଼ି ଉଠିଛି । ଆମେ ସବୁ ସେଇ ପ୍ରକୃତିଠାରୁ ଶିଖିଛୁଁ ।

ସେ ଯାହାହେଉ, ମୋ' ଦେଶର ପରିବେଶ କେମିତି ସୁରକ୍ଷିତ ରହିବ ସେଥିପାଇଁ ମୋର ଦେଶବାସୀଙ୍କୁ ଭାଇଭଉଣୀଙ୍କୁ ବହୁତ କିଛି କରିବାର ଅଛି । ମୁଁ ଜଣେ, ମୋ' ପରି କୋଟି କୋଟି ସନ୍ତାନ ଏଇ ଦେଶରେ ଜନ୍ମ ହୋଇଛନ୍ତି, ସେମାନଙ୍କ ଜୀବନର ଯାତ୍ରାପଥରେ କେତେ ଉଠାପକା, ଆନନ୍ଦ ବିଷାଦ ଲାଗି ରହିଛି । ତା'ସତ୍ତ୍ୱେ ଦେଶବାସୀ ଏକାଠି ହୋଇ ଆଗେଇ ଚାଲିଛନ୍ତି । ସମସ୍ତଙ୍କର ଲକ୍ଷ୍ୟ ଦେଶ ବଢ଼ିବ, ପରିବେଶ ସୁଧୁରିବ । ଆଜି ଦେଶରେ ପରିବେଶ ନଷ୍ଟ ହେଉଥିବାରୁ ବହୁତ ଦୁଃଖ ବିପଦ ଆସି ଦେଖାଦେଇଛି । ଠିକ୍ ସମୟରେ ବର୍ଷା ହେଉନାହିଁ, ତେଣୁ ମରୁଡ଼ି ପରେ ଦେଶସାରା ଦୁର୍ଭିକ୍ଷ ପଡୁଛି । ଶସ୍ୟ ଉପୁଜି ପାରୁ ନାହିଁ । ବର୍ଷା ଠିକ୍ ସମୟରେ ନହେଲେ କୃଷିକାର୍ଯ୍ୟ ହୋଇପାରେ ନାହିଁ । ପୁଣି ବେଶି ବର୍ଷା ହେଲେ ବନ୍ୟାରେ ଘରଦ୍ୱାର ବିଲବାଡ଼ି ସବୁ ଭାସିଯାଏ । ତା' ସାଙ୍ଗକୁ ଅଛି ବାତ୍ୟା । ଅଚାନକ ପ୍ରଚଣ୍ଡ ପବନ ଝଡ଼ରେ ସବୁ ଉପୁଡ଼ି ପଡ଼େ, ଘରଦ୍ୱାର ଉଡ଼ିଯାଏ । ଏସବୁ ହେଉଛି କେବଳ ପରିବେଶ ନଷ୍ଟ ହେଉଥିବା ଯୋଗୁଁ । ପରିବେଶ ହେଉଛି ପ୍ରକୃତିର ନିୟମ କାନୁନ । ଏଇ ପ୍ରକୃତିର ନିୟମ କାନୁନ ଭାଙ୍ଗିଲେ ପରିବେଶ ନଷ୍ଟ ହୋଇଯାଏ । ଯେଉଁ ପରିବେଶରୁ ଜୀବଜଗତର ବିକାଶ ହୋଇଛି ତାକୁ ଧ୍ୱଂସ କରିବା ବାସ୍ତବିକ ଅପରାଧ ପରି ।

ତେଣୁ ମୋ' ଦେଶ ମୋ' ପରିବେଶକୁ ସୁରକ୍ଷା ଯୋଗାଇବା ମୋର ପ୍ରଧାନ ଲକ୍ଷ୍ୟ । ତାହା ହିଁ ତ ସ୍ୱାଭାବିକ ଧର୍ମ । ପ୍ରକୃତିଠାରୁ ବଡ଼ ଉପକାରୀ ଆମର ଆଉ କେହି ନାହିଁ । ଏଇ ପ୍ରକୃତି ଆମକୁ ପାଳନ ପୋଷଣ କରୁଛି । ପ୍ରକୃତିକୁ ଆମେ କେହି ସୃଷ୍ଟି କରି ନାହୁଁ । ବରଂ ପ୍ରକୃତି ଆମକୁ ସୃଷ୍ଟି କରିଛି । ଏଥିନେଇ ପ୍ରକୃତିକୁ ଭଗବାନଙ୍କର ଅବତାର ଭାବେ ଆମେ ଗ୍ରହଣ କରିବା ଉଚିତ ହେବ । ଭଗବାନଙ୍କୁ ଆମେ ଖାଲି ବିଶ୍ୱାସ କଲେ ହେବ ନାହିଁ କି ମନ୍ଦିର ମସ୍‌ଜିଦ୍, ଗୀର୍ଜା, ଗୁରୁଦ୍ୱାର, ସ୍ତୂପ ଗମ୍ଭୁଜ ଗଢ଼ି ଦେଇ ବାନ୍ଧି ଦେଲେ ଆମେ ଭଗବାନଙ୍କୁ ପାଇଯିବୁ ନାହିଁ । ଭଗବାନଙ୍କୁ ପାଇବା ପାଇଁ ଆମକୁ ପ୍ରକୃତିର ସୁନ୍ଦର ଅବସ୍ଥିତିପ୍ରତି ସଚେତନ ହେବା ସଂଗେସଂଗେ ଆମ ଅଭ୍ୟାସ ଆଉ ଚଳଣି ଭିତରେ କେତୋଟି ବିଷୟରେ ସତର୍କ ହେବାକୁ ପଡ଼ିବ ।

ପ୍ରଥମ କଥା ହେଲା ଚାରୁଲତା । ଗଛଟିଏ ଆମ ଜୀବନ ଧାରଣ ପାଇଁ କାର୍ଯ୍ୟ କରେ । ଆମେ ପ୍ରତି ମୁହୂର୍ତ୍ତରେ ନିଃଶ୍ୱାସଦ୍ୱାରା ଯେଉଁ ଅଙ୍ଗାରକାମ୍ଳ ବାଷ୍ପକୁ ତ୍ୟାଗ କରୁ ତାହା ତା'ର ଅସଂଖ୍ୟ ପତ୍ରର ଶିରାପ୍ରଶିରାଦ୍ୱାରା ଶୋଷିନେଇ ଆମକୁ ପ୍ରତିଦାନରେ ଅମ୍ଳଜାନ ବାଷ୍ପ ଦିଏ । ଆମେ ସେଇ ଅମ୍ଳଜାନ ବାଷ୍ପକୁ ପ୍ରଶ୍ୱାସଦ୍ୱାରା ଗ୍ରହଣ କରି ବଞ୍ଚି ରହୁଁ । ଅମ୍ଳଜାନ ନଥିଲେ ମଣିଷର ମୃତ୍ୟୁ ସୁନିଶ୍ଚିତ । ଏ ହେଉଛି ସ୍ୱାସ୍ଥ୍ୟ ବିଜ୍ଞାନର କଥା । ମଣିଷର ଜୀବନଧାରଣ କେବଳ ଅମ୍ଳଜାନ ବାଷ୍ପଦ୍ୱାରା ସମ୍ଭବ । ଗଛ ଏଇ

ଅମ୍ଳଜାନ ସୃଷ୍ଟି କରେ । ତେଣୁ ଗଛଠାରୁ ବଳି ପ୍ରକୃତ ବନ୍ଧୁ ଆମର ଆଉ କେହିଁ ନାହିଁ । ଗଛ ଆମର ପ୍ରାଣଦାତା । ସେଥିପାଇଁ ଗଛଟିଏ ଲଗାଇବା ଆମ ପରମ୍ପରାରେ ଧର୍ମକର୍ମ ବୋଲି ଗୃହୀତ ହୋଇଛି ।

ଗୋଟିଏ ଗଛ କାଟିଲେ ହଜାରେ ମଣିଷକୁ କାଟିବା ସହିତ ସମାନ । ଗଛ ଆଉ ମଣିଷ ପରସ୍ପର ବନ୍ଧୁ । ଗଛ ତା'ର ଦେହରେ ମଣିଷ ପାଇଁ ଅମୃତ ଭରି ରଖିଛି । ଜୀବନ କହିଲେ ଶ୍ୱାସକ୍ରିୟା । ଏହି ଶ୍ୱାସକ୍ରିୟା ପାଇଁ ଆମେ ପ୍ରତି ସେକେଣ୍ଡରେ ଯେଉଁ ପବନ ଗ୍ରହଣ କରୁ ସେ ପବନରେ ଅମ୍ଳଜାନ ବୋଲି ଗୋଟିଏ ପଦାର୍ଥ ଥାଏ । ତାହା ଆମ ଫୁସ୍‌ଫୁସ୍ ସାହାଯ୍ୟରେ ଶରୀର ଭିତରକୁ ଯାଏ ଏବଂ ହୃତ୍‌ପିଣ୍ଡ ସକ୍ରିୟ ହୋଇ ସାରା ଶରୀରକୁ ରକ୍ତ ସଂଚାଳନ କରାଏ । ଏଇ ପବନ ପାଇଁ ଗଛକୁ ଯେମିତି ବିଧାତା ଗଢ଼ିଛି । ଗଛ ଏଇ ଅମ୍ଳଜାନ ବା ଅକ୍ସିଜେନର ଗୋଟିଏ ବ୍ୟାଙ୍କ । ଡାକ୍ତରଖାନାରେ ଗୁରୁତର ଅବସ୍ଥାରେ ପଡ଼ିଥିଲା ବେଳେ ରୋଗୀକୁ ଯେଉଁ ଅମ୍ଳଜାନ, ସିଲିଣ୍ଡରର ପାଇପ୍ ଜରିଆରେ ନାକପୁଡ଼ା ବାଟେ ତା'ର ଫୁସ୍‌ଫୁସ୍‌କୁ ପହଞ୍ଚାଇ ଦିଆଯାଏ, ସେଇ ଅମ୍ଳଜାନକୁ ଆମେ ପ୍ରତିମୁହୂର୍ତ୍ତରେ ଗଛଠାରୁ ବିନା ଚେଷ୍ଟାରେ ପାଇପାରୁଛୁ । ଅଥଚ ଆମେ କେତେ ନିର୍ବୋଧ ! ସାମାନ୍ୟ ସ୍ୱାର୍ଥ ପାଇଁ ଆମର ଫାଲ୍‌ତୁ ଗୁଜୁରାଣ ମେଣ୍ଟାଇବା ପାଇଁ ଆମେ ଗଛକୁ କାଟି ଦେଉଛୁ । ନରହତ୍ୟା ଭଳି ଏହା ଏକ ଅପରାଧ । ଗଛ ଆମକୁ ଯାହା ଦେଉଛି ତାକୁ ଆମେ କେବେହେଲେ ଶୁଝିପାରିବା ନାହିଁ । ସେ ଆମକୁ ଅମୃତ ଦେଇ ଆମର ଦୂଷିତ ପଦାର୍ଥ ଗ୍ରହଣ କରି ବଞ୍ଚିଛି ଏସବୁ ବିଜ୍ଞାନର କଥା । ଆମେ ନାକବାଟେ ଯେଉଁ ଶ୍ୱାସ ଗ୍ରହଣ କରୁ ତାକୁ ଗଛଠାରୁ ଅମ୍ଳଜାନ ଆକାରରେ ପାଇଥାଉ ଏବଂ ଯାହାକୁ ଛାଡୁ ଅଙ୍ଗାରକାମ୍ଳ (ହାଇଡ୍ରୋଜେନ) କୁହାଯାଏ । ଆମ ଶରୀର ଭିତରୁ ଦୂଷିତ ପଦାର୍ଥଗୁଡ଼ିକ ଏଇ ଅଙ୍ଗାରକାମ୍ଳ ବାଷ୍ପ ଜରିଆରେ ବାହାରକୁ ଆସେ ଏବଂ ତା' ପୁଣି ଗଛର ଯାଦୁକରୀ ସ୍ପର୍ଶରେ ଅମ୍ଳଜାନରେ ପରିଣତ ହୁଏ । ଏପରି ଏକ ମହାନ୍ ଓ ପବିତ୍ର କାର୍ଯ୍ୟ କରୁଥିବା ଗଛକୁ ଆମେ କାଟି ଧ୍ୱଂସ କରିବା ପୋଡ଼ି ପାଉଁଶ କରିବା କେତେଦୂର ଉଚିତ ସେକଥା ପ୍ରତ୍ୟେକ ଚିନ୍ତା କରିବା ଦରକାର । ବୈଦିକଯୁଗ ଓ ଆଧୁନିକ ବିଜ୍ଞାନ ଯୁଗର ପରିବେଶ ମଧ୍ୟରେ କି ଯେ ଆକାଶ ପାତାଳ ପ୍ରଭେଦ ରହିଛି ତାହା କଳ୍ପନାର ବାହାରେ ।

ଭାରତବର୍ଷର ସବୁଠାରୁ ଗୌରବର କଥା ହେଲା ଏହାର ପରମ୍ପରା । ଯାହାକୁ ବେଦଯୁଗରୁ ଆଜି ପର୍ଯ୍ୟନ୍ତ ଅନୁସରଣ କରାଯାଇ ଆସୁଛି । ବେଦ ହେଉଛି ଭାରତୀୟ ସଂସ୍କୃତିର ମୂଳପିଣ୍ଡ, ଯେଉଁଥିରେ ମାନବଜାତିର ସର୍ବଶ୍ରେଷ୍ଠ ତତ୍ତ୍ୱଚିନ୍ତନ ନିହିତ ।

ବେଦର ବାକ୍ୟାନୁଯାୟୀ ମୋତେ ଚତୁର୍ଦ୍ଦିଗରୁ ଉତ୍ତମ ଭାବନା ମିଳୁ । ଯେଉଁ ବେଦ ହୁଏତ କୌଣସି ଗୋଟିଏ ଅରଣ୍ୟ ପରିବେଶରେ ପୂର୍ଣ୍ଣକୁଟୀରରେ ଧ୍ୱନିତ ହେଉଥିଲା, ସେଥିରେ ଏ ପ୍ରକାର ଉନ୍ନତ ଚିନ୍ତା ପ୍ରକାଶ ପାଉଥିଲା । ଆମେ ଆଜି ପରିବେଶ କଥା ଶୁଣୁଛେଁ । କ'ଣ ସେ ପରିବେଶ ? ପରିବେଶ କହିଲେ ମୂଳତଃ ପ୍ରକୃତିଦତ୍ତ ଜଳ, ବାୟୁ, ବୃକ୍ଷଲତା, ନଦୀ, ସମୁଦ୍ର, ଝରଣା, ପାହାଡ଼ ଇତ୍ୟାଦିର ଘେର ଭିତରେ ପଶୁପକ୍ଷୀ, କୀଟପତଙ୍ଗ ପର୍ଯ୍ୟନ୍ତ ସମସ୍ତ ସତ୍ତାର ଏକ ସମନ୍ୱିତ ସମାବେଶକୁ ବୁଝାଏ । ମାତ୍ର ଏ ପରିବେଶକ୍ରମେ ନଷ୍ଟ, ଧ୍ୱଂସ ଏବଂ ଦୂଷିତ ହୋଇଚାଲିଛି ଯାହାଫଳରେ ପ୍ରାକୃତିକ ବିପର୍ଯ୍ୟୟ ଯଥା- ବନ୍ୟା, ବାତ୍ୟା, ଭୂମିକମ୍ପ, ମହାମାରୀ, ମଡ଼କ ଇତ୍ୟାଦି ବିଭୀଷିକା ଦେଖାଦେଇଛି ।

ପ୍ରକୃତିର ସୁରକ୍ଷାକୁ ହିଁ ପରିବେଶ ସନ୍ତୁଳନ କୁହାଯାଏ । ବିନା ବିଚାରରେ ପ୍ରକୃତିଦତ୍ତ ସମ୍ପଦକୁ ନଷ୍ଟ କରିବାର ଅଧିକାର କାହାରି ନାହିଁ । ଅଥଚ ଆଜି ସମସ୍ତେ ନିଜ ନିଜର ସ୍ୱାର୍ଥ ସାଧନ ପାଇଁ ପ୍ରକୃତିଦତ୍ତ ଭଣ୍ଡାରକୁ ଲୁଟିବାରେ ଲାଗିଛନ୍ତି । ଏହାଦ୍ୱାରା ମଣିଷ ସମାଜର ପରିବେଶର ଭାରସାମ୍ୟ ନଷ୍ଟକରି ନିଜେ ନିଜର ଧ୍ୱଂସକୁ ଡାକି ଆଣୁଛି । ମଣିଷ ପାଇଁ ଯେତିକି ଉପଯୋଗୀ ପରିବେଶ ଦରକାର ସେତିକିରେ ସନ୍ତୁଷ୍ଟ ହେବା ଉଚିତ । ବିରାଟ ବିରାଟ ଅଟ୍ଟାଳିକା ନିର୍ମାଣ କରିବାଦ୍ୱାରା ଅନେକ ପରିବେଶ ବିରୋଧୀ କାର୍ଯ୍ୟ କରାଯିବାର ଲକ୍ଷ୍ୟ କରାଯାଏ । କିନ୍ତୁ ତାହାର ପରିଣତି ଭୟାବହ ହୁଏ ।

ସୁତରାଂ ବେଦଯୁଗରେ ଯେମିତି ପରିବେଶ ଅନୁକୂଳ ସଭ୍ୟତାର ବିକାଶ ହୋଇଥିଲା, ସେହିପରି ବର୍ତ୍ତମାନ ବିଜ୍ଞାନ ଯୁଗରେ ହେବା ଉଚିତ । ବିଜ୍ଞାନର ଉପଯୋଗିତା ନାହିଁ ବୋଲି କହିହେବ ନାହିଁ କିନ୍ତୁ ସେଥିପାଇଁ ପ୍ରକୃତିଦତ୍ତ ପରିବେଶକୁ ନଷ୍ଟ କରିବା ଏକ ନିର୍ବୋଧତା । ବିକାଶ ଓ ପରିବେଶ ଉଭୟ ଯେପରି ପରିପୂରକ ହୋଇପାରିବେ ସେଥିପ୍ରତି ଲକ୍ଷ୍ୟ ରଖିବା ଆମର କର୍ତ୍ତବ୍ୟ ହେବା ଉଚିତ ।

ଶିଳ୍ପପ୍ରସାରଦ୍ୱାରା ସଭ୍ୟତାର ପ୍ରସାର ହେବା କଥାଟିକୁ ଅବଶ୍ୟ ଅସ୍ୱୀକାର କରିହେବ ନାହିଁ କିନ୍ତୁ ଗୋଟିଏ ଶିଳ୍ପ ପ୍ରତିଷ୍ଠା ପାଇଁ ହଜାର ହଜାର ବର୍ଷର ପ୍ରକୃତିଦତ୍ତ ପରିବେଶକୁ ନଷ୍ଟ କରିବା ଆଦୌ ଉଚିତ ହେବ ନାହିଁ । ଏଥିପାଇଁ ଦୂରଦୃଷ୍ଟି ଓ ସାବଧାନତା ଆବଶ୍ୟକ ।

ମୁଖ୍ୟ ଚିକିତ୍ସକ
ଓଡ଼ିଶା ଆୟୁର୍ବେଦ ସେବାସଦନ
୧୧୧, ମ୍ୟୁନିସିପାଲିଟି ମାର୍କେଟ
ଓ.ଏମ୍.ପି. ଛକ, କଟକ

# କୋରାପୁଟରେ କଫିଚାଷ

ଅଭୟ ମହାପାତ୍ର

**କୋ**ରାପୁଟ ଜିଲ୍ଲା ସଦର ମହକୁମାରୁ ରାୟଗଡ଼ା ଜିଲ୍ଲା ଆଡ଼କୁ ଗଲାବେଳେ ୨୭ କିଲୋମିଟର ପରେ ଆମେ ଦେଖିବା ଶ୍ରୀ ସୁଜୟ କୁମାର ପ୍ରଧାନଙ୍କ କଫି ବଗିଚା । ସେହି ବଗିଚାରେ ଗୋଟିଏ ଛୋଟ ଘର ଭିତରେ ଏ ଲେଖକ ଦେଖିଲା ଯେ, ୩୨/୩୩ ବର୍ଷର ଜଣେ ଯୁବକ ଚେୟାରରେ ବସି କେତେକ ଫଳରୁ ଚୋପା ଛଡ଼ାଇ କ'ଣ କିଛି ପରୀକ୍ଷାନିରୀକ୍ଷା କରୁଥାଆନ୍ତି । ପଚାରିଲି ବାବୁ, ଏ ଫାରମ୍‌ର ମାଲିକ କିଏ ? ସଂକ୍ଷିପ୍ତ ଉତ୍ତର, 'ଆଜ୍ଞା ! ମୁଁ ।' ଘର ପାଖରେ ଖଣ୍ଡିଏ ସାଣ୍ଟ୍ରୋ କାର୍ ଥାଏ, ମୁଁ ପୁଣି କହିଲି, ଏ କାର୍‌ଟି ବୋଧେ ଆପଣଙ୍କର ? ଉତ୍ତର ଆସିଲା 'କ୍ଷମା କରିବେ, ମୁଁ ଆପଣଙ୍କୁ ଚିହ୍ନି ପାରୁ ନାହିଁ, କାହାକୁ ଖୋଜୁଛନ୍ତି ?



ମୋ ଭୁଲଟା ମୁଁ ବୁଝି ପାରିଲି । ନିଜର ପରିଚୟ ଦେଲି । ତା'ପରେ ସଂଭ୍ରମରସହ ସେ ମୋତେ ବସାଇ ଚର୍ଚ୍ଚା କଲେ । କହିଲେ, 'ଆଜ୍ଞା, ମୁଁ ଗଞ୍ଜାମର କମ୍ୟୁନିଷ୍ଟ ନେତା ସ୍ୱର୍ଗତଃ ଗୋବିନ୍ଦ ପ୍ରଧାନଙ୍କର ନାତି (ଝିଅର ପୁଅ) । ୫୦ ବର୍ଷ ତଳେ ଆପଣ ତାଙ୍କ ବିଷୟରେ ଶୁଣିଥିବେ । ମୁଁ ଏହି ଛୋଟାଗୁଡ଼ା ପୋଡ଼ାଗଡ଼ ଗାଁରେ ଏ ବଗିଚାଟି କରିଛି । ଖଣ୍ଡିଏ କାର୍ ଓ ଖଣ୍ଡିଏ ମଟର୍ ସାଇକେଲ ଅଛି । କୋରାପୁଟ ସହରରେ ରହେ । ଆଜି କାର୍‌ରେ କିଛି ସାର ଓ ଔଷଧ ଆଣିଥିଲି । ଗଲାବେଳକୁ ଏଠୁଁ ଗୋଲମରିଚ, କଫି ଓ ଗୁଜୁରାତି ନେଇଯିବି । ଅଧିକାଂଶ ଦିନ ମଟର ସାଇକେଲରେ ଆସେ । କେତେକ ସମୟରେ ବାହାର ରାଜ୍ୟର ଖରିଦ୍‌ଦାର୍ କିମ୍ବା ଶୁଭେଚ୍ଛୁମାନେ ଆସିଲେ ଗାଡ଼ି ବ୍ୟବହାର କରେ ।'

ମୁଁ ଗଞ୍ଜାମର ଆଗଧାଡ଼ିର ସମାଜବାଦୀ ନେତା ଗୋବିନ୍ଦବାବୁଙ୍କ ସଂପର୍କରେ ଜାଣିଛି । ପଚାରିଲି ଗଞ୍ଜାମ ଲୋକ, ଏଠି କେମିତି ? 'ଆଜ୍ଞା ସିଏ ଲମ୍ବା କଥା, ମୋ' ମାଆ ଆମକୁ ପିଲାଦିନେ ଚାଷୀ ମୂଲିଆଙ୍କ କାହାଣୀ କହନ୍ତି । ରାମାୟଣ, ମହାଭାରତ କଥା କମ୍ କହନ୍ତି, ଏଇ ସାଧାରଣ ଲୋକଙ୍କ କଥା ଶୁଣି ଶୁଣି ମୁଁ ପିଲାଦିନୁ ଭାବିଲି, ସାଧାରଣ ଚାଷୀଟିଏ ହେଲେ କ୍ଷତି କ'ଣ ? ବାପା ଟେଲିଫୋନ୍ ବିଭାଗରେ ଚାକିରି କରୁଥିଲେ । ୧୯୭୬ ମସିହାରେ ଏହି ଜିଲ୍ଲାକୁ ବଦଳି ହେଲା । ମୋର ପିଲାଦିନ ଏହି ଜିଲ୍ଲାରେ କଟିଛି । ତା'ପରେ ସମ୍ବଲପୁର ଗଙ୍ଗାଧର ମେହେର କଲେଜରେ ପଢ଼ି ଅନର୍ସର ସହ ବି.କମ୍ ପାଶ୍ କଲି । ଦିଲ୍ଲୀରେ କଷ୍ଟ ଆକାଉଟାଣ୍ଟାନ୍ସି ପଢ଼ିଲି । ସେଠାରେ ଏକ ସର୍ବଭାରତୀୟ କମ୍ପାନୀରେ ପ୍ରାୟ ୪ ବର୍ଷ ପାଇଁ ଚାକିରି କଲି । କିନ୍ତୁ ମୋର ଚିନ୍ତାଧାରା ଦିଲ୍ଲୀର ସହରୀ ଜୀବନକୁ ନିଜର କରିପାରିଲା ନାହିଁ । ମନ ସବୁବେଳେ କହିଲା ନୀଳକନ୍ଦରକୁ ଫେରିଚାଲ । ବାପାଙ୍କୁ ମୋ' ମନକଥା ଜଣାଇଲି ।

କୋରାପୁଟ ଜିଲ୍ଲାରେ ବୈଦ୍ୟନାଥ ଚୌଧୁରୀ ନାମକ ଜଣେ ବ୍ୟକ୍ତିଙ୍କଠାରୁ ମୋର ବାପା ତାଙ୍କ ସରକାରୀ ଚାକିରିରେ ଥିବାବେଳର ସଂଚିତ ଧନରେ ପନ୍ଦର ଏକର ଜମି କିଣି ଦେଲେ । କଫି ଚାଷ ସଂପର୍କରେ ଅନେକ ବହି ପଢ଼ିଲି । କୋରାପୁଟରେ ମୃତ୍ତିକା ସଂରକ୍ଷଣ ବିଭାଗ ଅଧୀନରେ କଫି ଉନ୍ନୟନ ପାଇଁ ରାଜ୍ୟ ସରକାରଙ୍କର ସ୍ୱତନ୍ତ୍ର ଅଫିସର୍ ଅଛନ୍ତି । କେନ୍ଦ୍ର ସରକାରଙ୍କର କଫି ବୋର୍ଡ଼ ମଧ୍ୟ ଭଲ କଫି ମଞ୍ଜି ଦେଲେ, ଚାଷ ପାଇଁ ଜ୍ଞାନକୌଶଳ

ଯୋଗାଇ ଦେଲେ । ମୋର କମର୍ସ ଓ କଷ୍ଟିଂ ପାଠ ଏହି କୃଷିଭିତ୍ତିକ ବ୍ୟବସାୟ ପାଇଁ ବହୁତ ସାହାଯ୍ୟ କଲା । ମୁଁ ଏବେ ଜଣେ ଭାରତୀୟ ଭାବେ ଗର୍ବ କରେ, କାରଣ ଗଞ୍ଜାମ, କୋରାପୁଟ, ସମ୍ବଲପୁର, ଦିଲ୍ଲୀ, ବାଙ୍ଗାଲୋରଠାରୁ ଆରମ୍ଭ କରି ଭାରତର ବହୁ ଅଞ୍ଚଳ ସହ ମୋର ସଂପର୍କ ଅଛି । ମୁଁ ଯାଜପୁର ଜିଲ୍ଲାରେ ବିବାହ କରିଛି । ସଂକ୍ଷେପରେ କହିଲେ ମୋ' କଫି ଭାରତରୁ ବିଦେଶକୁ ଯାଉଛି ।

ଆମେ ବଗିଚା ବୁଲି ଦେଖିଲୁଁ । ଶହ ଶହ ସିଲ୍‌ଭର୍ ଓକ୍ ଗଛ ଧାଡ଼ି ଧାଡ଼ି ହୋଇ ଠିଆ ହୋଇଛନ୍ତି । କଫି ବଗିଚାରେ ଦିନର କେତେକ ସମୟରେ ଛାଇ ନ ପଡ଼ିଲେ ଭଲ ଫଳ ହେବ ନାହିଁ । ସିଲ୍‌ଭର୍ ଓକ୍ ଶୀତଳ ଜଳବାୟୁରେ ଉଧାଏ । ତେଣୁ ସେ ଗଛ କୋରାପୁଟ ମାଳଭୂମିର ୩ ହଜାର ଫୁଟ ଉଚ୍ଚତାକୁ ଭଲ ପାଇଛି, କାରଣ ଏହି ନିର୍ଦ୍ଦିଷ୍ଟ ଅଞ୍ଚଳରେ ବର୍ଷର ନଅ ମାସ ଗ୍ରୀଷ୍ମ ତାପ ଅତ୍ୟଧିକ ହୁଏ ନାହିଁ । ଉପକୂଳର ସନ୍ତସନ୍ତିଆ ଅଞ୍ଚଳରେ ଫଳ ବେଶି ହେବ ନାହିଁ, କିନ୍ତୁ କଫି ବଗିଚା ମଝିରେ ମଝିରେ ପାଣି ଆବଶ୍ୟକ କରେ । **ବହୁତ ବର୍ଷ ହେବ କେରଳ, ତାମିଲନାଡୁ ଓ କର୍ଣ୍ଣାଟକର ଉଚ୍ଚ ମାଳଭୂମିରେ ଲୋକେ ଅର୍ଥକରୀ ଫସଲ ରୂପେ କଫିଚାଷ କରନ୍ତି । ଏ ଜମିରେ ପୂର୍ବରୁ ମାଣ୍ଡିଆ ଚାଷ ହେଉଥିଲା । ସେତେବେଳେ ମାଣ୍ଡିଆ ବିକି ଯେତିକି ଟଙ୍କା ମିଳୁଥିଲା, ଏବେ କଫି, ଗୁଜୁରାତି ଓ ଗୋଲମରିଚ ବିକ୍ରି କରି ଲୋକେ ଦଶଗୁଣ ଅଧିକ ଟଙ୍କା ପାଉଛନ୍ତି । କଥାରେ ଅଛି, ବୀର ଭୋଗ୍ୟା ବସୁନ୍ଧରା ।**

ଅବଶ୍ୟ ୯୦ ଦିନରେ ମାଣ୍ଡିଆ ଫଳ ହେବ । କଫି ଫଳ ହେବାକୁ ବର୍ଷ ବର୍ଷ ଲାଗିବ । କଫି ବଗିଚାରେ ଟଙ୍କା ଖଟାଇବାକୁ ହେବ । ମାଟିରୁ ଉଇ ବଂଶ ବିନାଶ କରିବାକୁ ହେବ । ମୋର ସୌଭାଗ୍ୟକୁ ଏ ଜମିରେ ଖୁବ୍ କମ୍ ଉଇ ଥିଲେ । ଏହି ଅଞ୍ଚଳର ଲୋକମାନେ ମଧ୍ୟ ମୋ' ସାଙ୍ଗରେ ଭଲ କାମ କରୁଛନ୍ତି । ଏ ମାଟି ଓ ମଣିଷଙ୍କୁ ମୁଁ ଭଲ ପାଇଛି । ମୋର ଶିକ୍ଷା ଓ ଅନୁଭୂତି ଚାଷକୁ ଲାଭଜନକ ବ୍ୟବସାୟରେ ପରିଣତ କରିଛି ।

କଫି ବଗିଚା ଭିତରେ ବୁଲିଲୁଁ । ଅନେକ ସିଲ୍‌ଭର ଓକ୍ ଗଛ କୋରାପୁଟ ଉଚ୍ଚଭୂମିର ଶୀତଳତାରେ ଭଲ ବଢ଼ିଛନ୍ତି । ସେ ଗଛକୁ ଆଶ୍ରା କରି ଗୋଲମରିଚ ଲତା ୩୫ ଫୁଟ ଉଚ୍ଚଯାଏ ଉଠିଯାଇଛି । ପୁଣି ପ୍ରଧାନବାବୁ କହି ଚାଲିଲେ, 'ଆଜ୍ଞା, ଗୁଜୁରାତି ଗଛ ଏଠି ଭଲ ବଢ଼ିବ ବୋଲି ଶୁଣି ପରୀକ୍ଷାମୂଳକ ଭାବେ ଲଗାଇଲି । ଦେଖନ୍ତୁ, କେମିତି ଦଶଫୁଟ ଉଚ୍ଚର ଡଉଲ ଡାଉଲ ଗଛ ହୋଇଛି । ସୂର୍ଯ୍ୟ ଉଦୟଠାରୁ ସୂର୍ଯ୍ୟ ଅସ୍ତଯାଏଁ ମୁଁ ନିଜେ ଏଇ ଗଛ ଲତାମାନଙ୍କ ସେବା କରେ, ଲୋକ ମଧ୍ୟ ଲଗାଇଛି । ନିଜେ ସବୁବେଳେ ତଦାରଖ ନ କଲେ ଗଛମାନେ ସତେ ଯେମିତି ମୋ ଉପରେ ରଷି ଯାଆନ୍ତି । ମୋତେ ଲାଗେ ଝାଉଁଳି ଯାଇଛନ୍ତି । ଆଉ କଫି ଗଛଗୁଡ଼ିକରେ ଯେତେବେଳେ ଫୁଲ ଫୁଟେ, ଏ ବଗିଚାଟା ଖୁବ୍ ସୁନ୍ଦର ଦେଖାଯାଏ । ମୁଁ ଏ ସୌନ୍ଦର୍ଯ୍ୟ ଦେଖି ମୁରୁକି ହସି ଦିଏ, ସେ ମଧ୍ୟ ଏତେ ଦୁଷ୍ଟ ଯେ ମୋ ଆଡ଼କୁ ଅନେଇ ଖିଲି ଖିଲି ହସେ । ସତେ ଯେମିତି କହେ, ତୁମେ ମୋତେ ବଢ଼ାଇଛ, ମୋର ଯତ୍ନ ନେଇଛ, ମୁଁ କୃତଘ୍ନ ନୁହେଁ । ପାଗ ଯୋଗ ଭଲ ହେଲେ ମୁଁ ତୁମ ସ୍ନେହର ପ୍ରତିଦାନ କରିବି । ଅଧେ ଫୁଲରୁ ଫଳ ହେଲେ ଖୁବ୍ ଭଲ । ଶହେଟା ଫଳରୁ ଗୋଟାଏ ଦୁଇଟା ଅଗାଡ଼ି ହେବ ସିନା, ଆଉ ସବୁ ଫଳରୁ ପୁଷ୍ଟ ମଞ୍ଜି ବାହାରିବ ।

ମୁଁ ଦିଲ୍ଲୀ ଛାଡ଼ି କୋରାପୁଟରେ ରହିବାକୁ ଯେଉଁଦିନ ସିଦ୍ଧାନ୍ତ କଲି, ସେତେବେଳେ ଶରୀର ଶ୍ରମ କରିବାକୁ ପ୍ରସ୍ତୁତ ହୋଇଥିଲି । ମୌଳିକ ଭିତ୍ତିଭୂମି ପ୍ରତିଷ୍ଠା ପାଇଁ ଦୁଇବର୍ଷ ଅକ୍ଲାନ୍ତ ପରିଶ୍ରମ କଲି । କଫି ବୋର୍ଡ଼ ମଞ୍ଜିଦେଲେ । ମୁଁ ଚାରା ଉତାରିଲି । ଫଳ ଫଳିବାକୁ ୪/୫ ବର୍ଷ ଲାଗେ । ପାଞ୍ଚ ବର୍ଷ ପରେ ଧୀରେ ଧୀରେ ବଗିଚାଟି ଆମକୁ ପୋଷୁଛି । ଅଧିକରୁ ଅଧିକ ଫସଲ ଆମଦାନୀ ହେଉଛି । ମୋର ଜଣେ ପଡ଼ୋଶୀ ଚାଷୀ ଥରେ ପଚାରିଲେ ଏବେ ସିନା ତୁମେ କଠୋର ପରିଶ୍ରମ କରି ବଗିଚାର ଯତ୍ନ ନେଉଛ, କେଉଁ ବଜାରରେ କେଉଁ ଜିନିଷ ବିକିଲେ ଲାଭ ହେବ, ସେ କଥା ବୁଝୁଛ ? ତୁମକୁ ୬୦/୬୫ ବର୍ଷ ହୋଇଗଲେ ଏ ବଗିଚା କ'ଣ ତୁମକୁ ପେନ୍‌ସନ୍ ଦେବ ? ମୁଁ କହିଲି, ଭାଇ ଏ ସିଲ୍‌ଭର୍ ଓକ୍ ଗଛକୁ ଟିକିଏ ଅନା ! ମୋ ବୁଢ଼ା ବୟସରେ ଶୁଖିଲା ଓକ୍ କାଠ ବିକି ମୁଁ ଖୁସିରେ ଚଳିଯାଇ ପାରିବି । ତା'ଛଡ଼ା ଏବେଠାରୁ ଅତି ସାଧାରଣ ଢଙ୍ଗରେ ଚଳିବାରୁ କିଛି ଟଙ୍କା ବ୍ୟାଙ୍କରେ ସଂଚୟ କରୁଛି । ସେହି ସଞ୍ଚୟ ଟଙ୍କା ଯୋଗୁଁ ବ୍ୟାଙ୍କରେ ମୋର ମାନସମ୍ମାନ ପତିଆରା ବଢ଼ିଛି । ଆଜ୍ଞା, ଲୋକ ଚାକିରି ପଛରେ ଗୋଡ଼ାଇଛନ୍ତି ସିନା, ଯଦି ସାହସୀ ପିଲା ହୋଇଥିବ, ଏ ପ୍ରକାର ଅର୍ଥକରୀ ଫସଲକୁ ଡରିବ ନାହିଁ । ମୁଁ ସେହିକଥା ମୋ ବଗିଚା ପାଖର ଧାନ ଓ ମାଣ୍ଡିଆ ଚାଷୀଙ୍କୁ କହିଲି, ବାରମ୍ବାର ବୁଝାଇଲି । ଆମ୍ଭେମାନେ ସାଙ୍ଗ ହୋଇ କର୍ଣ୍ଣାଟକର ଚିକିମାଗାଲୁର ଅଞ୍ଚଳକୁ

> ଏବେ ରାଜ୍ୟ ସରକାର ଓ କଫିବୋର୍ଡ଼ ପ୍ରାୟ ଚାରିଶହ କ୍ଷୁଦ୍ର ଚାଷୀଙ୍କୁ ଏହି କୋରାପୁଟ ଜିଲ୍ଲାରେ ଜମି ଲିଜ୍ ଦେଇ କଫିଚାଷ ପାଇଁ ଉତ୍ସାହିତ କରିଛନ୍ତି ।

ଯାଇ କଫି ଚାଷୀମାନଙ୍କର ମିଳିତ ଉଦ୍ୟମ ଦେଖିଲୁଁ । କିନ୍ଦିରିଗୁଡ଼ାର ଶାମ ମୁଦୁଲି ଓ ଗଜେନ୍ଦ୍ର ଦାମି ଏ ସବୁ କଥା ଦେଖି ବୁଝି କଫିଚାଷ ଆରମ୍ଭ କଲେ । ଏବେ ରାଜ୍ୟ ସରକାର ଓ କଫିବୋର୍ଡ଼ ପ୍ରାୟ ଚାରିଶହ କ୍ଷୁଦ୍ର ଚାଷୀଙ୍କୁ ଏହି କୋରାପୁଟ ଜିଲ୍ଲାରେ ଜମି ଲିଜ୍ ଦେଇ କଫିଚାଷ ପାଇଁ ଉତ୍ସାହିତ କରିଛନ୍ତି । ଅବଶ୍ୟ ଦରିଦ୍ର ଓ ନାମମାତ୍ର ଚାଷୀମାନେ ଏ ପ୍ରକାର ଚାଷର ବୋଝ ସମ୍ଭାଳିବା କଷ୍ଟ ହେବ । ମୋର କିଛି ସମ୍ବଳ ଥିଲେ ସୁଦ୍ଧା ପ୍ରଥମ ୬ ବର୍ଷ ମୁଁ ମାନସିକ ଓ ଆର୍ଥିକ ଯନ୍ତ୍ରଣା ପାଇଛି । ଆଜି ଆପଣ ଏ ସାଣ୍ଟ୍ରୋ କାର୍ ଦେଖି ମୋତେ ବିଳାସୀ ବୋଲି ଭାବିବେ ନାହିଁ । ପ୍ରଥମ ବର୍ଷ ମଟର ସାଇକେଲ ଖଣ୍ଡିଏ କିଣିବାକୁ ପଇସା ନଥିଲା । ଜମି ଉଠିଆ କରିବାକୁ ହେଲା, ଓକ୍ ଗଛ ଲଗାଇଲି । ଗୋଟିଏ ପଇସାତ ଆୟ ନାହିଁ । ଖର୍ଚ୍ଚ ଚାଲିଛି, ଲୋକଙ୍କ ଟାହିଟାପରା ଚାଲିଛି, ଯିଏ ଦେଖିଲା, ପଚାରିଲା, କଫି ଫଳିଲାଣି ନା, କେବେ ଫଳିବ ? ଜାତୀୟକରଣ ହୋଇଥିବା ଏକ ବ୍ୟାଙ୍କରୁ ଋଣ ନେବାକୁ ବାଧ ହେଲି । ଅବଶ୍ୟ ବାପା ମୋତେ ବହୁ ସାହସ ଦେଇଛନ୍ତି । ଦିଲ୍ଲୀରୁ ଆସିବାଠାରୁ ମୁଁ ବାପା ମାଆଙ୍କ ପାଖରେ ରହୁଛି । କୋରାପୁଟ ସହରରେ ସେମାନେ କିପରି ନିଜ ଇଚ୍ଛା ମୁତାବକ ଚଳିପାରିବେ ତାହା ଦେଖାଚାହାଁ କରୁଛି । ସେହି ଛଅ ବର୍ଷ ଭାବିଲି ଟଙ୍କା ରୋଜଗାର ନହେଲା ନାହିଁ ବାପାମାଆଙ୍କ ବାର୍ଦ୍ଧକ୍ୟରେ ତ ମୁଁ ତାଙ୍କ ସହ ରହିପାରିଛି । ଏହି ବଗିଚା ଛଅ ହେକ୍ଟର ବା ପନ୍ଦର ଏକର ଜମିରେ ହୋଇଛି, ବଗିଚାରେ ପ୍ରାୟ ପାଞ୍ଚହଜାର ସିଲ୍ଭର୍ ଓକ୍ ଗଛ ଅଛି । ମୋର ବଗିଚା ଆପଣ ଦେଖିଲେ ସିନା, ଆମ ଅଞ୍ଚଳରେ ପ୍ରାୟ ୩୫ ଜଣ ମଧ୍ୟମ ଶ୍ରେଣୀର ଚାଷୀ ନିଜ ଜମିରେ କଫି, ଗୋଲ ମରିଚ ଓ ଗୁଜୁରାତି ଲଗାଇଛନ୍ତି । ସମସ୍ତଙ୍କର ପ୍ରାୟ ଦଶ ଏକର ଜମିରେ କଫି ବଗିଚା । ଆହୁରି ଅନେକ ଆଦିବାସୀ ଏହି ୩ ବର୍ଷ ମଧ୍ୟରେ କଫିଚାରା ଲଗାଇଛନ୍ତି, କିନ୍ତୁ ଫଳ ଆସିବା ବେଳ ହୋଇନାହିଁ । ସମସ୍ତେ ମିଶି ଏକ 'କଫି ଚାଷୀ ସଂଘ' କରିଛୁଁ । ସମସ୍ତଙ୍କ ତଥ୍ୟରୁ ଜାଣିଲୁ ଏ ଜିଲ୍ଲାରେ ପ୍ରତିବର୍ଷ ଅନ୍ୟୁନ ଏକକୋଟି ଟଙ୍କାର ଗୋଲମରିଚ ଉତ୍ପାଦନ ହେଉଛି । କଫି ଅମଳ ପରେ ମଞ୍ଜିକୁ ଆମେ କର୍ଣ୍ଣାଟକର ହାସନ୍ ସହରକୁ ପଠାଇ ଦେଉଛୁଁ । ସେଠାରେ ଅତ୍ୟାଧୁନିକ ଯନ୍ତ୍ରରେ ପ୍ରୋସେସିଂ ହୋଇ ପୃଥିବୀ ବଜାରକୁ ଛଡ଼ାଯାଉଛି ।



ଗୋଟିଏ ଏକର ଜମିରେ ପ୍ରାୟ ବାରଶହ କଫି ଗଛ ଲଗାଇଛୁ । ଫେବୃଆରୀ ଦ୍ୱିତୀୟ ସପ୍ତାହରୁ ମାର୍ଚ୍ଚ ତୃତୀୟ ସପ୍ତାହ ଯାଏଁ ଫୁଲ ଫୁଟେ । ଫଳ ଧରିବାର ୯/୧୦ ମାସରେ ଫଳ ସଂଗ୍ରହ କରୁଛୁ । କଫି ବଗିଚାରୁ ନଭେମ୍ବର ତୃତୀୟ ସପ୍ତାହରୁ ଜାନୁଆରୀ ଶେଷ ଯାଏଁ ପର୍ଯ୍ୟାୟକ୍ରମେ ପୁଷ୍ଟ ହେଉଥିବା କଫି ଫଳଗୁଡ଼ିକୁ ସଂଗ୍ରହ କରୁଛୁ । ଏ କାମରେ ମହିଳାମାନେ ଅଧିକ କାମ ପାଇପାରୁଛନ୍ତି । ଅବଶ୍ୟ ଅନ୍ୟ ରାଜ୍ୟ ତୁଳନାରେ ତୋଳାଳୀମାନଙ୍କ ଦକ୍ଷତା କମ୍ ଓ ଆମ୍ଭମାନଙ୍କର ଅଭିଜ୍ଞତା କମ୍ ଥିବାରୁ ନେଟ୍ ଲାଭ ପରିମାଣ କମ୍ ହେଉଛି ।

ଆଜି ଲାଭ କମ୍ ହେଉଛି ବୋଲି ମୁଁ ଏ ଚାଷରୁ ହଟିଯିବି ନାହିଁ । ଆଜ୍ଞା, ମୁଁ ପରା ଗୋବିନ୍ଦ ପ୍ରଧାନଙ୍କ ନାତି ! କଫି ଯେଉଁ ଜଳବାୟୁରେ ଭଲ ଉତ୍ପାଦନ ହୋଇପାରିବ ସେ ଅଞ୍ଚଳର ଚାଷୀମାନଙ୍କୁ ଏକଜୁଟ କରିବି । ଆଗାମୀ ୫୦ ବର୍ଷରେ ପୃଥିବୀ ବଜାରରେ କଫିର ଚାହିଦା କମିବ ନାହିଁ ଏବଂ ଆମେ ଏହି ଚାଷର ଅଭିଜ୍ଞତା ହାସଲ କଲେ ଧାନ ଓ ମାଣ୍ଡିଆଠାରୁ ଅଧିକ ଲାଭ ପାଇବା ଏକଥା ଜଣ ଜଣ କରି ବୁଝାଇବି, ମୋ ବଗିଚା ଦେଖାଇବି । ଯଦି ଦଶ ହଜାର ଏକରରୁ ଅଧିକ ଜମିରେ କଫି ଚାଷ ହୋଇପାରିବ ତେବେ ଓଡ଼ିଶାରେ ପ୍ରୋସେସିଂ ୟୁନିଟ୍ କରାଇବୁ । କନ୍ଧମାଳ ହଳଦୀ ପରି ଗୋଟିଏ ଭଲ ବ୍ରାଣ୍ଡ ନେମ୍ ବାଛିବୁ । ଅନ୍ୟ ରାଜ୍ୟ ସହ ପ୍ରତିଯୋଗିତା କରିବୁ । ମୋ ଅଜା ଚାଷୀ ମୂଲିଆଙ୍କ ପାଇଁ ଜୀବନସାରା କାମ କଲେ, ଉତ୍ତରପ୍ରଦେଶର ଆଖୁ ଓ ସୋରିଷ ଚାଷୀ ତଥା ମହାରାଷ୍ଟ୍ରର ପିଆଜ ଚାଷୀଙ୍କଠାରୁ ଅନେକ କଥା ଶିଖିଛି ।' କଫି ବଗିଚା ବୁଲି ଆମେ ଦୁଇଜଣ ତାଙ୍କ ବିଶ୍ରାମ ଗୃହକୁ ଫେରିଆସିଲୁ । ସେଠାରେ ସେ ଜାତିଆ ଗାଈ ଦୁଇଟି ରଖିଛନ୍ତି । ଖାଣ୍ଟି କ୍ଷୀରରେ ତାଙ୍କରି ବଗିଚାର କଫି ଖାଇ ତାଙ୍କରି କାର୍‌ରେ କୋରାପୁଟ ସହରକୁ ଆସିଲି ।

କଫି ଓ ମସଲା ଚାଷର ଉଜ୍ଜ୍ୱଳ ଦିଗଟି ଦେଖିଲା ପରେ ଖରାପ ଦିଗଟିକୁ ଦେଖିବାକୁ ଚେଷ୍ଟା କଲି । କୋରାପୁଟ ଉଚ୍ଚ ମାଳଭୂମିରେ ଅଣ ଆଦିବାସୀଙ୍କର ହଜାର ହଜାର ଏକ ନିଗିଡ଼ା ଜମି ଅଛି । ସେହିପରି ନୂଆ ମଧମ ଧରଣର ଚାଷୀମାନେ କଫି ଉଦ୍ୟାନ କରୁଛନ୍ତି । ଏ ସଂପର୍କରେ ମୁଁ ଅଧିକ ଜାଣିବାକୁ ମୃତ୍ତିକା ସଂରକ୍ଷଣ ବିଭାଗର ଉପନିର୍ଦ୍ଦେଶକ ଶ୍ରୀ ଗୋପୀନାଥ ବେହେରାଙ୍କୁ ଭେଟିଲି । କୋରାପୁଟ ଜିଲ୍ଲାର ୧୦,୦୦୦ ହେକ୍ଟର ପରିମିତ ଅଞ୍ଚଳ କଫି ଚାଷ ପାଇଁ ଉପଯୁକ୍ତ । ଭାରତ ସରକାରଙ୍କ କଫି ବୋର୍ଡ଼ ସର୍ଭେ କରି ଓଡ଼ିଶା ସରକାରଙ୍କୁ ପ୍ରସ୍ତାବ ଦେବା ପରେ ୨୦୦୨ ମସିହାରୁ ଆ.ଇ.ଟି.ଡି.ଏ. ମୃତ୍ତିକା ସଂରକ୍ଷଣ ବିଭାଗଦ୍ୱାରା କଫି ଚାଷ ଆରମ୍ଭ କଲେ । ଯେଉଁ ଗରିବ ଆଦିବାସୀ ଓ ହରିଜନ କଫି ଚାଷ କରିବାକୁ ଆଗ୍ରହ କଲେ ସେମାନଙ୍କୁ ସରକାର ଜମି ଉପରେ ଫଳଭୋଗ ସ୍ୱତ୍ୱ ଦେଲେ । ଶତାଧିକ ଚାଷୀ ଏକ ଏକରରୁ ଦୁଇ ଏକର ଜମିର ଫଳଭୋଗ ଅଧିକାର ପାଇଲେ । କଫି ଗଛ ଦିନର ସବୁ ସମୟରେ ସୂର୍ଯ୍ୟକିରଣ ଆବଶ୍ୟକ କରେ ନାହିଁ । ତେଣୁ କଫି ବଗିଚାରେ ଅନେକ ଛାୟାପ୍ରଦ ବୃକ୍ଷରୋପଣ କରିବାକୁ ପଡ଼େ । ଏ ସବୁ ସିଲ୍‌ଭର୍ ଓକ୍, କଫି, ଗୁଜୁରାତି ଓ ଗୋଲମରିଚ ଗଛ ଉଚ୍ଚ ମାଳଭୂମିର ମୃତ୍ତିକା କ୍ଷୟକୁ କମାଇଦିଏ । ଗଛଗୁଡ଼ିକର ଚେର ମାଟିର ଉପରସ୍ତରକୁ ଜାବୋଡ଼ି ଧରେ । ମୁଁ ଚିନ୍ତାକଲି ଅବିଭକ୍ତ କୋରାପୁଟ, କନ୍ଧମାଳ ଓ ଗଜପତି ଜିଲ୍ଲାର ଉଚ୍ଚ ଶୀତଳ ମାଳଭୂମିରେ ଚନ୍ଦନ, ରକ୍ତ ଚନ୍ଦନ ଓ ଉପରୋକ୍ତ ବୃକ୍ଷଲତାଦିର ବଗିଚା ସୃଷ୍ଟି କରିପାରିଲେ ଆମେ ସ୍ଥାନୀୟ ଆଦିବାସୀ ଓ ହରିଜନଙ୍କର ଚଳଣି ବଦଳାଇ ପାରିବା । ପଶ୍ଚିମଘାଟ ପର୍ବତମାଳାରେ ଏ ପ୍ରକାର କୃଷି ବିପ୍ଳବ ଶହେବର୍ଷ ତଳେ ଆରମ୍ଭ ହୋଇଥିଲା ବୋଲି ସେଠାକାର ପୁରୁଣା ବାସିନ୍ଦା ଆଜି ଲାଭ ପାଉଛନ୍ତି । ଲୋକମାନଙ୍କଠାରୁ ଜଣାପଡ଼ିଲା ଯେ ୨୦୦୨ ମସିହାରେ ସରକାର ଯୋଜନାଟି ଆରମ୍ଭ କଲାବେଳେ ଯେତେ ତତ୍ପର ଥିଲେ, ଯେତେ ଅର୍ଥ ବରାଦ କରିଥିଲେ ସେ ସବୁ ଧୀରେ ଧୀରେ କମି ଯାଉଛି ।



ପୃଥିବୀର ପରିବେଶ ଖରାପ ହୋଇଯାଉଛି ବୋଲି ସମସ୍ତେ ଚହଳ ପକାଉଛନ୍ତି । ଆଦିବାସୀଙ୍କ ଦାରିଦ୍ର୍ୟରୁ ହିଂସାବାଦୀମାନେ ଫାଇଦା ଉଠାଉଛନ୍ତି । ପୃଥିବୀର ଅଧିକାଂଶ ରାଷ୍ଟ୍ରରେ ଅବିଚାରିତ ଜଙ୍ଗଲ କଟା ଚାଲିଛି । ଯେଉଁମାନେ ପୃଥିବୀର ଜଳବାୟୁକୁ ଦୂଷିତ କରୁଛନ୍ତି, ସେମାନଙ୍କ ପ୍ରଦତ୍ତ ଅର୍ଥରେ ଓଡ଼ିଶାର ଆଦିବାସୀମାନେ ଉପରୋକ୍ତ ବଗିଚା ସବୁ ବଢ଼ାଇପାରିବେ । ଭାରତ ସରକାର ଓ ଆମ ରାଜ୍ୟ ସରକାର ଏ ବିଷୟକୁ ବିଚାର କରିପାରନ୍ତି ।

**୨୦୧୨ ମସିହା ପର୍ଯ୍ୟନ୍ତ ରାଜ୍ୟ ସରକାର କୋରାପୁଟ ଜିଲ୍ଲାପରିଷଦ ମାଧ୍ୟମରେ ଏକ କ୍ରମବର୍ଦ୍ଧମାନ କଫି ଚାଷ କାର୍ଯ୍ୟକ୍ରମ ଚାଲୁ ରଖିଛନ୍ତି । ନନ୍ଦପୁର, ଶିମିଳିଗୁଡ଼ା, ପଟାଙ୍ଗୀ, ଲକ୍ଷ୍ମୀପୁର, ଦଶମନ୍ତପୁର, ଲମତାପୁଟ ଓ କୋରାପୁଟ ବ୍ଲକ୍‌ମାନଙ୍କରେ ଏ ପ୍ରକାର ସରକାରୀ ଜମିରେ ଯୌଥ ଉଦ୍ୟମରେ ବଗିଚା ହୋଇସାରିଛି ।** ଏବେ ଭବିଷ୍ୟତ ଚିନ୍ତା । ଚିନ୍ତାଶୀଳ ଲୋକେ କହନ୍ତି ଖଣି ଖୋଳାଯାଉ, ଶିଳ୍ପ କାରଖାନା ହେଉ, କିନ୍ତୁ ଜଙ୍ଗଲ ଅଞ୍ଚଳ ନ କମୁ । ପ୍ରତ୍ୟେକ ବିନ୍ଦୁ ବର୍ଷା ପାଣିକୁ ଜୀବଜଗତର ହିତରେ ଲଗାଯାଉ । ପାହାଡ଼ ତ ସବୁ ଲଣ୍ଡା ହୋଇଗଲେଣି, ଏହା କେବଳ ୧୯୪୭ ମସିହା ପରର ଦୁଷ୍କୃତିର ଫଳ ନୁହେଁ । ବହୁ ପାଶ୍ଚାତ୍ୟ ରାଷ୍ଟ୍ର ବାମଣ୍ଡା ବଣେଇଠାରୁ ଜୟପୁର ଜଙ୍ଗଲ ଯାଏଁ ଲକ୍ଷ ଲକ୍ଷ ଶାଳଗଛ କାଟି ନିଜ ହିତ ପାଇଁ ନେଲେ । ପାଣି ଜାହାଜ ତିଆରି କଲେ । ଏବେ ଆମ ଲଣ୍ଡା ପାହାଡ଼କୁ ସବୁଜଶ୍ରୀ ଦେବା ତାଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ । ଯେଉଁ ବହୁ ରାଷ୍ଟ୍ରୀୟ ସମ୍ମିଳନୀରେ ପରିବେଶ ସୁରକ୍ଷା ବିଷୟ ଆଲୋଚନା ହେଉଛି, ସେଠାରେ ଭାରତ ପକ୍ଷରୁ ଗତ ୩ ଶହ ବର୍ଷର ଭାରତୀୟ ଜଙ୍ଗଲ ନଷ୍ଟର ଇତିହାସ ଦର୍ଶାଇବା କଥା । ବେଶୀ ଜଙ୍ଗଲ ରଖିଲେ କୃଷି ଓ ଶିଳ୍ପ ପାଇଁ ଜମି କମ୍ ରହିବ, ସେତେବେଳେ ଆମେ ଶିଳ୍ପୋନ୍ନତ ରାଷ୍ଟ୍ରମାନଙ୍କ ସହ ପ୍ରତିଯୋଗିତା କରିପାରିବା ନାହିଁ ।

ଶ୍ରୀ ସୁଜୟ ପ୍ରଧାନ ଏତେ ବଡ଼ ହିସାବ କିତାବରେ ମୁଣ୍ଡ ପୂରାନ୍ତି ନାହିଁ । ପ୍ରାଚୀନ ଭାରତୀୟ ପରମ୍ପରା ଅନୁସାରେ ବୃଦ୍ଧ

ପିତାମାତାଙ୍କ ନିକଟରେ ରହିବାକୁ ହେବ, ସ୍ତ୍ରୀ ପିଲାଙ୍କ ଆଧୁନିକତା ସହ ଖାପଖୁଆଇବାକୁ ହେବ । ଅଜା ଗୋବିନ୍ଦ ପ୍ରଧାନଙ୍କର ସମାଜବାଦୀ ଚିନ୍ତାଧାରା ଓ କାର୍ଯ୍ୟକ୍ରମକୁ ଆଗେଇ ନେବାକୁ ହେବ, ଏହି ତିନୋଟି ବିଷୟକୁ ସେ ଅଗ୍ରାଧିକାର ଦେଇଛନ୍ତି । ତାଙ୍କ ପିଲାମାନେ ଆଗାମୀ ଯୁଗରେ କେମିତି ଆଗଧାଡ଼ି ମଣିଷ ଭାବେ ଚଳିବେ, ସେ ସ୍ୱପ୍ନ ଦେଖିବା ଖରାପ କଥା ନୁହେଁ, ଅତି ଭଲ କଥା । କଫି ବଗିଚା ଓ ସର୍ବାଧୁନିକ ବିଜ୍ଞାନ ଶିକ୍ଷା ମଧ୍ୟରେ ସମନ୍ୱୟ ଆଣିବାକୁ ହେବ । କମ୍ପ୍ୟୁଟର, ନେଟ୍, ବଡ଼ ପରଦା ସି.ଡି. ମେସିନ୍ ସହ ପିଲାଏ ଗତାଗତ ହେଲେ ନିଜ ଭବିଷ୍ୟତ ନିଜେ ବାଛିବେ ।

ପରଦିନ ସକାଳେ କୋରାପୁଟ ସହରର ଏକ ଦିବ୍ୟ ନିକାଞ୍ଚନ ସ୍ଥାନରେ ପ୍ରଧାନବାବୁଙ୍କୁ ମୋର ଦୃଷ୍ଟିଭଙ୍ଗୀ ବିଷୟରେ କହିଲି । ବାଡ଼ିପଟରେ ଚାଷ କରିବ, ଦାଣ୍ଡପଟରେ ହାଟ ବସାଇବ । କର୍ଣ୍ଣାଟକ ବଜାର ଉପରେ ନିର୍ଭର କରିବ ନାହିଁ । ତୁମେ ତ କାଲି କହୁଥିଲ କଫି ଫୁଲଗୁଡ଼ିକ ତୁମକୁ ଦିନେ ନ ଦେଖିଲେ ଝାଉଁଳି ପଡ଼ନ୍ତି, ତୁମ ଉପରେ ଅଭିମାନ କରନ୍ତି । ତେବେ ତୁମେ ଉତ୍ତର ଦିଅ ବସ ! ବର୍ଷକ ୩୬୫ ଦିନରୁ କେତେ ଦିନ ତୁମ ବଗିଚା ଘରୁ ଦୂରରେ ରହୁଛ ? ରାମାୟଣରେ ଲେଖାଅଛି ବାଲ୍ମିକୀଙ୍କ ଆଶ୍ରମରେ ସୀତାଙ୍କୁ ଗଛଲତାଙ୍କ ସହ ସମୟ କଟାଇବାକୁ ଓ ମାଠିଆରେ ପାଣିଆଣି ଛୋଟ ଗଛମୂଳେ ପାଣି ଦେବାକୁ କୁହାଯାଇଥିଲା ।

ଆଶ୍ରମର ତରୁଣ ତରୁ ନିକଟରେ
ଯତନେ ବଢ଼ାଇଣ ଘଟ ଜଳରେ
ନିରେଖିବା ଆଗରୁ ତନୟ ମୁଖ
ଲଭିବୁ ତନୟର ପାଳନ ସୁଖ ।

ଟିକିଏ ଲଘୁହାସ୍ୟ କରି କହିଲି, ପ୍ରଥମେ ତୁମକୁ ମଙ୍ଗଳ ମହାଦଶା ପଡ଼ିଥିଲା, ଜମି ସାଙ୍ଗରେ ଶ୍ରମିକ ହୋଇ ଖଟିଲ, ତା'ପରେ ବୃହସ୍ପତି ମହାଦଶା ହେଲା, କଫି ବିଷୟରେ ଜ୍ଞାନ ହେଲା । କିଛି ଟଙ୍କା ମଧ୍ୟ ପାଇଲ । ତା'ପରେ ନିଶ୍ଚେ ଶନି ଓ ରାହୁ ମହାଦଶା ଆସିବ । ଶନି ମହାଦଶାରେ ତ୍ୟାଗ ଓ ତପସ୍ୟା କଲେ ଶନି ସନ୍ତୁଷ୍ଟ ହୋଇ ଭଲ ବର ଦେବେ । ତୁମେ ତ କଷ୍ଟ୍ ଆକାଉଣ୍ଟାଣ୍ଟ, ଯେତେବେଳେ ଡେପ୍ରିସିଏସନ୍ ଆରମ୍ଭ ହେବ, କ୍ଷେତ ମାଗିବ ଟଙ୍କା । ବଗିଚା ଘର ମରାମତି ହେବ, ମୂଳମଜୁରୀ ବଢ଼ିବ ।

ଶ୍ରମିକମାନଙ୍କର କଲ୍ୟାଣ ପାଇଁ ଟଙ୍କା ଦରକାର ହେବ । ମଣିଷ ଦେହରେ ଯେମିତି ଶୈଶବ, କୈଶୋର, ଯୌବନ, ଜରା ଓ ମୃତ୍ୟୁ ଆସୁଛି, ସେହିପରି ଏ ବଗିଚାର ଏବେ ଯୌବନ କାଳ ଚାଲିଛି । ଆଉ ଦଶ ବର୍ଷ ଗଲେ ନୂଆ ଚାରା ବର୍ଷକୁ ବର୍ଷ ଲଗାଇବାକୁ ହେବ, ବଗିଚା କହିବ, ମୋତେ ଚିର ଯୁବତୀ କରି ରଖ । ନହେଲେ ମୁଁ ଫଳ କିପରି ଉପୁଜାଇ ପାରିବି ? ତୁମେ ଯାହା ପ୍ରଥମରୁ କହିଲ ତୁମ ବଗିଚାର ଗଛଲତାଗୁଡ଼ିକ ତୁମକୁ ଦିନେ ନ ଦେଖିଲେ ଝାଉଁଳି ପଡ଼ିବେ । ତୁମେ ସ୍ୱାଧୀନ ଭାବରେ ଚାଷ କରୁଛ, ସେହି ସ୍ୱାଧୀନତା ରକ୍ଷା ପାଇଁ ତୁମକୁ ସର୍ବଦା ସଜାଗ ରହିବାକୁ ହେବ । ତୁମେ ଓ ତୁମର ଶ୍ରମିକମାନେ ମିଶି ଅଧିକ କଫି, ଗୋଲମରିଚ ଓ ଗୁଜୁରାତି ଅମଳ କଲେ ତୁମେ ତ ଭଲରେ ରହିବ, ଦେଶର ଡଲାର୍ ରିଜର୍ଭ ମଧ୍ୟ ବଢ଼ିବ, କାରଣ ଭାରତ ବାହାରେ ଶୀତପ୍ରଧାନ ଧନୀ ଦେଶମାନଙ୍କରେ ଏସବୁର ଚାହିଦା ବଢୁଛି । ଆଦିବାସୀ ଶ୍ରମିକ ଓ ଚାଷୀମାନଙ୍କୁ କଫି ଚାଷ ଶିଖାଉଛ, ତାଙ୍କ ଜମି କିମ୍ବା ସରକାର ଦେଉଥିବା ଜମିରେ ସେ ପ୍ରକାର ଚାଷ କରିବାକୁ ଉତ୍ସାହିତ କରୁଛ, ସେଥିପାଇଁ ମୁଁ ତୁମକୁ ଧନ୍ୟବାଦ ଦେଉଛି । ଯେଉଁମାନେ ଏ ଦେଶର ମୂଳ ଲୋକ, ସେହି ଆଦିବାସୀଙ୍କ ମଙ୍ଗଳ ପାଇଁ ଏହି କଫିଚାଷ ମାଧ୍ୟମରେ କାମ କର । ତୁମର ଅଜା ଗୋବିନ୍ଦ ପ୍ରଧାନ ଦୀର୍ଘ ଦିନ ସେହିକାମ କରିଥିଲେ । ତାଙ୍କ ସ୍ୱପ୍ନରେ ଥିବା ସମାଜବାଦକୁ ତୁମେ ସାକାର କର । ତୁମର ବାପା, ମାଆ ଓ ସ୍ତ୍ରୀ ତୁମକୁ ଏ କାମରେ ସାହାଯ୍ୟ କରନ୍ତୁ । କୋରାପୁଟରେ କଫି ଚାଷ ଲାଭଜନକ ହେଉ ।

ପୂର୍ବତନ ଅତିରିକ୍ତ ନିର୍ଦ୍ଦେଶକ
ସୂଚନା ଓ ଲୋକ ସଂପର୍କ ବିଭାଗ
ତଳତେଲେଙ୍ଗା ବଜାର
କଟକ-୭୫୩୦୦୯

■ ■ ■ ■ ■

# ଓଡ଼ିଶାରେ ଲୋକନୃତ୍ୟ, ଲୋକସଂଗୀତ ଓ ଲୋକବାଦ୍ୟ ପରମ୍ପରା

ଦାମୋଦର ପାଢ଼ୀ

**ଆ**ବାହମାନ କାଳରୁ ସାମାଜିକ ଜୀବନରେ ଲୋକନୃତ୍ୟ, ଲୋକସଂଗୀତ ଓ ଲୋକବାଦ୍ୟ ସଦାସର୍ବଦା ବିଶେଷ ଭୂମିକା ନେଇ ଆସିଛି । ଜୀବନ ବିଶେଷକରି ଦୈନନ୍ଦିନ ଜୀବନର ବ୍ୟସ୍ତତା ମଧ୍ୟରେ କିଛି ଆନନ୍ଦ ଓ କିଛି ସାମାଜିକ ତୁଷ୍ଟି ନିମନ୍ତେ ସନ୍ଧ୍ୟାରେ ଗ୍ରାମ ଦାଣ୍ଡରେ, କୋଠାଘରେ କିମ୍ବା ଭାଗବତ ଟୁଙ୍ଗୀରେ ଦାସକାଠୀ, ସଖି ନାଟ, ଘୁଡୁକି, ପାଲା ବିଭିନ୍ନ ଲୀଳା ପରିବେଷଣ କରାଯାଉଛି । ଏହା ଆଜିର ସାମାଜିକ ଜୀବନରେ କ୍ରମଶଃ ପ୍ରଭାବହୀନ ହୋଇଯାଉଛି । ଏହାଦ୍ୱାରା ଆମ୍ଭର ସାମାଜିକ ଜୀବନରେ କ୍ରମଶଃ ଅପୂରଣୀୟ କ୍ଷତି ହେବାକୁ ଯାଉଛି । ଆଗାମୀ ବଂଶଧରମାନେ ଏହାର ସୁପ୍ରଭାବ ଅନୁଭବ କରିବାକୁ ହେଲେ ଆମ୍ଭମାନଙ୍କୁ ସାମାଜିକ ଦାୟିତ୍ୱ ତୁଲାଇବାକୁ ପଡ଼ିବ । ସିନେମା ଟି.ଭି. ଇଣ୍ଟରନେଟ୍‌ରେ ଆଜିକାଲି ମନୋରଞ୍ଜନର ବ୍ୟବସ୍ଥା ହୋଇଥିଲେ ମଧ୍ୟ ସାମାଜିକ ଜୀବନରେ ଜୀବନ୍ତ ଦୃଶ୍ୟର ଅଭାବ ଉପଲବ୍ଧ ହେଉଛି । ଏଣୁ ସାମାଜିକ ସ୍ତରରେ ପ୍ରତ୍ୟେକ ସଚେତନ ବ୍ୟକ୍ତିବିଶେଷ ଆମର ମୌଳିକ ସଂସ୍କୃତି ଓ କଳାକୁ ସୁରକ୍ଷିତ ରଖିବାକୁ ଆଗେଇ ଆସିବା ନିତାନ୍ତ ଆବଶ୍ୟକ ।

ଗଞ୍ଜାମ ଜିଲ୍ଲାର ମୌଳିକ ନୃତ୍ୟାନୁଷ୍ଠାନରୂପେ ଦାସକାଠୀ ସୁପରିଚିତ । ଜିଲ୍ଲାର ଅନ୍ୟ ଲୋକନୃତ୍ୟ ମଧ୍ୟରେ ଦାସକାଠୀ ନୃତ୍ୟ ତାହାର ସ୍ୱତନ୍ତ୍ରତା ବଜାୟ ରଖିଛି । ଗଞ୍ଜାମ ଜିଲ୍ଲା ଲୋକଙ୍କର କହିବା ଢଙ୍ଗ, ଉଚ୍ଚାରଣ, ଗାଇବା ଭଙ୍ଗୀ, ଅନ୍ୟ ଜିଲ୍ଲାର କଳାକାରଙ୍କର ଅପେକ୍ଷା ଭଲ ଶୁଣାଯାଏ । ଗଞ୍ଜାମ ଜିଲ୍ଲା ହେଉଛି ବିଭିନ୍ନ ଲୀଳାର ମାଟି । ରାଧା ପ୍ରେମଲୀଳା, କୃଷ୍ଣଲୀଳା, ରାମଲୀଳା, ଭାରତଲୀଳା, ପ୍ରହଲ୍ଲାଦ ନାଟକ ପ୍ରମୁଖ ଏହି ଗଞ୍ଜାମ ଜିଲ୍ଲାର ମାଟିର ନିଜସ୍ୱ ଲୋକନୃତ୍ୟ ଓ ସଙ୍ଗୀତ । ରଙ୍ଗମଞ୍ଚ କଳାକାରଙ୍କର ପୀଠସ୍ଥଳୀ ଏହି ଗଞ୍ଜାମ ମାଟି । ଧନରତ୍ନ, ଶସ୍ୟଭଣ୍ଡାରର ମାଟି ଗଞ୍ଜାମ । ପ୍ରାତଃ ସ୍ମରଣୀୟ ପଦ୍ମଶ୍ରୀ ସ୍ୱର୍ଗତଃ ଭଗବାନ ସାହୁ ଏହି ଅଞ୍ଚଳର ଗର୍ବ ଓ ଗୌରବ । ଆଜି ଯୋଡ଼ିଶଂଖ, ରଣପା ଓ ଲହଡ଼ୀକୁ ଆନ୍ତର୍ଜାତିକ ସ୍ତରରେ ପହଞ୍ଚାଇ ସ୍ୱର୍ଗତଃ ସାହୁ ଅମର ହୋଇଯାଇଛନ୍ତି । ଦାସକାଠୀ ନୃତ୍ୟର ମାଇଲଖୁଣ୍ଟ ଓ ଉଜ୍ଜ୍ୱଳତାରକା ରୂପେ ଅମର ପୁରୁଷ ହିଞ୍ଜିଳି ନିକଟସ୍ଥ ଖଣ୍ଡରା ଗ୍ରାମର ଦାସକାଠୀ ଗାୟକ ସ୍ୱର୍ଗତଃ କୃଷ୍ଣଚନ୍ଦ୍ର ସାହୁ (ଗାୟକ ରତ୍ନ), ଛତ୍ରପୁର ବ୍ଲକ୍ ଅନ୍ତର୍ଗତ ନଗରଢିଅର ଗାୟକ ରତ୍ନ ସ୍ୱର୍ଗତଃ ବୈଦ୍ୟନାଥ ଶର୍ମା ଓ ଭୀମସେନ ଶତପଥୀ (ଗାୟକ ରତ୍ନ) ଏହାକୁ ବିଶ୍ୱପ୍ରସିଦ୍ଧ କରି ଜାତୀୟ ସ୍ତରରେ ସ୍ୱତନ୍ତ୍ର ମାନ୍ୟତା ସୃଷ୍ଟି କରିପାରିଛନ୍ତି ।

ଏବେ ନିଖିଳ ଉତ୍କଳ ଦାସକାଠୀ ଗାୟକ ନୃତ୍ୟ ପରିଷଦ ଆନୁକୂଲ୍ୟରେ ଓଡ଼ିଶାର ବିଭିନ୍ନ ଜିଲ୍ଲାର ଦାସକାଠୀ ଦଳ ଏକାଠି ହୋଇ ଦାସକାଠୀ କଳାକୁ ସୁରକ୍ଷିତ ରଖିବା ପାଇଁ ପ୍ରଚେଷ୍ଟା କରି ଚାଲିଛନ୍ତି ।

ଦାସକାଠୀ ନୃତ୍ୟର ମୁଖ୍ୟ ଆକର୍ଷଣ କାଠି ଚାଳନା, ଯାହା ତାଳ, ଲୟ, ଢଙ୍ଗ ଉପରେ ସଂପୂର୍ଣ୍ଣ ନିର୍ଭର କରୁଛି । ପାଲାପରି ଏହା ମଧ୍ୟ ଏକ ବିଦଗ୍ଧକଳା । ଗଞ୍ଜାମ ଏକାନ୍ତ ମୌଳିକ ଓ ପ୍ରତିଷ୍ଠିତ ଲୋକପ୍ରିୟ କଳାର ସାଂପ୍ରତିକ ସ୍ଥିତିକୁ ବିଚାରକରି ସମଗ୍ର ଓଡ଼ିଶାର ବିଭିନ୍ନ ଜିଲ୍ଲାରେ ଏହାର ପ୍ରସାରଣ କରି ଦାସକାଠୀକୁ ଅକ୍ଷୁଣ୍ଣ ରଖିବାକୁ ନିଖିଳ ଉତ୍କଳ ଦାସକାଠୀ ଓ ନୃତ୍ୟ ସଂଗଠନର ଅଧିବେଶନ ସଂଘର ସଭାପତି ଶ୍ରୀ ଉପେନ୍ଦ୍ର ପାଣିଗ୍ରାହୀ ଓ ସମ୍ପାଦକ ଶ୍ରୀ ରାମହରି ପାଢ଼ୀଙ୍କ ନେତୃତ୍ୱରେ ବ୍ରହ୍ମପୁର ନିକଟସ୍ଥ ଆମ୍ବପୁଆ ଗ୍ରାମରେ ଗତ ନଭେମ୍ବର ମାସରେ ବସିଥିଲା । ଦାସକାଠୀ ନୃତ୍ୟର କଳାକାର, ଗାୟକ ଓ ପାଳିଆ ଉଭୟଙ୍କର ଚେହେରା ଯେପରି ଆକର୍ଷଣୀୟ ହେବା ଆବଶ୍ୟକ, ସେହିପରି ଉଭୟଙ୍କର ସାହିତ୍ୟ, ସଂସ୍କୃତି ଓ କଳା ଜ୍ଞାନ ରହିବା ନିତାନ୍ତ ଆବଶ୍ୟକ । 'ସାମଗ୍ରିକ ବ୍ୟକ୍ତିତ୍ୱ ଓ ଉପଯୁକ୍ତ ପୋଷାକ, ବେଶ

ପରିପାଟୀ କଳାକୁ ମନୋଜ୍ଞ କରିଥାଏ । ଲୋକମାନଙ୍କୁ ଆକର୍ଷଣ କରି ରଖିବାରେ ସଫଳ ଗାୟକ ଓ ପାଳିଆର ବ୍ୟକ୍ତିତ୍ୱ ନିର୍ଭର କରୁଛି । ଏହି କଳାକାରମାନଙ୍କୁ ଦେଖି ଦେଖି ଦର୍ଶକମାନଙ୍କର ଆଗ୍ରହ ଜନ୍ମିବା ସ୍ୱାଭାବିକ । ପୁରାଣ ସାହିତ୍ୟ ଜ୍ଞାନ ସହିତ ମଧ୍ୟଯୁଗୀୟ ସାହିତ୍ୟ ନୁହେଁ ଆଧୁନିକ କାଳର ଲେଖକମାନଙ୍କର କୃତି ସମ୍ପର୍କରେ ସେମାନଙ୍କର ଜ୍ଞାନ ରହିବା ଆବଶ୍ୟକ । ଦାସକାଠୀକୁ ସମାଜର ସମସ୍ୟା ସହ ଯୋଡ଼ି ରଖିପାରିଲେ ସାମାଜିକ ସଂସ୍କାରରେ ତାହା ମୁଖ୍ୟ ଭୂମିକା ନେଇପାରିବ । ଏହି ପାରିମ୍ପରିକ ଲୋକନୃତ୍ୟକୁ ବିକୃତ ନକରି ଏହାକୁ ସଫଳ ଭାବେ ଅକ୍ଷୁଣ୍ଣ ରଖିବାକୁ ଓ ଏହାର ମୌଳିକତା ବଜାୟ ରଖିବାକୁ ଦାସକାଠୀ ନୃତ୍ୟର ପୂଜାରୀ, କଳାକାରମାନେ ଉଭୟ ଗାୟକ ଓ ପାଳିଆ ସଚେତନ ରହିବା ଆବଶ୍ୟକ । ଏହାର ମୌଳିକତାକୁ ଅକ୍ଷୁଣ୍ଣ ନରଖି କେତେକ ଦାସକାଠୀ ଦଳ, ପଦପଦରେ ଇଂରାଜୀ ଶବ୍ଦ ରାଶି ଭରି ଦେଉଛନ୍ତି । ଫଳରେ ଗ୍ରାମାଞ୍ଚଳର ଦାସକାଠୀ କଳାପ୍ରେମୀକୁ ରଚିହୀନ ଲାଗୁଛି ଓ ସେମାନଙ୍କର ମାନସିକତାରେ କଳାପ୍ରତି ଶକ୍ତ ଆଘାତ ଲାଗୁଛି । ସାହିତ୍ୟର ସମନ୍ୱୟ ପାଇଁ ଉଭୟ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ମଧ କବିମାନଙ୍କର କୃତି ସହିତ ସମ୍ୟକ୍ ପରିଚୟ ରହିବା ନିତାନ୍ତ ଆବଶ୍ୟକ । ଏହି ଭଞ୍ଜ ମାଟିରେ କଳା ସାହିତ୍ୟ ଆବାହନମାନ କାଳରୁ ରହିଛି । କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ବଳଦେବ ରଥ, ଭକ୍ତକବି ଗୋପାଳ କୃଷ୍ଣଙ୍କର କୃତି ଓଡ଼ିଆ ସାହିତ୍ୟ ଓ କାବ୍ୟ ଜଗତକୁ ଋଦ୍ଧିମନ୍ତ କରି ରଖିଛି । ଏହି ମାଟିରେ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ବେଳେ ସଂଗ୍ରାମର ପଦଧ୍ୱନି ସୁଦୂର ପ୍ରସାରୀ ହୋଇପାରିଥିଲା ।

ଓଡ଼ିଶାରେ ବ୍ୟବହୃତ ବିଭିନ୍ନ ଛନ୍ଦ, ଭାଗବତ ବାଣୀ, ବଙ୍ଗଳାଶ୍ରୀ, କଳହଂସକେଦାର, ଚୋଖି ଇତ୍ୟାଦି ଲୋକପ୍ରିୟ ଛନ୍ଦଗୁଡ଼ିକ ଜାଣିବା ଆବଶ୍ୟକ । ଅନେକ କଳାକାର ଏଥିରେ ପ୍ରବେଶ କରିନଥାନ୍ତି । ଶବ୍ଦାଳଙ୍କାର ଓ ଅର୍ଥାଳଙ୍କାର ମାଧ୍ୟମରେ ଦାସକାଠୀକୁ ପ୍ରବେଶ କରିଲେ ଏହା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଥାଏ । ଅନୁପ୍ରାସ, ଯମକ ଆଦି ରହିଲେ ଶବ୍ଦମାନେ ବାରମ୍ବାର ଉଚ୍ଚାରିତ ହୋଇ ବର୍ଣ୍ଣନାକୁ ରୋଚକ କରନ୍ତି । ଉପମା, ଉତ୍‌ପ୍ରେକ୍ଷା, ବ୍ୟତିରେକେ ଅଳଙ୍କାରମାନ ପ୍ରୟୋଗ କରାଯାଇ ସେ ସବୁ ଆକର୍ଷଣୀୟ କରାଯାଇଥାଏ । ଅନେକ କଳାକାର ପ୍ରଥମେ ମଙ୍ଗଳାଚରଣ ବା ବନ୍ଦନାରେ ଯେଉଁ ଶ୍ଳୋକ ଉଚ୍ଚାରଣ କରନ୍ତି ତାହା ଅତ୍ୟନ୍ତ ଭ୍ରମପୂର୍ଣ୍ଣ । କାରଣ ସେମାନଙ୍କ ଭାଷା ଠିକ୍ ଭାବେ ନଥାଏ । କେବଳ ଘୋଷି ହୋଇ ଗାଇଲେ ଲୋକମାନଙ୍କର ମନ କିଣି ହେବ ନାହିଁ । ଉଭୟ ସଂସ୍କୃତ ଓ ଓଡ଼ିଆରେ ଠିକ୍ ଓ ସ୍ପଷ୍ଟ ଉଚ୍ଚାରଣ ରହିବା ନିତାନ୍ତ ଆବଶ୍ୟକ । କଥାରେ ଅଛି, 'ଚାଲି ଜାଣିଲେ ବାଟ ସୁନ୍ଦର ଓ କହି ଜାଣିଲେ କଥା ସୁନ୍ଦର ।' ଦାସକାଠୀରେ କଥାକହି ଲୋକଙ୍କୁ ମୋହିବାକୁ ହୁଏ । ଅନର୍ଗଳ କହିବାକୁ ପଡ଼ିଥାଏ । ମୁହଁରେ, ଅଙ୍ଗପ୍ରତ୍ୟଙ୍ଗରେ ଓ ଢଙ୍ଗରେ ସେହି ଭାବ ଫୁଟିଲେ କହୁଥିବା ବିଷୟ ଅନୁଯାୟୀ ସଂଳାପ ଉଚ୍ଚାରଣ, ମୁଖଭଙ୍ଗୀ, ଆଖିର ଇଶାରା ଓ ଶରୀରଭଙ୍ଗୀଦ୍ୱାରା ଦାସକାଠୀ ପରିବେଶକୁ ଆକର୍ଷଣୀୟ କରାଯାଏ । ତେଣୁ ଅଳ୍ପ ହେଲେ ମଧ ଅଭିନୟ ଜ୍ଞାନ ଦାସକାଠୀ ପାଇଁ ନିତାନ୍ତ ଆବଶ୍ୟକ । ଦାସକାଠୀରେ ଗାୟକଙ୍କ କଣ୍ଠସ୍ୱର ସହ ପାଳିଆଙ୍କର କଣ୍ଠସ୍ୱର ମିଶୁଥିବା ଆବଶ୍ୟକ । ପୁରାଣ, ନାଟକ, ଓଡ଼ିଶୀ ଛନ୍ଦ ଶୈଳୀରେ ଏହାର ସଂଗୀତଗୁଡ଼ିକ ଗାନ କରାଯାଏ । ଏହାସହ ସ୍ୱର, ସାଧନା ଓ ତାଳ ଲୟ ଜ୍ଞାନ ମଧ ରହିବା ଆବଶ୍ୟକ ।

ସମାଜର ସଂସ୍କାର ବିଷୟରେ ଉଭୟ ଗାୟକ ଓ ପାଳିଆ ଅବତାରଣା କରିବା ଏକ ବିଶେଷ ଗୁଣ । ମୂଳ ବିଷୟ ସହିତ ମଝିରେ ମଝିରେ ସମତାଳରେ ହାସ୍ୟରସ ଶୈଳୀରେ ଲୋକଙ୍କର ମନୋରଂଜନ କରିବା ପାଳିଆର ଧର୍ମ । ପୁରାଣ ବିଷୟରୁ ପଦେ ସହିତ ସାମାଜିକ ପ୍ରସଙ୍ଗ ପଦେ ଚାଲେ । କଳାକାରମାନେ ବିଷୟଟିକୁ ମୋଟାମୋଟି ମନେରଖି ପଦ ଯୋଡ଼ି ପରିବେଷଣ କରିବା ଓ ପଦ ସଂଯୋଜନା କରିବାରେ ଦକ୍ଷତା ପ୍ରତିପାଦନ କରିଥାଆନ୍ତି ।

ଶିଶୁକାଠରେ କାଠିଗୁଡ଼ିକ ସୁନ୍ଦର ଭାବେ ପ୍ରସ୍ତୁତ ହେଲେ ସୁନ୍ଦର ନାଦ ବାହାରିବ ଏବଂ ତାକୁ ବାଦନ କରିବାର ଚମତ୍କାର କଳା ମଧ ଆୟତ୍ତ କରିବାକୁ ହେବ । ବିଶେଷକରି ରାମତାଳି ବଜାଇବାରେ ଗାୟକଙ୍କର ଦକ୍ଷତା ରହିଲେ ପରିବେଷଣ ରଚିକର ହୁଏ । କାଠି ଅପେକ୍ଷା ରାମତାଳ ବାଦନରେ ଅଧିକ ଚମତ୍କାରିତା ସୃଷ୍ଟି ହୁଏ । ଯେଉଁ କଳାକାର ଯେତେ ସୁନ୍ଦର ଭାଷା ଓ ଭାବ ଦେଇ ବର୍ଣ୍ଣନା କରିପାରନ୍ତି ତାହା ସେତେ ଜୀବନ୍ତ ହୁଏ ଏବଂ ସଂସ୍କୃତ ଓଡ଼ିଆ ସାହିତ୍ୟରୁ ବର୍ଣ୍ଣନା ଉଲ୍ଲେଖ କରି ସେଥିରେ ଯେଉଁ କଳକାର ଯେତେ ସୁନ୍ଦର ଭାଷା ଓ ଭାବ ଦେଇ ବର୍ଣ୍ଣନା କରିପାରନ୍ତି ତାହା ସେତେ ଜୀବନ୍ତ ହୁଏ ଏବଂ ସଂସ୍କୃତ ଓଡ଼ିଆ ସାହିତ୍ୟରୁ ବର୍ଣ୍ଣନା ଉଲ୍ଲେଖ କରି ସେଥିରେ ଯେଉଁ ଅଳଙ୍କାର ଖଞ୍ଜାଯାଏ ତାହା ପରିବେଷଣର ଶୋଭା ବଢ଼ାଇଥାଏ । କାଠ ଛଡ଼ା ଏଥିରେ

ଅନ୍ୟ କୌଣସି ବାଦ୍ୟ ଯନ୍ତ୍ରର ପ୍ରୟୋଗ ହେଉନଥିବାରୁ ସୁମଧୁର ଗାୟନ ଓ କଳାକାରଙ୍କ ଲଳିତ କଣ୍ଠ ଓ ଲାଳିତ୍ୟପୂର୍ଣ୍ଣ ଭାଷା ନ ଥିଲେ ତାହା ଶ୍ରୋତାଙ୍କୁ ଆକର୍ଷିତ କରିବ ନାହିଁ । ଖଣ୍ଡରା ଗାୟକ କୃଷ୍ଣଚନ୍ଦ୍ର ସାହୁ ତାଙ୍କ ସମୟରେ କବିମାନଙ୍କର ଲେଖାକୁ ନିଜ ପରିବେଷଣରେ ସ୍ଥାନ ଦେଉଥିଲେ । କବି ଗୋଦାବରୀଶ ମହାପାତ୍ରଙ୍କ 'ପଙ୍କଜର ପଡ଼ିଶା ଘର' ଗୀତଟି ସେ ପୁରାଣ ବର୍ଣ୍ଣନା ମଝିରେ ଦର୍ଶକମାନଙ୍କ ମନୋରଂଜନ ପାଇଁ ପରିବେଷଣ କରୁଥିଲେ । ଏଣୁ ପ୍ରସଙ୍ଗ ସହ ଆଧ୍ୟାତ୍ମିକ ବିଷୟ ସମସାମୟିକ ଘଟଣାବଳୀ ଓ ସମାଜ ସଂସ୍କାରଧର୍ମୀ ବିଷୟବସ୍ତୁ ଯୋଡ଼ି ଏହାକୁ ଗାୟନ କରିବା ଉଚିତ୍ ।

ସମସ୍ତ କଳାକାର ଯଥା- ଗାୟକ ଓ ପାଳିଆ ସମସ୍ତଙ୍କୁ ନିବେଦନ ଯେ କେବଳ କାଠି ଧରି ଠିଆ ହୋଇପଡ଼ି ଦାସକାଠି ପରିବେଷଣ କଲେ ଯଥେଷ୍ଟ ହେବ ନାହିଁ । ବରଂ କଳାକୁ ଫୁଟେଇବା ପାଇଁ ଚେଷ୍ଟା କରିବେ ଓ କଳା ଫୁଟିଲେ ହିଁ ଲୋକେ ଆଦର କରିବେ । ତଦ୍ଦ୍ୱାରା ଦାସକାଠୀର ଭବିଷ୍ୟତ ନିଶ୍ଚିତ ରୂପେ ଉନ୍ନତ ହେବ । କଳାକାର ଯଦି ଆକର୍ଷଣୀୟ ହୁଅନ୍ତି ପରିବେଷଣର ମାଧ୍ୟମ ମନଲୋଭା ହେଲେ ଦର୍ଶକେ ଦାସକାଠୀକୁ ଛାଡ଼ି ଯାଇପାରିବେ ନାହିଁ ।

**ସମ୍ବଲପୁରୀ ଲୋକନୃତ୍ୟ : ଡାଲଖାଇ**

ସମଗ୍ର ପଶ୍ଚିମ ଓଡ଼ିଶାରେ ସମ୍ବଲପୁରୀ ଲୋକନୃତ୍ୟ ସମସ୍ତଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇଆସିଛି । ବାସ୍ତବରେ ଏହି ଲୋକନୃତ୍ୟ ଓ ସଙ୍ଗୀତ, ଲୋକବାଦ୍ୟ ଏକ ଭିନ୍ନ ପରମ୍ପରା ସୃଷ୍ଟି କରିପାରିଛି । ମନୋରଂଜନ ସହ ସମାଜର ନିର୍ମଳ ଚଳଣି, ଆଚାର-ବ୍ୟବହାର ଏହି ନୃତ୍ୟରେ ପ୍ରତିଫଳିତ ହୋଇଥାଏ । ଏହି ନୃତ୍ୟରେ ଆଦିବାସୀ ପରମ୍ପରାର ବାଦ୍ୟ, ସ୍ୱର, ତାଳ, ଲୟ ସହ ଗ୍ରାମାଞ୍ଚଳର ଶାନ୍ତ ଓ ସୌମ୍ୟ ବାତାବରଣର ଚିତ୍ର ପ୍ରତିଫଳିତ ହୋଇଥାଏ । ମନୋମୁଗ୍ଧକାରୀ ଲୋକବାଦ୍ୟ ଯନ୍ତ୍ର ଯଥା- ଢୋଲ, ନିଶାନ, ତାଶ, ମହୁରୀ, ସମ୍ବଲପୁରୀ ନୃତ୍ୟକୁ ଅତ୍ୟନ୍ତ ଆକର୍ଷଣୀୟ କରିଥାଏ । ସମସ୍ତ ନୃତ୍ୟ, ଗୀତ ପୌରାଣିକ, ଧାର୍ମିକତା ବିଶେଷକରି ଶ୍ରୀଜଗନ୍ନାଥ ଓ ସ୍ଥାନୀୟ ଦେବାଦେବୀଙ୍କ ଉପରେ ଆଧାରିତ ହୋଇଥାଏ । ଡାଲଖାଇ ନୃତ୍ୟ ଏଥିରେ ମୁଖ୍ୟ ଭୂମିକା ନେଇଥାଏ । ଶାରଦୀୟ ଦୁର୍ଗାପୂଜା ଦଶହରା ସମୟରେ ଡାଲଖାଇ ନୃତ୍ୟ ସର୍ବସାଧାରଣରେ ପ୍ରତ୍ୟେକ ଧାର୍ମିକ ପୀଠରେ ଆଧାରଶୀଳା ରୂପେ ପରିବେଷଣ କରାଯାଇଥାଏ । ଏହାବ୍ୟତୀତ ଅନ୍ୟାନ୍ୟ ପର୍ବପର୍ବାଣିରେ ଏହି ନୃତ୍ୟ ସଂଗୀତ ବାଦ୍ୟ ପରିବେଷଣ କରାଯାଇଥାଏ । ଭାଇଜଉନ୍ତିଆ, ଫାଲଗୁନି, ପୁନା, ନୂଆଖାଇ ସମୟରେ ମଧ ଏହା ପରିବେଷଣ କରିଥାନ୍ତି । ଏହି ସମ୍ବଲପୁରୀ ଡାଲଖାଇ ନୃତ୍ୟରେ ଯୁବତୀମାନେ ନୃତ୍ୟ ପରିବେଷଣରେ ପ୍ରମୁଖ ଭୂମିକା ନେଇଥାନ୍ତି । ସମ୍ବଲପୁର, ବଲାଙ୍ଗୀର, ସୁନ୍ଦରଗଡ଼ ଜିଲ୍ଲାର ବିଢ଼ଝାଲ, କୁଚା, ମିର୍ଦ୍ଧା, ସମା ଏବଂ ଅନ୍ୟାନ୍ୟ ଆଦିବାସୀ ଜାତିର ଯୁବତୀମାନେ ନୃତ୍ୟ କରୁଥିବାବେଳେ ଯୁବକମାନେ ଢୋଲ ଓ ମହୁରୀ ପ୍ରଭୃତି ବଜାଇଥାନ୍ତି । ଏହି ନୃତ୍ୟରେ ଢୋଲ ବାହାଳୀ ହିଁ ସମଗ୍ର ନୃତ୍ୟଧାରାକୁ ନିୟନ୍ତ୍ରଣ କରିଥାଏ । ଡାଲଖାଇ ନୃତ୍ୟ ପରିବେଷଣ କରୁଥିବା ଯୁବତୀମାନଙ୍କ ସାମନାରେ ଢୋଲ ବଜାଇ ନୃତ୍ୟକୁ ଜୀବନ୍ତ ଓ ପ୍ରବାହମାନ କରିଥାଏ । ନୃତ୍ୟର ପ୍ରାରମ୍ଭରେ ଓ ଶେଷ ପଂକ୍ତିରେ 'ଡାଲଖାଇ'ରେ ଶବ୍ଦକୁ ଲଗାଇ ଗାଉଥିବାରୁ ଏହି ନୃତ୍ୟକୁ ଯୁବକମାନେ 'ଡାଲଖାଇ' ବୋଲି କୁହାଯାନ୍ତି । ଡାଲଖାଇର ଅର୍ଥ ହେଲା ଏକା ଝିଅ ସାଙ୍ଗ । ଯୁବତୀ ଜଣକ ଡାଲଖାଇ କୁଠୀରେ ଏହି ଗୀତକୁ ଗାଇଥାଏ, ଯେଉଁଠାରେ ଡାଲଖାଇ ଠାକୁରାଣୀଙ୍କ ପ୍ରତିନିଧି ବା ବିଜେପ୍ରତିମା ଉଭା ହୁଅନ୍ତି । ଗାଇବା ପରେ ବାହାରେ ନୃତ୍ୟ ପରିବେଷଣ କରାଯାଏ ।

ଡାଲଖାଇ ଗୋଟିଏ ଦିବ୍ୟ ପ୍ରକୃତି ପୂଜାକୁ ଇଙ୍ଗିତ କରେ । ଆଦିବାସୀ ଅଧ୍ୟୁଷିତ ପଶ୍ଚିମାଞ୍ଚଳର ଡାଲଖାଇ ଦେବୀଶକ୍ତି ବା ଦେବୀପୂଜାର ପ୍ରତୀକ । ଏହାର ଗୋଟିଏ ଦିଗ ପ୍ରକୃତି ପୂଜାକୁ ଇଙ୍ଗିତ କରେ । ମାନବ ସମାଜ ପ୍ରାଚୀନ କାଳରୁ ଜଙ୍ଗଲ ଓ ବୃକ୍ଷଲତା ସହିତ ଜଡ଼ିତ ହୋଇ ଆସିଛି । ମଣିଷର ପୂଜନ ଓ ପରମ୍ପରା ବୃକ୍ଷରୁ ଆରମ୍ଭ ହୋଇଛି । ବୃକ୍ଷ ବା ସାମାନ୍ୟ ଡାଳଖଣ୍ଡକୁ ଦେବତା ଭାବେ ବିଶ୍ୱାସ କରି ବିଶ୍ୱାସର ଦେବୀ ଡାଲଖାଇ ହୋଇଛନ୍ତି । ସମ୍ବଲପୁର ଅଞ୍ଚଳର ବଂଝାଲ, ସଅଁରା, ପାବ, କୁଡ଼ା, ମେଧା ଆଦି ସମାଜରେ ଡାଲଖାଇ ଓଷାବ୍ରତ ବିଶେଷ ଭାବେ ପାଳିତ ହୋଇଥାଏ । ଅଗଣିତ ଆଦିବାସୀ ଓ ଲୋକ ଦେବଦେବୀଙ୍କ ମଧ୍ୟରେ ଡାଲଖାଇ ଅନ୍ୟତମ । ଆଶ୍ୱିନ ଶୁକ୍ଳ ଅଷ୍ଟମୀ ତିଥିରେ ଡାଲଖାଇ ପୂଜା ଅନୁଷ୍ଠିତ ହୁଏ । ଦେବୀଙ୍କୁ ପ୍ରସନ୍ନ କରିବା ପାଇଁ ଦେବୀଙ୍କ ପ୍ରତିମା ସଂପର୍କିତ ଗୀତ ନୃତ୍ୟ ଓ ବାଦ୍ୟ ପରିବେଷଣ କରାଯାଏ । ଡାଲଖାଇ ପୂଜା ପରେ ଯେଉଁ ସ୍ୱତନ୍ତ୍ର ଶୈଳୀର ନୃତ୍ୟ, ଗୀତ ଓ ବାଦ୍ୟ ପରିବେଷଣ କରାଯାଏ ତାହା ମଧ ଡାଲଖାଇ ନାମରେ ପରିଚିତ । ଢୋଲ, ନିଶାନ, ମହୁରୀ, ଟିମଙ୍କି ଓ ତାସା ଆଦି ବାଦ୍ୟଯନ୍ତ୍ରକୁ ଲୋକ କଳାକାର ଭାବେ କଣ୍ଡା ଘାସି ଆଦି ଜାତିର ଲୋକମାନେ ପରିବେଷଣ କରିଥାନ୍ତି । ଡାଲଖାଇରେ

ଧାର୍ମିକ ଭାବନା ପରିଲକ୍ଷିତ । ଏଣୁ ଡାଲଖାଇରେ ନିମ୍ନମତେ ଗୀତ ବୋଲାଯାଏ ।

'ବନ୍ଦୁଁ ଅଛେଁ ମୁଇଁ ଡାଲଖାଇରେ
ବନ୍ଦୁ ଅଛେଁ ମୁଇଁ ମହାମାଇ
ବନ୍ଦୁ ଅଛେଁ ମୁଇଁ ସମଲାଇ
ତୋର ପାଦେ ଶରଣ ଲୋ ମା
ଫେଡ଼ି ଦେ କଷଣ ।'

ଲୋକଙ୍କର ସାମାଜିକ ମନୋବୃତ୍ତି ସହ ଲୋକ କଥା ଏଥିରେ ମଧ ପରିସ୍ଫୁଟ ହୋଇଥାଏ ।

'ଡାଲଖାଇରେ, ଡାଲଖାଇରେ
ଦଶରା ମାସରେ ବାଜିଲା ଢୋଲ
ହରି ବୋଲ ବୋଲ, ଗୋବିନ୍ଦ ବୋଲ
କଲିକତା ନେ ହାବଡ଼ା ପୋଲ
ବଙ୍ଗାଳି ଫେସନ ସିନେମା ଖେଲ
ଏକା ପେଟ ଲାଗି କି ରେ ଉଡ଼ିଆ
ରେକସା ଠେଲ କି ଡାଲଖାଇରେ ।'

**କରମା :** ଭାଗ୍ୟ ଦେବୀଙ୍କୁ ସ୍ମରଣ କରି କରମା ନୃତ୍ୟ ପରିବେଷଣ କରାଯାଇଥାଏ । କରମା ଦେବତା ବା କଇଏ ମାଶାନୀ ଦେବୀଙ୍କୁ ସନ୍ତୋଷ କରିଲେ ଭାଗ୍ୟ ଭଲରେ ବିତେ । ଏହି ବିଶ୍ୱାସରେ କରମା, ଲୋକନୃତ୍ୟ ପଶ୍ଚିମାଞ୍ଚଳରେ ବହୁଳଭାବେ ପରିବେଷଣ କରାଯାଇଛି । ଢୋଲ ବା ମଜିଲ, ମହୁରୀ ବଜାଇ ସୁମଧୁର ସ୍ୱରରେ ଏକାକାରରେ ମିଳିତ ଭାବେ ଗୀତ ଗାଇ ଯୁବକ-ଯୁବତୀମାନେ କରମା ନୃତ୍ୟ ପରିବେଷଣ କରିଥାନ୍ତି । ନାନାରଙ୍ଗ ବିରଙ୍ଗର ପୋଷାକ, ବିଶେଷକରି ଲାଲ ବସ୍ତ୍ର, ମୟୂରପୁଚ୍ଛ, କଉଡ଼ିରେ ତିଆରି ସୁନ୍ଦର ମାଳିରେ ଶରୀରକୁ ସୁନ୍ଦରଭାବେ ଆବୃତକରି ନୃତ୍ୟ ପରିବେଷଣରେ ଯୁବକ-ଯୁବତୀମାନେ ଗୋଷ୍ଠୀର ଉନ୍ମାଦନାକୁ ବଢ଼ାଇ ଢୋଲ-ମର୍ଦ୍ଦଳର ତାଳେ ତାଳେ ନାଚି ଉଠିଥାନ୍ତି ।

**ନାଚନିଆ :** ପଶ୍ଚିମାଞ୍ଚଳର ଅତି ଆକର୍ଷଣୀୟ ନୃତ୍ୟ ରୂପେ ନାଚନିଆ ନୃତ୍ୟ ପର୍ବ-ପର୍ବାଣୀ ଏବଂ ଶୁଭକାର୍ଯ୍ୟରେ ପରିବେଷଣ କରାଯାଇଥାଏ । ସୁନ୍ଦର ରଙ୍ଗବେରଙ୍ଗର ପୋଷାକ ପିନ୍ଧି ପାଦରେ ଘୁଙ୍ଗୁର ଓ ହାତରେ ଚାମର ଧରି ଏହି ନୃତ୍ୟ ପରିବେଷଣ କରାଯାଏ । ବାହାଘର ଏବଂ ଧାର୍ମିକ ଚିନ୍ତାଧାରା ଉପରେ ଆଧାରିତ ଗୀତକୁ ଗାଉଥିବା ଏହି ନାଚନିଆ ଲୋକନୃତ୍ୟ ପଶ୍ଚିମ ଓଡ଼ିଶାରେ ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇପାରିଛି ।

**ବଜନିଆଁ :** ପଶ୍ଚିମ ଓଡ଼ିଶାର ଏହା ଏକ ପାରମ୍ପରିକ ତାଳ ଓ ଲୟ ଆଧାରିତ ଲୋକନୃତ୍ୟ । ଏହାକୁ ହରିଜନ ବର୍ଗର ଲୋକମାନେ ପରିବେଷଣ କରିଥାଆନ୍ତି । ଢୋଲ, ନିଶାନ ଓ ତାସା ପ୍ରଭୃତି ବାଦ୍ୟଯନ୍ତ୍ର ବ୍ୟବହାର କରି ଦଳେ ନୃତ୍ୟ କରନ୍ତି । ନିଶାନ ବାଦକଙ୍କର ତାଳେ ତାଳେ ମଧ ଝଲୀରେ ନାଚୁଥିବା ଯୁବତୀ ଦଳ ଏ ନୃତ୍ୟରେ ମୁଖ୍ୟ ଆକର୍ଷଣ ହୋଇଥାଆନ୍ତି ।

**ପର୍ଭା :** ବଂଶାନୁକ୍ରମେ ନିର୍ଦ୍ଦିଷ୍ଟ ନିୟମ ଉପରେ ପର୍ଭା ନୃତ୍ୟ ପରିବେଷଣ କରାଯାଇଥାଏ । ତଦ୍ୱାରା ଦଶମିନିଟ୍‌ରୁ ଅଧିକ ସମୟ ତାଳେ ତାଳେ ନୃତ୍ୟ କରିବା କଷ୍ଟ ହୁଏ । ଢୋଲ ଓ ଘଣ୍ଟ ଏକ ନିର୍ଦ୍ଦିଷ୍ଟ ତାଳରେ ବଜାଯାଇ ନୃତ୍ୟ କରାଯାଇଥାଏ । ଯାହା ଶିବ ଓ ଶକ୍ତି ରୂପେ ବିବେଚନା କରାଯାଏ ।

**ଚୁଟ୍‌କୁଚୁଟା :** ପଶ୍ଚିମ ଓଡ଼ିଶାର ଅତି ହୃଦୟସ୍ପର୍ଶୀ ତାଳ ଓ ଲୟର ସମ୍ମିଶ୍ରଣରେ ଓ କର୍ଣ୍ଣ ସୁମଧୁର ସ୍ୱରରେ ଏହି ନାଚ ପରିବେଷଣ କରାଯାଇଥାଏ । ସେଥିରେ ଆଦିବାସୀ ସଂସ୍କୃତି ସହ ଗ୍ରାମୀଣ ସଂସ୍କୃତିର ପ୍ରତିଫଳନ କରିଥାଏ । ଏହା ବଜନିଆଁ, ନାଚନିଆଁ, ରସରକେଳି, କର୍ମା, ମାଇଲା ଯୋଡ଼ି, ଦୁଲିଦୁଲି ଆକାରରେ ପରିପ୍ରକାଶ କରିଥାଏ ।

**ଧପ ଲୋକନୃତ୍ୟ :** ପଶ୍ଚିମ ଓଡ଼ିଶାର କନ୍ଧ ଆଦିବାସୀଦ୍ୱାରା ଲୋକ ସଂଗୀତ ଓ ବାଦ୍ୟ ପରିବେଷଣ କରାଯାଇଥାଏ । ଏଥିରେ ଉଭୟ ପୁରୁଷ ଓ ମହିଳା ଭାଗ ନିଅନ୍ତି । ଗୋଟିଏ ଗ୍ରାମର ଅବିବାହିତ ପୁରୁଷବୃନ୍ଦ ଓ ଅନ୍ୟ ଏକ ଗ୍ରାମର ଅବିବାହିତ ଯୁବତୀମାନେ ଏହି ନୃତ୍ୟ ପରିବେଷଣ କରିଥାଆନ୍ତି । ବିବାହ କାର୍ଯ୍ୟରେ ଏହି ଧରଣର ନୃତ୍ୟ ପରିବେଷଣ କରାଯାଏ । ଧପ ଓ ଖଞ୍ଜଣୀ ଏଥିରେ ବ୍ୟବହୃତ ହୋଇଥାଏ ।

**ସଂଚାର :** ସମ୍ବଲପୁରୀ ଭାଷା, ଓଡ଼ିଆ ଭାଷା ଓ ହିନ୍ଦୀ ଭାଷାର ସମ୍ମିଶ୍ରଣରେ ସାତରୁ ନଅଜଣ କଳାକାର ଏହି ସଂଚାର ନୃତ୍ୟ ପରିବେଷଣ କରିଥାଆନ୍ତି । କଳାକାରମାନେ ଏକ ସମୟରେ ସଂଗୀତ, ନୃତ୍ୟ ଓ ଗୀତ ପରିବେଷଣ କରିଥାଆନ୍ତି । ମୃଦଙ୍ଗ, କରତାଳ, ନୂପୁର ଓ କାଠିଦ୍ୱାରା ଏହି ଲୋକ ନୃତ୍ୟ ପରିବେଷଣରେ ରାମାୟଣ, ମହାଭାରତ, ବେଦ, ନୃସିଂହ ପୁରାଣ ଓ ଅନ୍ୟାନ୍ୟ ସାମାଜିକ ଚିତ୍ରଣ ଏହି ସଂଚାର ନୃତ୍ୟରେ ପରିପ୍ରକାଶ ପାଇଥାଆନ୍ତି ।

**ପାଲା :** ଉପକୂଳବର୍ତ୍ତୀ ଜିଲ୍ଲାଗୁଡ଼ିକରେ ପାଲା ଲୋକନୃତ୍ୟ ଗ୍ରାମୀଣ ଜୀବନରେ ସରସ ସୁନ୍ଦର ସାମାଜିକ ଜୀବନ ନିମନ୍ତେ ଉଦ୍ଦିଷ୍ଟ । ଶ୍ରୀଶ୍ରୀସତ୍ୟନାରାୟଣଙ୍କ ପୂଜା ମାଧ୍ୟମରେ ବିଭିନ୍ନ ଧାର୍ମିକ କଥାବସ୍ତୁ, ପୁରାଣକୁ ପାଲା ମାଧ୍ୟମରେ ପରିବେଷଣ କରାଯାଇଥାଏ । ସାଧାରଣତଃ ଗାୟକଙ୍କର ସୁକଣ୍ଠ ଲାଳିତ୍ୟପୂର୍ଣ୍ଣ ଭାଷା, ଉର୍ବର ସାହିତ୍ୟ କାବ୍ୟ କବିତା ଅନୁପ୍ରବେଶ ଓ ପ୍ରଚଳିତ ସାମାଜିକ ଚିନ୍ତାଧାରା ପାଲାରେ ପ୍ରତିଫଳିତ କରିପାରିଲେ ଏହା ଜନସାଧାରଣଙ୍କର ରୁଚି ଭୋଗ୍ୟ ହୋଇଥାଏ । ମୁଖ୍ୟତଃ ଚାମର, ମୃଦଙ୍ଗ, ଝାଞ୍ଜ, ଗିନି ଓ ପଖଉଜ ଆଦି ଲୋକ ବାଦ୍ୟ ଏଥିରେ ବ୍ୟବହୃତ ହୋଇଥାଏ । ଏଥିରେ ମୃଦଙ୍ଗ ବାହକଙ୍କ ସହ ପାଞ୍ଚଜଣ ଗାୟକ ସହାୟତା ଦେଇଥାଆନ୍ତି ।

ଛାନ୍ଦ, ଚମ୍ପୂ ଓ ବିଭିନ୍ନ କବିଙ୍କର ପ୍ରତିଭାକୁ ଗାୟକ ନିଖୁଣ ଭାବରେ ପରିବେଷଣ କରିପାରିଲେ ପାଲା ଉଚ୍ଚକୋଟୀର ହୋଇଥାଏ । ତାଳ, ଲୟ ଓ ସ୍ୱର ହିଁ ପାଲାକୁ ସରସ ଓ ସୁନ୍ଦର ସହିତ ଜୀବନ୍ତ ରୂପ ଦେଇଥାଏ ଓ ଶ୍ରୋତାମାନେ ମନ୍ତ୍ରମୁଗ୍ଧ ଭାବେ ଘଣ୍ଟା ଘଣ୍ଟା ଧରି ପାଲା ପରିବେଷଣକାରୀ କଳାକାରଙ୍କ ନିକଟରେ ବାନ୍ଧି ହୋଇ ରହିଥାଆନ୍ତି । ଅବିଭକ୍ତ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ଏହା ବହୁଳଭାବେ ଦେଖାଯାଏ ।

**ଚଇତିଘୋଡ଼ା :** ଚୈତ୍ର ମାସର ପୂର୍ଣ୍ଣମୀ ଦିନ ଏହି ଚଇତି ଘୋଡ଼ା ନାଚ ସାଧାରଣତଃ କେଉଟ ବସ୍ତିରେ ପରିବେଷଣ କରାଯାଇଥାଏ । ଶକ୍ତି ବା ଦେବୀଙ୍କ ଆଧାର କରି ଚଇତି ଘୋଡ଼ାରେ ବନ୍ଦନା, ସ୍ତୁତି ଓ ବିଭିନ୍ନ ଦେବାଦେବୀଙ୍କ ପୌରାଣିକ ଆଖ୍ୟାନ ଗାୟନ କରାଯାଇଥାଏ । ଗାୟକର ପ୍ରତିଭା ଉପରେ ପାଳିଆର ସହଯୋଗୀ କାବ୍ୟ ଓ ସ୍ୱର ସଂଯୋଜନା ଓ ଢୋଲିଆ, ମହୁରିଆର ସୁମଧୁର ଲୋକବାଦ୍ୟ ସଂଚାଳନ ଚଇତି ଘୋଡ଼ାନାଚକୁ ଅଧିକ ଆକର୍ଷଣ କରିଥାଏ । ଘୋଡ଼ା ବାହକ ସୁନ୍ଦର ଭାବେ ପୋଷାକ ପରିଧାନ କରି ଚଇତି ଘୋଡ଼ା ଭିତରେ ପ୍ରବେଶ କରି ନଚାଏ ଓ ଆଜିକାଲି ମହିଳା ନୃତ୍ୟାଙ୍ଗନା ଏଥିରେ ଅଂଶଗ୍ରହଣ କରିଥାଆନ୍ତି ।

**ଛଉନୃତ୍ୟ :** ଉତ୍ତର ଓଡ଼ିଶାର ମୟୂରଭଞ୍ଜ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳରେ ଛଉ ଲୋକନୃତ୍ୟ ଏବେ ଅତ୍ୟନ୍ତ ଆକର୍ଷଣୀୟ ଲୋକନୃତ୍ୟ ରୂପେ ପ୍ରସିଦ୍ଧି ଲାଭ କରିଛି । ଆଜି ଛଉ ନୃତ୍ୟର ଗାରିମା ମୟୂରଭଞ୍ଜ ଭୌଗୋଳିକ ସୀମା ଅତିକ୍ରମ କରି ଜାତୀୟ ଓ ଆନ୍ତର୍ଜାତୀୟସ୍ତରରେ ସୁଖ୍ୟାତି ଅର୍ଜନ କରିପାରିଛି । ତିନିପ୍ରକାର ଛଉନୃତ୍ୟ ମଧ୍ୟରେ ଓଡ଼ିଶାର ମୟୂରଭଞ୍ଜର ଛଉ ଏକମାତ୍ର ଛଉ ଲୋକନୃତ୍ୟ ଯେଉଁଥିରେ ମୁଖା ବ୍ୟବହାର କରାଯାଇନଥାଏ ।

ମୟୂରଭଞ୍ଜ ମହାରାଜାଙ୍କ ପୃଷ୍ଠପୋଷକତାରେ ଏହି ସୁନ୍ଦର ଲୋକନୃତ୍ୟର ପରିକଳ୍ପନା କରାଯାଇଥିଲା । ୧୯୧୧ ମସିହାରେ କଲିକତାରେ ସର୍ବସାଧାରଣଙ୍କ ନିମନ୍ତେ ପରିବେଷଣ କରାଯାଇଥିଲା । ମୟୂରଭଞ୍ଜ ଛଉନୃତ୍ୟରେ ଲୋକ ସଂସ୍କୃତି, ଆଦିବାସୀ ସଂସ୍କୃତି, ଆଦିବାସି ସଂସ୍କୃତି, ସମରକଳା ସହ ପାରମ୍ପରିକ ଓ ଶାସ୍ତ୍ରୀୟକଳାର ସମ୍ମିଶ୍ରିତ ହୋଇଛି । ରାମାୟଣ, ମହାଭାରତ ଓ କୃଷ୍ଣଙ୍କର ଅନ୍ୟାନ୍ୟ ଆଖ୍ୟାନକୁ ନେଇ ଛଉନୃତ୍ୟ ଜୀବନ୍ତ ହୋଇଥାଏ । ମହୁରୀ, ଚଡଚଡି, ଢ଼ୋଲ, ଢୁମଚା ପ୍ରଭୃତି ଛଉନୃତ୍ୟର ମୁଖ୍ୟ ମେରୁଦଣ୍ଡ । ମୟୂରଭଞ୍ଜ ଛଉରେ ଛଅ ପାଦ (ପଦ ସଂଚାଳନ) ଛତିଶି ପ୍ରକାରର ଡିଆଁ ଏହାକୁ ଅଧିକ ଆକର୍ଷଣ କରିପାରିଛି । ଏଗୁଡ଼ିକୁ ଗ୍ରାମାଞ୍ଚଳର ଗ୍ରାମୀଣ ଚାଲିଚଳଣ ଜୀବନ ନିର୍ବାହ ସହ ପଶୁପକ୍ଷୀଙ୍କ ନାମରେ ନାମିତ କରାଯାଇଛି । ଏହାର ସଂଗୀତ ରୂପକ ଝୁମର ଓ ସ୍ଥାନୀୟ ଲୋକ ସଂଗୀତରୁ ସୃଷ୍ଟି ହୋଇଥାଏ । ବଙ୍ଗଳା, ଭୋଜପୁରୀ, ଓଡ଼ିଆ ଓ ହିନ୍ଦୀ ଶବ୍ଦର ବ୍ୟବହାର ଏଥିରେ ହୋଇଥାଏ । ପୃଥିବୀର ସମସ୍ତ ଲୋକନୃତ୍ୟ ମଧ୍ୟରେ ମୟୂରଭଞ୍ଜ ଛଉନୃତ୍ୟରେ ଦୁଇଶହ ପ୍ରକାର ଅଭିନୟ ଦେଖାଯାଇଥାଏ । ଏକକ ଛଉରେ ଦାଣ୍ଡି, ମହାଦେବ, ଶବର ଟୋକା, ନଟରାଜ, ଜାୟନ୍ତ ପ୍ରଭୃତି ଦେଖାଯାଉଥିବା ବେଳେ ଦଳଗତ ଛଉରେ କିରାତ ଅର୍ଜୁନ, ମାୟା ଶବରୀ, ଦାମୁଦୀୟା କୃଷ୍ଣ, ମାତୃପୂଜା, କେଳାକେଳୁଣୀ, ଧଜାତାଲ, ବଂଶୀଚୋରୀ, କୈଳାଶ ଲୀଳା ପ୍ରମୁଖ ଦେଖାଯାଇଥାଏ । ଏହା ଛଉନୃତ୍ୟର ଚଇତି ପର୍ବର ଏକ ପ୍ରାଚୀନ ନୃତ୍ୟଭଙ୍ଗୀ ସାନ୍ତାଳୀ, ମୁଣ୍ଡା, ଆଦିବାସୀଙ୍କର ଲୋକନୃତ୍ୟ ଓ ଚଳଣୀ ଉପରେ ଆଧାରିତ । ଛଉ ଏକ ପ୍ରାଚୀନ ନୃତ୍ୟକଳା ଯାହା ଭରତ ମୁନୀଙ୍କ ନାଟ୍ୟଶାସ୍ତ୍ର ଏବଂ ନନ୍ଦିକେଶ୍ୱରୀ ଦପଣ ଉପରେ ଆଧାରିତ । ଏହି ନୃତ୍ୟରେ ଅଣ୍ଟା, ପାଦ ଓ ଗୋଡ଼ର ସଂଚାଳନ କଳାର ଭାବକୁ ପ୍ରକଟ କରିଥାଏ ।

**ପ୍ରହ୍ଲାଦ ନାଟକ –** ଧାର୍ମିକ ଓ କଳାତ୍ମକ ପରମ୍ପରାର ଗୀତିନାଟ୍ୟ ସଦୃଶ ଏହି ନାଟକଳ ସଂଳାପ ଖୁବ୍ କାବ୍ୟିକ ପଖଉଜ ଓ ମୁଖବୀଣାର ସଂଗୀତରେ ପ୍ରହ୍ଲାଦ ନାଟକ ଗ୍ରାମାଞ୍ଚଳର ଉଚ୍ଚ ପରଂପରାଗତ ଲୋକନୃତ୍ୟ ରୂପେ ପ୍ରସିଦ୍ଧିଲାଭ କରିଆସିଛି । ଏହାକୁ ପ୍ରହ୍ଲାଦ ନାଟକ, ରଜାନାଟ, ନୃସିଂହ ଅବତାର, ହିରଣ୍ୟାସୁର

ବନ୍ଧ, ସ୍ତମ୍ଭାବତାର, ନୃସିଂହ ଭେଟ ରୂପେ ଦକ୍ଷିଣ ଓଡ଼ିଆ ବିଶେଷ କରି ଗଂଜାମ ଜିଲ୍ଲାରେ ଖୁବ୍ ପ୍ରସିଦ୍ଧି ଅର୍ଜନ କରିଛି । ୧୭୯୮ ମସିହାରେ ପାରଳାଖିମୁଣ୍ଡିର ସଂଗୀତଜ୍ଞ ନାଟ୍ୟକାର ଗୌରହରି ପରିଚ୍ଛା ବିଭିନ୍ନ ରାଜଦରବାର ଓ ଜମିଦାରଙ୍କ ପୃଷ୍ଠପୋଷକତା ପାଇଁ ୧୮୭୦ ମସିହା ବେଳକୁ ପ୍ରହଲ୍ଲାଦ ନାଟକ ଲେଖିଥିଲେ । ଜଳନ୍ତର ରାଜା ରାମକୃଷ୍ଣ ଦେବ ଛୋଟରାୟ ପ୍ରହଲ୍ଲାଦ ନାଟକର ପ୍ରଣେତା ରୂପେ ବିଦିତ ହେଲେ ଓ ସେ ନାଟକ ରଚୟିତା ଗୌରହରି ପରିଚ୍ଛାଙ୍କୁ ଏହି କାର୍ଯ୍ୟରେ ପ୍ରୀତ ହୋଇ ତାଙ୍କୁ 'ସଂଗୀତ ଭୂଷଣ' ଉପାଧିରେ ଭୂଷିତ କରିଥିରେ । ଏହି ଲୋକ ନାଟକ ଗଂଜାମରେ ରଜା ନାଟ ରୂପେ ପ୍ରସିଦ୍ଧ । ବର୍ଷା ଦିନକୁ ବାଦ୍ ଦେଲେ ବର୍ଷର ଅନ୍ୟଦିନେ ବରାଦି ନାଟକ ରୂପେ ଏହା ପରିବେଷିତ ହୋଇଥାଏ । ତାଳ, ରାଗ, ଛନ୍ଦ, ସାହିତ୍ୟ ସମ୍ବନ୍ଧୀୟ ଜ୍ଞାନ ବିଷୟରେ ବାଦ ବିବାଦ ସହ ବାଦି ନାଟକରେ ଏହି ପ୍ରତିଯୋଗୀ ମନୋଭାବକୁ ଅଧିକ ଆକର୍ଷଣୀୟ କରିଥାଏ । ମଞ୍ଚସଜ୍ଜା, ବେଶଭୂଷା, ଅଭିନୟ ଶୈଳୀ, ଆଳାପ, ସ୍ୱର ଓ ସଂଗୀତର ମାନ ପ୍ରହଲ୍ଲାଦ ନାଟକକୁ ଅଧିକ ଆକର୍ଷିତ କରିଥାଏ । ଏହି ଲୋକ ନାଟକରେ ନୃସିଂହ ମୁଖାକୁ ଅଲୌକିକତା ଓ ଧର୍ମର ଦ୍ୱାହି ଦେଇ ଭୟ ଭକ୍ତି ମିଶ୍ରିତ ଉପାଖ୍ୟାନ ଅବତାରଣା କରାଯାଏ । ଏହି ରଜା ନାଟକ ପ୍ରଦର୍ଶନୀର ସମୟସୀମା ଦିନ ୧୨ଟାରୁ ରାତ୍ର ୭ଟା ପର୍ଯ୍ୟନ୍ତ ଅଭିନୟ କରାଯାଇପାରେ । ନାଟକ ଆରମ୍ଭରେ ଏକ ମୁକ୍ତାକାଶ ରଙ୍ଗମଞ୍ଚ ଚୟନ କରାଯାଇ ସାତଟି କାଠପଟାରେ ସିଂହାସନ ମଞ୍ଚ ତିଆରି ହୁଏ । ଶ୍ରୀ ଗଣେଶ ମୁଖାଧାରୀ କଳାକାର ଆସି ନୃତ୍ୟ କଲାପରେ ରାଜା ହିରଣ୍ୟକଷ୍ୟପକୁ ନିଜ ପାତ୍ରମନ୍ତ୍ରୀଙ୍କ ପଟୁଆରରେ ଆସି ମଞ୍ଚାରୋହଣ କରିଥାଏ । ଏହାପରେ ପ୍ରହ୍ଲାଦ ଆସି ଭକ୍ତିରସରେ ବିଦଗ୍ଧ ଶ୍ରୋତାଙ୍କୁ ହରିନାମରେ ନାମିତ କରାଇଥାଏ । ପ୍ରହ୍ଲାଦ ନାଟକ କଳାକାରଙ୍କ ବେଶପୋଷାକ ମୋଗଲ କାଳୀନ ପୋଷାକ ସହ ସାମଞ୍ଜସ୍ୟ ରଖେ । ରାଜା ଓ ପ୍ରହ୍ଲାଦର ମୁକୁଟ ଦୁଇ ଓ ଦେଢ଼ଫୁଟ ବିଶିଷ୍ଟ ହୋଇଥାଏ । ଦ୍ୱାରୀ ଓ ରାଜା ଉଭୟ ଖଡ୍ଗ ଓ ଗଦା ବ୍ୟବହାର କରୁଥିବା ବେଳେ ରଜା ଦାଢ଼ୀଧାରୀ ଓ ରକ୍ତିମ ବର୍ଣ୍ଣର ରଙ୍ଗ ମାଖିଥାନ୍ତି । ଶତାଧିକ ରଜା ନାଟକରେ, ନାଟକର ପରମ୍ପରାରେ ଗଞ୍ଜାମ ଜିଲ୍ଲା ସୁଖ୍ୟାତି ଅର୍ଜନ କରିଛି । ଶେଷରେ ଏକ ସ୍ତମ୍ଭ ଉପରକୁ ଗଦା ଫିଙ୍ଗିବାଦ୍ୱାରା ନୃସିଂହ ଅବତାରରେ ହରିଣ୍ୟକଶ୍ୟପକୁ ବଦ୍ଧ କରିଥାନ୍ତି । ଭଗବାନ ନୃସିଂହ ଭୟଙ୍କର ମୁଦ୍ରାରେ ନୃତ୍ୟ କରି ମଣ୍ଡପ ମଧ୍ୟକୁ ଆସନ୍ତି ଓ ରୌଦ୍ର ରସରେ ମଣ୍ଡପ ଭରିଯାଏ । ନୃତ୍ୟ ସରିବା ପରେ ହରିଣ୍ୟକଶ୍ୟପକୁ ଧରି ତା'ର ପେଟଚିରି ବଦ୍ଧ କରିଥାନ୍ତି । ଏହି ଲୋକନୃତ୍ୟରେ ଓଡ଼ିଆ ଓ ସଂସ୍କୃତ ଭାଷା ବ୍ୟବହୃତ ହେଉଥିବା ସହ ଶାସ୍ତ୍ରୀୟ ହିନ୍ଦୁସ୍ଥାନୀ ଓ କର୍ଣ୍ଣାଟକୀ ରାଗ ଓ ତାଳ ଏଥିରେ ଥାଏ । ଅତିକମ୍‌ରେ ୪୨ ଗୋଟି ସଂସ୍କୃତ ଶ୍ଳୋକ, ୧୧ ଗୋଟି ଓଡ଼ିଆ ଶ୍ଳୋକ ଏବଂ ଓଡ଼ିଆ ୧୨୬ ଗୋଟି ଗୀତ, ୩୫ଟି ରାଗ ଏବଂ ୬ଟି ତାଳ ମଧ୍ୟରେ ପ୍ରହ୍ଲାଦ ନାଟକ ଗତିଶୀଳ ହୋଇଥାଏ । ଏଥିରେ ୨୦ ଜଣ ପୁରୁଷ ଚରିତ୍ର ଓ ୫ ଜଣ ମହିଳା ଚରିତ୍ର ରହିଥାନ୍ତି । ଏହି ଲୋକନାଟକରେ ହାସ୍ୟ, କରୁଣ, ଶାନ୍ତ, ରୁଦ୍ର ଭଳି ଚାରିପ୍ରକାର ରସ ନାଟକକୁ ପରିପୁଷ୍ଟ କରିଥାଏ ।

**ଦଣ୍ଡନୃତ୍ୟ :** ଲୋକନାଟକ ମଧ୍ୟରେ ଦଣ୍ଡନାଚ ଅଦ୍ୟାବଧି ଆର୍ଯ୍ୟ ସଂସ୍କୃତି ଓ ପରମ୍ପରାକୁ ଆଦରି ନେଇଯାଇଛି । ଚଢ଼େଇଆ ନୃତ୍ୟ କାହାଣୀ ରୂପରେ ଆଧାରିତ ଶିବଶକ୍ତିଙ୍କର ମହିମାକୁ ଏଥିରେ ପ୍ରଦର୍ଶନ କରାଯାଇଛି । ଏହି ଲୋକନୃତ୍ୟ ଓଡ଼ିଶାର ଏକ ମୌଳିକ ଓ ପ୍ରାଚୀନ ଲୋକନୃତ୍ୟ । ଏହା ଓଡ଼ିଶାର ବଉଦ, କନ୍ଧମାଳ, ନୟାଗଡ଼, ବରଗଡ଼, ରେଢ଼ାଖୋଲ, ବଲାଙ୍ଗୀର, ସୋନପୁର, କଟକ, ପୁରୀ ଓ ଢେଙ୍କାନାଳରେ ଦେଖାଯାଉଥିଲେ ମଧ୍ୟ ଗଞ୍ଜାମ ଜିଲ୍ଲାରେ ଦଣ୍ଡନାଚ ପରମ୍ପରାର ସ୍ୱତନ୍ତ୍ର ଆକର୍ଷଣ ରହିଛି । କେତେକ ଦଳରେ ଏକ ହଜାରରୁ ୧୫ ଶହ ପର୍ଯ୍ୟନ୍ତ କାମନାଭିଳାଷୀ ଭକ୍ତ ଦଣ୍ଡୁଆ ସାମିଲ ହୋଇଥାଆନ୍ତି । ଘୁମୁସର କୁଲାଡ଼ଗଡ଼ରୁ ଏହା ପ୍ରଥମେ ଆରମ୍ଭ ହୋଇ ଧୀରେ ଧୀରେ ବିଭିନ୍ନ ଅଞ୍ଚଳକୁ ବ୍ୟାପିଥିଲା । ଦଣ୍ଡର ମୁଖ୍ୟ ପ୍ରତୀକ ଶିବ ଓ ପାର୍ବତୀ । ଦଣ୍ଡ ବା ବାଡ଼ିକୁ ରଖି ଏହି ନୃତ୍ୟ ପରିବେଷଣ କରାଯାଉଥିବାରୁ ଏହି ନୃତ୍ୟକୁ ଦଣ୍ଡନୃତ୍ୟ କୁହାଯାଏ । ଜାତି, ବର୍ଣ୍ଣ, ଧନୀ, ମାନୀ, ଗରିବ ନିର୍ବିଶେଷରେ ଅସ୍ପୃଶ୍ୟତା ଶୂନ୍ୟ ବିଶ୍ୱଭ୍ରାତୃତ୍ୱ ଭାବର ଜାଗରଣ ସହ ଏକ ଆଧାତ୍ମିକ ବାତାବରଣରେ ଭକ୍ତି, ଗୀତ, ବାଦ୍ୟ, ନୃତ୍ୟର ବିଚିତ୍ର ସମନ୍ୱୟ ସାଧନା ମଧ୍ୟରେ ଦଣ୍ଡନାଚ ପ୍ରମୁଖ ଭୂମିକା ନେଇଛି । ମହାବିଷୁବ ସଂକ୍ରାନ୍ତିର ୨୧ ଦିନ, ୧୮ ଦିନ କିମ୍ବା ୧୩ ଦିନ ପୂର୍ବରୁ ଆରମ୍ଭ ହୋଇ ତାହା ମେରୁ ସଂକ୍ରାନ୍ତି ଦିନ ଉଦ୍‌ଯାପନ ହୋଇଥାଏ । ଦଣ୍ଡଯାତ୍ରା ଆରମ୍ଭ ପୂର୍ବଦିନ ମଧରାତ୍ରରେ ଗେରୁଆବସ୍ତ୍ର ପରିଧାନ କରି ବାନା, ଫୁଲଚନ୍ଦନ ପ୍ରଭୃତି ନେଇ ଯିବାବେଳେ ପତ୍ନୀମାନେ ଘରଦୁଆର ଆଗରେ ପୂର୍ଣ୍ଣ କୁମ୍ଭ ସଜାଇ ପ୍ରଦୀପ ଜାଳି ଶୁଭ ମନାସନ୍ତି ଓ ସ୍ୱାମୀଙ୍କର ଶୁଭ ପ୍ରତ୍ୟାବର୍ତ୍ତନ ପର୍ଯ୍ୟନ୍ତ ନିଷ୍ଠାରେ ରହନ୍ତି । ଏମାନଙ୍କୁ ଦଣ୍ଡୁଆ ନାମରେ ଡକାଯାଉଥିବା ବେଳେ ମୁଖିଆକୁ ପାଟଦଣ୍ଡୁଆ କୁହାଯାଏ । ବୀଣାକାର ୧୩ ପ୍ରକାର କଠିନ ଦଣ୍ଡ ସ୍ୱରୂପ ୧୩ ରଷିପୁତ୍ରଙ୍କ

ନାମ ନେଇ କହିଥାନ୍ତି – 'ହେ ରଷିପୁତ୍ର ! ଅଇଲେ ହର ଦେଇ ଗଲେ ବର, ଅନ୍ୟ ସେବା ଏ ସେବା କର, ଏ ସେବା କଲେ କି ଫଳ ପାଏ, ଉଷୁନା ଧାନ ଗଜା ହୁଏ, ଶୁଖିଲା କାଠ କଞ୍ଚା ହୁଏ, ଭଜା ମୁଗ ଗଜା ହୁଏ, ଅପୁତ୍ରିକ ପୁତ୍ର ଦାନ ପାଏ, ଅନ୍ଧ ଚକ୍ଷୁଦାନ ପାଏ, ଜରାରୋଗ ଭଲ ହୁଏ ଇତ୍ୟାଦି । ଏହାଛଡ଼ା ସେମାନେ ଦଣ୍ଡପାଳନ ସମୟରେ ମୁନିରଷି ପରି ବୈରାଗ୍ୟ ଜୀବନଯାପନ କରନ୍ତି । କାଳୀଙ୍କ ଚିତ୍ରପଟ୍ଟ, ମହାଦେବଙ୍କ ପ୍ରତୀକ ନାଗମୂର୍ତ୍ତି, ମୟୂରପୁଚ୍ଛ ଓ ପତାକା ଆଦି ପୂଜା ପରେ ଦଣ୍ଡଯାତ୍ରା ଆରମ୍ଭ ହୁଏ । ଦୁଇ କାଠକୁ ଘର୍ଷଣ କରି ଅଗ୍ନି ଜାତ କରି ପାଳରେ ତିଆରି ଚମ୍ପାବରରେ ଏହି ଶିବାଗ୍ନି ରଖି ଦୁଇଜଣ ଭୋକ୍ତା କାମନା ଗୃହରେ ଜଗିଥିଲା ବେଳେ ଅନ୍ୟ ଦଣ୍ଡୁଆଟି ଅନ୍ୟ ଏକ ଅଗ୍ନିସଂଯୋଗ ଚମ୍ପାବରକୁ ଧରି ଦଣ୍ଡନାଚ ଦଳ ସହ ବୁଲୁଥାଏ । ଦୁଇଜଣ ଅଗ୍ନିଦଣ୍ଡ ମୁଠିରେ ସଂଯୋଗ କରି ଅଗ୍ନିଦଣ୍ଡରେ ଅଂଶଗ୍ରହଣ କରନ୍ତି । ଦିନ ଦ୍ୱିପ୍ରହରରେ ପ୍ରଚଣ୍ଡ ଖରାରେ ଧୂଳିଦଣ୍ଡ ଗାଁ ଦାଣ୍ଡର ତତଲା ଧୂଳିମାଟିରେ ବିଭିନ୍ନ ନୃତ୍ୟ ଯଥା– କ୍ଷେତ ତିଆରି, ବିହନ ବୁଣିବା, ଭୂମିପୂଜା, ମନ୍ଦିର ନିର୍ମାଣ, ହଳଦୀବଟା, ହଳଚାଳନା, କୂପଖନନ ପ୍ରଭୃତି କୃଷିଭିତ୍ତିକ ଦୃଶ୍ୟ ପରିବେଷଣ କରିଥାନ୍ତି । ଧାନରୋପଣ, ଘାସବାଛିବା, ଅମଳକରିବା କାର୍ଯ୍ୟରେ କୃଷକର ସ୍ତ୍ରୀ ବିଲକୁ ଆସିବାର ଦୃଶ୍ୟ ଆବୃତ ହୋଇଥାଏ । ଧୂଳିଦଣ୍ଡ ପରେ ନିକଟସ୍ଥ ପୁଷ୍କରିଣୀରେ ପାଣିଦଣ୍ଡ ଓ ମଧରାତ୍ରରେ ମହୁରୀ, କାହାଳୀ, ଘଣ୍ଟ, ଢୋଲ ବଜାଇ ଅଗ୍ନି ଦଣ୍ଡଧରି ଝୁଣା ମାରି ଅଗ୍ନିଖେଳ ଖେଳି ଗୃହ ସ୍ୱାମୀଙ୍କ ଗୃହକୁ ଯାଆନ୍ତି । ଦଣ୍ଡୁଆମାନେ ଏତିକିବେଳେ କଳାରୁଦ୍ର, 'ମଣିକି ଭଜହେ' ଡାକ ଦିଅନ୍ତି । ଏହି ସମୟରେ ଅଗ୍ନିଦଣ୍ଡ ସହ କାଳି ପ୍ରଭାଦଣ୍ଡ ବାହାରିଥାଏ । ଚଢ଼େୟା–ଚଢ଼େଆଣୀ, ଶିବ–ପାର୍ବତୀ, କେଳା–କେଳୁଣୀ ପ୍ରଭୃତି ବେଶଧାରୀ ରାତ୍ର ସମୟରେ ଶିବ ପାର୍ବତୀଙ୍କ ମହିମା ପରିବେଷଣ କରନ୍ତି । ମେରୁ ସଂକ୍ରାନ୍ତି ବା ବିଷୁବ ସଂକ୍ରାନ୍ତି ଦିନ ମେରୁଦଣ୍ଡ ଅନୁଷ୍ଠିତ ହୋଇ ଦଣ୍ଡନାଚ ଉଦ୍‌ଯାପନ ହୋଇଥାଏ ।

**ଘୁମୁରା ନାଚ :** ପଶ୍ଚିମାଞ୍ଚଳ ବିଶେଷ କରି ଅବିଭକ୍ତ କଳାହାଣ୍ଡି ଜିଲ୍ଲାରେ ଘୁମୁରା ଲୋକନୃତ୍ୟ ଜନସାଧାରଣଙ୍କର ନିଜସ୍ୱ ପାରମ୍ପରିକ ନୃତ୍ୟକଳା । ଯାହା ମନୋରଂଜନ ଧର୍ମୀ ହେଲେ ମଧ ଏହା ସମରକଳାରେ ସୁସଜ୍ଜିତ ଲୋକନୃତ୍ୟ । ଏହି ନୃତ୍ୟରେ ସାଧାରଣତଃ ଯୁବକ ସମ୍ପ୍ରଦାୟର ସମରକଳାରେ ପରିପୂର୍ଣ୍ଣ ନାଟକ ପରିବେଷଣ କରିଥାନ୍ତି । ଏଥିରେ ଗାୟକ ଓ ମହୁରିଆଙ୍କୁ ବାଦଦେଲେ ପ୍ରତ୍ୟେକ ନୃତ୍ୟରତ କଳାକାର ସୁସଜ୍ଜିତ ବିଭିନ୍ନ ରଙ୍ଗବେରଙ୍ଗର ପୋଷାକ ପରିଧାନ ସହ ଘୁମୁରାକୁ ଅଣ୍ଟାରେ ଭିଡ଼ି ନାଭିମଣ୍ଡଳରେ ଥାପି ଦୁଇଟି ବାଡ଼ିରେ ବଜାଇ ବଜାଇ ଏକ ସମୟରେ ତାଳ ଓ ଲୟ ସହ ନାଚ କରିଥାନ୍ତି । ସମସ୍ତଙ୍କ ମୁଣ୍ଡରେ ଭିଡ଼ା ଯାଇଥିବା ପଗଡ଼ିରେ ପୁଚ୍ଛ ବାନ୍ଧି ଘୁମୁରା ନୃତ୍ୟ ପରିବେଷଣ କରନ୍ତି । ଏହା ସମଗ୍ର ପଶ୍ଚିମାଞ୍ଚଳ ଓଡ଼ିଶାରୁ ପରିବ୍ୟାପ୍ତ ହୋଇ ଆଜି ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ପ୍ରସିଦ୍ଧ ଲୋକନୃତ୍ୟ ଭାବେ ଖ୍ୟାତିଲାଭ କରିଛି ।

**ରଣପା ଓ ଯୋଡ଼ିଶଙ୍ଖ ନୃତ୍ୟ :** ରଣପା ସାଧାରଣତଃ ଦକ୍ଷିଣ ଓଡ଼ିଶାର ଗାଈଚରାଳୀ ଗୌଡ଼ ସମ୍ପ୍ରଦାୟର ନୃତ୍ୟ ରୂପେ ପ୍ରସିଦ୍ଧି ଲାଭ କରିଛି । କାରଣ ଯେଉଁ ଠେଙ୍ଗା ସେମାନେ ବ୍ୟବହାର କରନ୍ତି, ସେହି ଠେଙ୍ଗା ଉପରେ ଚଢ଼ି ଏହି ରଣପା ନୃତ୍ୟ ପରିବେଷଣ କରିଥାନ୍ତି । ଏହା ସମରକଳାଭିତ୍ତିକ ଲୋକନୃତ୍ୟ । ଏଥିରେ ଢୋଲ ଏବଂ ମହୁରୀ ବ୍ୟବହୃତ ହୋଇଥାଏ । ବାଲ୍ୟକୃଷ୍ଣଙ୍କର ବାଲ୍ୟଲୀଳା ସମ୍ବଳିତ ଲୋକ ସଂଗୀତ ପରିବେଷଣ କରାଯାଇଥାଏ । ପଦ୍ମଶ୍ରୀ ସ୍ୱର୍ଗତଃ ଭଗବାନ ସାହୁ ଏହି ନୃତ୍ୟକୁ ଆନ୍ତର୍ଜାତୀୟସ୍ତରରେ ପହଞ୍ଚାଇ ଆମ ପାଇଁ ଗୌରବ ଆଣିଥିଲେ ।

ଦୁଇଟି ଶଙ୍ଖ ଏକା ସମୟରେ ତାଳ, ଲୟକୁ ସମନ୍ୱୟ ରଖି ବାଦନ କରି ଓ ବିଭିନ୍ନ ଅଙ୍ଗଭଙ୍ଗୀ ପ୍ରଦର୍ଶନ କରି ଗଞ୍ଜାମ ଜିଲ୍ଲାର କଳାକାରମାନେ ଆଜି ସୁଦୂର ବିଦେଶମାଟିରେ ମଧ ଯୋଡ଼ିଶଙ୍ଖ ଲୋକନୃତ୍ୟ ଓ ସୁମଧୁର ଲୋକ ସଂଗୀତକୁ ପହଞ୍ଚାଇ ପାଇଛନ୍ତି । ପ୍ରତ୍ୟେକ ଶୁଭ କାର୍ଯ୍ୟରେ ଆଜି ଯୋଡ଼ିଶଙ୍ଖର ଚାହିଦା ଖୁବ୍ ବଢ଼ିଯାଇଛି ।

**ରାମଲୀଳା :** ଓଡ଼ିଶାର ସର୍ବପ୍ରାଚୀନ ଲୋକ ନାଟକ ରାମଲୀଳା ଆଜି ଉତ୍କଳର ପ୍ରକୃଷ୍ଟ ନାମକୁ କଳାରେ ଉତ୍କର୍ଷ କଳାରେ ପ୍ରମାଣିତ କରିପାରିଛି । ଶ୍ରୀଜଗନ୍ନାଥଙ୍କର ଧର୍ମ, ସଂସ୍କୃତି, ବାରମାସରେ ତେର ପର୍ବ ସାଙ୍ଗକୁ ଜଗନ୍ନାଥ ଧାମ ଉତ୍କଳରେ ବିଭିନ୍ନ ଲୋକଗୀତ, ଲୋକନାଟକ, ପରମ୍ପରା ଓ ସଂସ୍କୃତି ସମଗ୍ର ଭାରତ ଭିତରେ ଓଡ଼ିଶାକୁ ସ୍ୱତନ୍ତ୍ର କରି ଚିହ୍ନାଇ ଆସୁଛି । ଏ ଭିତରୁ ରାମଲୀଳାର ଆକର୍ଷଣ ସମ୍ପୂର୍ଣ୍ଣ ଭିନ୍ନ । ସାହିତ୍ୟ ଓ ସଂସ୍କୃତିର ପ୍ରଚାର ପ୍ରସାର କ୍ଷେତ୍ରରେ ଲୋକନାଟକର ଅବଦାନ ଅନେକ । ଓଡ଼ିଶାର ଲୋକନାଟ୍ୟ ପରମ୍ପରା ଅତି ପ୍ରାଚୀନ । ଶ୍ରୀଜଗନ୍ନାଥଙ୍କ ସେବକ ବିଶ୍ୱନାଥ ଖୁଣ୍ଟିଆ, ଖ୍ରୀଷ୍ଟାବ୍ଦ ୧୭୧୦ରେ ବିସି ରାମାୟଣ ରଚନା କରିଥିଲେ । ଯାହା ରାମଲୀଳାର ପ୍ରଥମ ଲିଖିତ ରୂପ । ଏହାକୁ ଅନୁକରଣ କରି ଚିକିଟିର ବୈଶ୍ୟ ସଦାଶିବ, ରାମଲୀଳା ରଚନା

କଲେ ଯାହା ଦକ୍ଷିଣାଞ୍ଚଳରୁ ଆରମ୍ଭ ହୋଇ ପଶ୍ଚିମାଞ୍ଚଳରେ ପରିବେଷିତ ହେଲା । ଗଂଜାମର ବହୁ ଲେଖକ ରାମଲୀଳା ରଚନା କ୍ଷେତ୍ରରେ ପ୍ରମୁଖ ଭୂମିକା ନେଇଥିଲେ । ଏ ସବୁର ବଳିଷ୍ଠ ପୃଷ୍ଠପୋଷକ ଥିଲେ ଚିକିଟି ରାଜପରିବାର । ରାମଲୀଳାରେ ଅଂଶ ଗ୍ରହଣ କରିଥିବା ଚରିତ୍ରଙ୍କ ସଂଖ୍ୟା ୪୦ରୁ ୫୦ କଳାକାର । ରାମଲୀଳା ଗ୍ରାମର ମୁକ୍ତାକାଶ ତଳେ ପରିବେଷଣ କରାଯାଇଥାଏ । ଆସିକା ନିକଟସ୍ଥ ବାଲିପଦରର କଳ୍ପତରୁ ଦାସଙ୍କଦ୍ୱାରା ରଚିତ ଶ୍ରୀରାମଲୀଳା ୬ କାଣ୍ଡକୁ ନେଇ ରଚିତ । ସେ ଉତ୍ତରାକାଣ୍ଡକୁ ବାଦ ଦେଇଛନ୍ତି । ଏଥିରେ ସଂସ୍କୃତ ଶ୍ଳୋକ ସହିତ ଆଳଙ୍କାରିକ ଛଟାର ପ୍ରୟୋଗ ଦେଖାଯାଏ । କଳ୍ପତରୁଙ୍କ ରାଗ ଓ ତାଳରେ ଦକ୍ଷତା ରହିଥିଲା । ଗାୟକ, ପାଳିଆ ଓ ଅନ୍ୟାନ୍ୟ ବାଜାବାଲା ନାଟ୍ୟମଣ୍ଡଳର ପୂର୍ବପାର୍ଶ୍ୱରେ ବସନ୍ତି । ଏଥିରେ ତାଳ, ମୃଦଙ୍ଗ, ନାଗରା ହାରମୋନିୟମ ବ୍ୟବହାର କରାଯାଏ । ଏଥିରେ ସବୁ ଧର୍ମ, ଜାତିର ଲୋକ ଅଭିନୟ କରିପାରନ୍ତି । ପୁରୁଷ ଓ ସ୍ତ୍ରୀ ଉଭୟ ଚରିତ୍ରରେ କେବଳ ପୁରୁଷମାନେ ହିଁ ଅଭିନୟ କରନ୍ତି । ରାମଲୀଳା ୧୨ ଘଣ୍ଟାରୁ ୨୪ ଘଣ୍ଟା ପରିବେଷଣ କରାଯାଇଥାଏ କିନ୍ତୁ ଆବଶ୍ୟକ ସ୍ଥଳେ ୭ ଦିନରୁ ୧୪ ଦିନ ପର୍ଯ୍ୟନ୍ତ ପରିବେଷଣ ହୋଇଥାଏ । ରାମନବମୀ ସମୟରେ ଏହି ଲୀଳା ରାମମନ୍ଦିର ସାମ୍ନାରେ ପରିବେଷଣ କରାଯାଇଥାଏ । ମଙ୍ଗଳାଚରଣରୁ ଏହି ଲୋକନାଟକ ଆରମ୍ଭ ହୁଏ । କଳାକାରମାନେ ନିଜେ ସଂଳାପଧର୍ମୀ ଗୀତ ଗାୟନ କରି ନୃତ୍ୟାଭିନୟ ପ୍ରଦର୍ଶନ କରନ୍ତି । ଏହି ନାଟକରେ ମୁଖାର ବ୍ୟବହାର ବିଶେଷ ପ୍ରାଧାନ୍ୟ ଲାଭ କରିଥାଏ, ଯଥା– ସୁର୍ପଣଖା, ଜଟାୟୁ, ରାବଣ, ଅନ୍ୟାନ୍ୟ ଅସୁର ବର୍ଗ ପାଇଁ ମୁଖା ବ୍ୟବହାର କରାଯାଏ । ରାମଲୀଳା ନାଟକର ମୁଖ୍ୟ ଚରିତ୍ର ହେଲେ ଶ୍ରୀଗାୟକ ଓ ତାଙ୍କର ସହଯୋଗୀ ହେଲେ ପଡ଼ି ଗାୟକ । ଶ୍ରୀଗାୟକ ସଂସ୍କୃତ ବାଦ୍ୟଶାସ୍ତ୍ର ଅଧ୍ୟୟନ ସହ ସଂସ୍କୃତ ସାହିତ୍ୟ ଓ ଗାୟନ କ୍ଷେତ୍ରରେ ବିଶେଷ ଦକ୍ଷତା ରଖିଥାନ୍ତି । ଗାୟକଙ୍କ ନୃତ୍ୟ, ଗାନ ପାଣ୍ଡିତ୍ୟ ଉପରେ ସେହି ନାଟକର ଲୋକପ୍ରିୟତା ନିର୍ଭର କରେ । **ଦୀର୍ଘ ୬୦ ବର୍ଷରୁ ଅଧିକ ସମୟ ଧରି ଗଂଜାମ ଜିଲ୍ଲାର ଆସିକା ନିକଟସ୍ଥ ଗୋଲାମୁଣ୍ଡୁଳା ଗ୍ରାମର ରାମଲୀଳାରେ ୨୦ ବର୍ଷରୁ ଆରମ୍ଭ କରି ୮୦ ବର୍ଷ ବୟସ ପର୍ଯ୍ୟନ୍ତ କଳାକାରମାନେ ଅଭିନୟ କରୁଛନ୍ତି ।**

**ରାଧାପ୍ରେମଲୀଳା :** ଗଂଜାମ ଜିଲ୍ଲାର ମୁଖ୍ୟ ଲୋକ ସଂଗୀତ ରୂପକ ନାଟକ ରାଧା ପ୍ରେମଲୀଳା ରାଧା ଓ କୃଷ୍ଣଙ୍କର ଶାଶ୍ୱତ ପ୍ରେମଲୀଳାକୁ ଆଧାର କରି ସୃଷ୍ଟି ହୋଇଥିଲା । ଚିକିଟି ରାଜପରିବାରରୁ ଏହାର ଜନ୍ମ ଓ ରାଧା ପ୍ରେମଲୀଳା ପାଇଁ କାଠରେ ନିର୍ମିତ ଏକ ମଞ୍ଚର ଆବଶ୍ୟକତା ରହିଥାଏ । ରାଧା, ଲଳିତା ଏବଂ କୃଷ୍ଣଙ୍କର ବିଭିନ୍ନ ବେଶ ଯଥା– କାଚରା ବେଶ, ଅଳତା ଲଗାଇବା ବେଶ, ପରିବା ବିକାଳୀ, ସାପୁଆ କେଳା ବେଶ ଇତ୍ୟାଦି ପରିବେଷଣ କରାଯାଇଥାଏ । ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ଏହାକୁ ଏକ ପ୍ରଧାନ ନାଟକ ଭାବେ ମାନ୍ୟତା ମିଳିଥିଲା । ଗଞ୍ଜାମ ଜିଲ୍ଲାର ଆଠଗଡ଼ ପାଟଣା ଗଞ୍ଜାମର ଶ୍ରୀ ରଘୁନାଥ ରାଜଗୁରୁ ପ୍ରଥମେ ରାଧା ପ୍ରେମଲୀଳା ପରିବେଷଣ କରିଥିଲେ ।

**ଭାରତ ଲୀଳା :** ଗଞ୍ଜାମ ଜିଲ୍ଲାରେ ଭାରତ ଲୀଳା ଅନ୍ୟାନ୍ୟ ପ୍ରତିଭାଶାଳୀ ଲୋକସଂଗୀତ ଭରା ନାଟକ । ଏଥିରେ ପରିବେଷଣ ଅବଧି କମ୍ ଓ ସୀମିତ ଚରିତ୍ରକୁ ନେଇ ଏହି ଲୋକ ନାଟକ ଅଭିନୟ କରାଯାଇଥାଏ । ଯଥା– ଅର୍ଜୁନ, ସୁଭଦ୍ରା ଓ ଦ୍ୱାରୀ । ମହାଭାରତରେ ଅର୍ଜୁନ ଓ ସୁଭଦ୍ରାଙ୍କ ବିବାହର ଘଟଣାକୁ ନେଇ ଏହି ଲୀଳାରେ ସଂଗୀତ ଓ ସଂଳାପ ରହିଛି । ଏହାକୁ ଦ୍ୱାରୀ ନାଚ ମଧ୍ୟ କୁହାଯାଇଥାଏ । କାରଣ ସୁଭଦ୍ରା ହରଣରେ ମଧ୍ୟସ୍ଥି ଭୂମିକା ଦ୍ୱାରୀ ନେଇଥାଏ ।

ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀ
ପୁରୀ

# ସାରଳା ଦାସଙ୍କ ସୃଷ୍ଟିରେ ସାମ୍ୟବାଦର ଛବି

ମାନସ କୁମାର ମଲ୍ଲିକ



ଏ ମାଟିର ମହାକବି ସାରଳା ଦାସ ହେଉଛନ୍ତି ଓଡ଼ିଆ ସାହିତ୍ୟର ଆଦିକବି । ଗଜପତି କପିଳେନ୍ଦ୍ର ଦେବ ଏବଂ ପୁରୁଷୋତ୍ତମ ଦେବଙ୍କ ରାଜତ୍ୱ ସମୟରେ ଜୀବିତ ପଞ୍ଚଦଶ ଶତାବ୍ଦୀର ଏହି ମହାନ୍ କବି କେବଳ ଯେ ଓଡ଼ିଆରେ ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ ଭଳି ଗ୍ରନ୍ଥ ରଚନା କରି ଏହି ଭାଷାକୁ ଅମର କରିଦେଇ ଯାଇଛନ୍ତି ତାହା ନୁହେଁ, ବରଂ ସେହି ରଚନାଗୁଡ଼ିକରେ ନିଜର ମୌଳିକ ଚିନ୍ତାଧାରା ଏବଂ ଦୃଷ୍ଟିଭଙ୍ଗୀର ପରିପ୍ରକାଶ ପାଇଁ ନିଜେ ଅମର ହୋଇଯାଇଛନ୍ତି । ଝଙ୍କଡ଼ ପ୍ରଗଣା ଅନ୍ତର୍ଗତ କନକପୁର ନିକଟସ୍ଥ କାଳିନାଗ ଗ୍ରାମ (ମତାନ୍ତରେ ତେନ୍ତୁଳିପଦା ଗ୍ରାମରେ ଜନ୍ମ ଗ୍ରହଣ କରିଥିବା ଏବଂ ପିତୃଦତ୍ତ ସିଦ୍ଧେଶ୍ୱର ପରିଡ଼ା ନାମରେ ପରିଚିତ କବି ବାଗ୍‌ଦେବୀ ସାରଳାଙ୍କ କୃପାରୁ କବିତ୍ୱ ଲାଭ କରିବାପରେ ସାରଳା ଦାସ ନାମରେ ପ୍ରସିଦ୍ଧି ଲାଭ କରିଥିଲେ ।

ଆଦ୍ୟ ଜୀବନରେ ଜଣେ ସାଧାରଣ କୃଷକର ଜୀବନ ବିତେଇଥିବା ଏବଂ ତତ୍କାଳୀନ ସମାଜର ରୀତିନୀତି, ଚଳଣି, ଧର୍ମୀୟ ପରମ୍ପରା, ବ୍ୟବସ୍ଥା ଇତ୍ୟାଦି ସହିତ ପରିଚିତ ଥିବା କବି ନିଜ ଲେଖନୀରେ ସେସବୁ କଥା ଚମତ୍କାର ଭାବରେ ଫୁଟେଇ ପାରିଛନ୍ତି ଏବଂ ସ୍ଥଳ ବିଶେଷରେ ବିଭିନ୍ନ ଉପାଖ୍ୟାନ ଏବଂ ଚରିତ୍ର ମାଧ୍ୟମରେ ସେହି ପ୍ରଥା, ପରମ୍ପରାର ଉଭୟ ସକାରାତ୍ମକ ଓ ନକାରାତ୍ମକ ଦିଗଗୁଡ଼ିକପ୍ରତି ମଧ୍ୟ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ।

ସାରଳା ଦାସ ଥିଲେ ଯଥାର୍ଥରେ ଜଣେ ସମାଜ ବିପ୍ଳବୀ । ସେ ନିଜକୁ ବାରମ୍ବାର ଶୁଦ୍ର ରୂପେ ଘୋଷଣା କରିବାଦ୍ୱାରା ସମାଜର ନିମ୍ନ ପାହାଚର ମଣିଷମାନଙ୍କ ସହିତ ନିଜକୁ ସାମିଲ କରିଦେଇଥିଲେ । କୁଳ ଜନ୍ମକୁ ଆଧାର କରି ଜଣକୁ ଉଚ୍ଚ କିମ୍ବା ନିଚ୍ଚ ଆସନରେ ବସାଇବା ପକ୍ଷରେ ନଥିଲେ ସେ । ନିଜ ରଚିତ ମହାଭାରତ ଓ ଅନ୍ୟାନ୍ୟ କାବ୍ୟଗୁଡ଼ିକରେ ବର୍ଣ୍ଣିତ ଅନେକ ସମ୍ଭ୍ରାନ୍ତ ଚରିତ୍ରମାନଙ୍କୁ ସେ ସ୍ଥଳ ବିଶେଷରେ ଅତି ସାଧାରଣ ସ୍ତରକୁ ନେଇଆସି ଅତି ସାଧାରଣ ଏବଂ ସମାଜର ନିମ୍ନସ୍ତରରେ ଥିବା ଚରିତ୍ରମାନଙ୍କୁ ଗୁରୁତ୍ୱ ଦେଇ ମହନୀୟ କରିଦେଇଛନ୍ତି । ସେ ଦୃଷ୍ଟିରୁ କବି ଥିଲେ ସାମ୍ୟଦର୍ଶୀ । ସେ ସ୍ୱପ୍ନ ଦେଖିଛନ୍ତି ଗୋଟିଏ ଜାତିର, ଯାହା ହେଉଛି ମଣିଷ ଜାତି । ସେଠି ଉଚ୍ଚ ନୀଚ ଭେଦଭାବ ନାହିଁ, ଛୁଆଁ ଅଛୁଁଆ ନାହିଁ, ବଡ଼ ସାନ ନାହିଁ । ସେଠି ସମସ୍ତେ ସମାନ । ଏହି ମଣିଷ ହିଁ ଭଗବାନ । ନାରାୟଣ ସ୍ୱରୂପ ।

> 'ନାରାୟଣ ଆତ୍ମା ଯେ ଅଟଇ ମହାବ୍ରହ୍ମ ।
> ସଂସାର ଅଗାଦକୁ ନାଉକା ଅଟଇଧର୍ମ ।।'
> (ସାରଳା ମହାଭାରତ– ଆଦିପର୍ବ)

ତା'ହେଲେ ମଣିଷମାନଙ୍କ ଭିତରେ ଭେଦଭାବ, ଜାତିଅଜାତି ଆସିଲା କେଉଁଠୁ ? ଏହା ବୋଧହୁଏ ଥିଲା କବି ସାରଳା ଦାସଙ୍କ ଜିଜ୍ଞାସା । ତେଣୁ ସେ ସମାଜର ନୀଚ ବର୍ଣ୍ଣ ବ୍ୟକ୍ତିଙ୍କୁ ଅନେକ ସ୍ଥାନରେ କାହାଣୀ ମାଧ୍ୟମରେ ଦେବପୂଜା ଯୋଗ୍ୟ ସ୍ତରକୁ ନେଇଯିବାର ଦୁଃସାହସ କରିଛନ୍ତି । ବ୍ୟାସଙ୍କ ନିର୍ଦ୍ଦେଶମତେ ଥରେ ସହଦେବ ଶିବଙ୍କ ପୂଜା ପାଇଁ ବନ ମଧ୍ୟରେ ବ୍ରାହ୍ମଣଟିଏ ଖୋଜି ନପାଇବାରୁ ଜନୈକ ଶବର ଜାତୀୟ ଲୋକଙ୍କୁ ନେଇ

ଆସିଲେ । ମାତ୍ର ଯୁଧିଷ୍ଠିର ସମର୍ଥନ କଲେ ନାହିଁ ଫଳରେ ବ୍ୟାସ ଦେବ ସେଠାରେ ଉପସ୍ଥିତ ଥିବା ଶ୍ରୀକୃଷ୍ଣଙ୍କୁ ସେ ସର୍ବଭୂତର ନାଥ ଏବଂ ସମସ୍ତଙ୍କଠାରେ ତାଙ୍କର ଅଂଶ ଥିଲେ ମଧ ଏତେ ଭେଦଭାବ କାହିଁକି ବୋଲି ପ୍ରଶ୍ନ କରିବାରୁ ଶ୍ରୀକୃଷ୍ଣ କହିଛନ୍ତି –

'ନର ନାରାୟଣ ମଞ୍ଚେ ଅବତାର ।
କ୍ଷୟେ ଜୀବତ ତୋଷିବ ସବୁ ୟେକକାର ।।
ବ୍ରହ୍ମାୟେ ୟେହାକୁ ଦିଅ ପଇତା ।
ଯୁଗେ ଯୁଗେ ୟେହାର ପୁରାଣେ ଥାଉ କଥା ।।'
(ମହାଭାରତ – ଆଦିପର୍ବ)

ଏହାପରେ ବ୍ୟାସଦେବ ଉକ୍ତ ଶବର ଜାତୀୟ ଲୋକକୁ ପଇତା ପିନ୍ଧାଇ ତା' ଉପରେ ତୀର୍ଥ ଜଳ ସିଂଚନ କରି ତାକୁ କାଳିନ୍ଦୀ ବ୍ରାହ୍ମଣ ନାମରେ ନାମିତ କରିଛନ୍ତି ।

ଉଦ୍‌ଯୋଗ ପର୍ବରେ ବିଦୁର ପରଜନ୍ମରେ ଚଣ୍ଡାଳଠାରୁ ବ୍ରାହ୍ମଣ ପର୍ଯ୍ୟନ୍ତ ଯେକୌଣସି ଜାତିରେ ଜନ୍ମ ହେଲେ ମଧ ତାଙ୍କର ତିଳେହେଲେ ଦୁଃଖ କି କୁଣ୍ଠା ନାହିଁ ବୋଲି କହିବା, ମୂଷଳୀ ପର୍ବରେ ଜାରା ଶବର ଗୃହରେ ବସୁ ବ୍ରାହ୍ମଣଙ୍କର ଅବସ୍ଥାନ ଓ ଭୋଜନ ଇତ୍ୟାଦି ଉପାଖ୍ୟାନ ସାମ୍ୟ ଓ ମୈତ୍ରୀର ଚିତ୍ର ବହନ କରନ୍ତି । ସାରଳା ଦାସ ଥିଲେ ଶୋଷଣମୁକ୍ତ ଏକ ନୂତନ ସମାଜର ପ୍ରବକ୍ତା । ବଞ୍ଚିତ ଗୋଷ୍ଠୀଙ୍କ ପ୍ରତି ଥିଲା ତାଙ୍କର ଅଶେଷ ଅନୁକମ୍ପା । ମହାଭାରତର ବିରାଟ ପର୍ବରେ ଥିବା ଏକ ଉପାଖ୍ୟାନରୁ ଏହାର ସଂକେତ ମିଳେ । ଅଜ୍ଞାତବାସ କାଳରେ ବିରାଟପୁରରେ ସୁପକାର ରୂପରେ ଥିବା ଭୀମ ନାନା ବ୍ୟଞ୍ଜନ ରନ୍ଧନ କରନ୍ତି ଓ ସମସ୍ତଙ୍କୁ ସମାନ ଦୃଷ୍ଟିରେ ଦେଖି ଖାଇବାକୁ ଦିଅନ୍ତି –

'ସ୍ୱାମୀହୁଂ ଭିକ୍ଷାବାସୀ ପରିଯନ୍ତେ ସମସ୍ତଙ୍କୁ ଏକ ଦୃଷ୍ଟି ।
ତେଣୁ କରି ସମରାଜ୍ୟେ ସାଧୁ ସାଧୁ ଧ୍ୱନିଉଠି ।।'
(ବିରାଟ ପର୍ବ)

ସେହି ସମ ରାଜ୍ୟରେ ବ୍ରାହ୍ମଣ ଚଣ୍ଡାଳ, ରାଜା, ପ୍ରଜା, ସୈନ୍ୟ ସାମନ୍ତ ସମସ୍ତେ ସମାନ । ସମସ୍ତେ ସମାନ ଆସନରେ ବସି ଭୋଜନ କରନ୍ତି । କୌଣସି ପାତର ଅନ୍ତର ନଥାଏ । ଯେଉଁଥିପାଇଁ ଭୀମ ବିରାଟ ରାଜାଙ୍କୁ ଚେତେଇ ଦେଇଛନ୍ତି – 'ସମାନ ଭାବ କଲେ କାରଣ ହୋଇବ ତୋତେ ।' ସାରଳା ଦାସଙ୍କ ସାହିତ୍ୟ କୃତିରେ କଳ୍ପିତ ସମରାଜ୍ୟରେ ମଣିଷ ହିଁ ମୁଖ୍ୟ । ଧନ, କ୍ଷମତା, ପଦ ପଦବୀଦ୍ୱାରା ମନୁଷ୍ୟତ୍ୱକୁ ମପାଯାଇ ପାରେ ନାହିଁ । ସତ୍ୟ, ଧର୍ମ, ନ୍ୟାୟ ଆଦିଦ୍ୱାରା ହିଁ ବିକଶି ଉଠେ ମନୁଷ୍ୟତ୍ୱର ମହିମା । ଏହି କାରଣରୁ ଯୁଧିଷ୍ଠିରଙ୍କ ରାଜସୂୟ ଯଜ୍ଞରେ ଶ୍ରୀକୃଷ୍ଣ ଅନନ୍ତା ପଡ଼ିଆରୀ ହୋଇ ଅତିଥିଭାବେ ଯୋଗ ଦେଇଥିବା ଓ ରାଜାମାନଙ୍କର ପରିଚର୍ଯ୍ୟା କରିଥିବା କଥା ବର୍ଣ୍ଣିତ ହୋଇଅଛି । ଭୀମରାଜ ବଂଶୀୟ କ୍ଷତ୍ରୀ ଏବଂ ବଳଶାଳୀ ହେଲେ ମଧ ସ୍ୱର୍ଗାରୋହଣ ପର୍ବରେ ନିଜେ କ୍ଷେତରୁ ଧାନ ଆଣି ବେଙ୍ଗଳା ପକେଇ ହାତରେ କୁଟି ଚାଉଳ ବାହର କରିବା ଓ ସେହି ଚାଉଳକୁ ରାନ୍ଧି ଶିଖରେଶ୍ୱରଙ୍କୁ ଭୋଗ ଦେବା ବିଷୟ କର୍ମ କ୍ଷେତ୍ରରେ ସାମ୍ୟ ଭାବକୁ ଦର୍ଶାଏ । ଅର୍ଥାତ୍ ସକଳ କର୍ମ ପବିତ୍ର । ରାଜା, ବ୍ରାହ୍ମଣ, ଚଣ୍ଡାଳ, କୃଷକ ଆଦି ସମସ୍ତଙ୍କ କର୍ମ ଯେ ଶୁଦ୍ଧ ଓ ସୁନ୍ଦର ଏକଥା ମହାଭାରତରେ ଚିତ୍ରିତ ଅନେକ ପ୍ରସଙ୍ଗରେ ବହୁ ଭାବରେ ଉଲ୍ଲେଖ କରାଯାଇଛି ।

ସେହିପରି କ୍ଷତ୍ରୀୟ କୁଳରେ ଜନ୍ମ ନହୋଇ ମଧ ଅନେକ ଚରିତ୍ରଙ୍କୁ ସାରଳା ଦାସ ପ୍ରବଳ ପରାକ୍ରମୀ ଯୋଦ୍ଧା ସ୍ତରକୁ ନେଇଯାଇଛନ୍ତି । ମୂଳ ସଂସ୍କୃତ ମହାଭାରତଠାରୁ ଭିନ୍ନ କେତେକ ଉପାଖ୍ୟାନରେ ବର୍ଣ୍ଣିତ ଚରିତ୍ରମାନେ ସାଧାରଣ ଶବର କିମ୍ବା ନାଗକୁଳରେ ଜନ୍ମ ହେଲେ ମଧ ନିଜର ଶକ୍ତି, ପରାକ୍ରମ ଓ ଯୁଦ୍ଧ କୌଶଳ ଯୋଗୁଁ ଅନେକ କ୍ଷତ୍ରୀୟ ବୀରଙ୍କ ପାଇଁ ଆତଙ୍କର କାରଣ ହୋଇଛନ୍ତି । ବେଲାଳସେନ ଓ ଏକଲବ୍ୟ ପ୍ରସଙ୍ଗ ଏହାର ଏକ ଜ୍ୱଳନ୍ତ ଉଦାହରଣ । ଏହାଦ୍ୱାରା ପୁରୁଷକାର ଯେ ଜନ୍ମାନୁମୋଦିତ ତଥା କାହାର ଏକଚାଟିଆ ଅଧିକାର ନୁହେଁ ଏବଂ ନିମ୍ନସ୍ତରର କେହି ଜଣେ ଯେ ବୀରତ୍ୱର ପରାକାଷ୍ଠା ଦେଖାଇପାରେ ସେକଥା କବି ଉଲ୍ଲେଖ କରିଛନ୍ତି ।

ସାରଳା ସାହିତ୍ୟରେ ସାମ୍ୟବାଦର ଏକ ନିଚ୍ଛକ ଦୃଷ୍ଟାନ୍ତ ଦେଖିବାକୁ ମିଳେ ଚଣ୍ଡୀପୁରାଣରେ ବର୍ଣ୍ଣିତ ଅମ୍ବିକା ଚଣ୍ଡାଳ କାହାଣୀରୁ । ଧନ ସମ୍ପତ୍ତି ଏବଂ ପ୍ରାଚୁର୍ଯ୍ୟ ଯେ କେବଳ ସମାଜର ତଥାକଥିତ ଉଚ୍ଚ ଆଉ ସମ୍ଭ୍ରାନ୍ତ ବର୍ଗର ଲୋକମାନଙ୍କ ପାଖରେ ରହିବ ଏବଂ ବଞ୍ଚିତ ଗୋଷ୍ଠୀ ସଦାବେଳେ ନିମ୍ନହସ୍ତ ହୋଇ ଅନ୍ୟର ଦୟା ଭିକ୍ଷା କରିବେ, ସେ କଥାକୁ ପ୍ରଶୟ ଦେଇ ନାହାନ୍ତି ସାରଳା ଦାସ । ତାଙ୍କର କଳ୍ପିତ ଏକ ଉପାଖ୍ୟାନରେ ଅମ୍ବିକା ନାମକ ଜଣେ ନିମ୍ନ ବର୍ଗର ବ୍ୟକ୍ତିଙ୍କୁ ଅତ୍ୟନ୍ତ ଧନୀ ବୋଲି ଚିତ୍ରଣ କରିଛନ୍ତି ସେ । ଅମ୍ବିକା ଜାତିରେ ଚଣ୍ଡାଳ, ସେ କିନ୍ତୁ ପ୍ରଚୁର ଧନର ଅଧିକାରୀ । ସେହି ସମୟରେ ନଘୋଷ (ନହୁଷ) ରାଜାଙ୍କ ରାଜ୍ୟରେ ଦୁର୍ଭିକ୍ଷ ପଡ଼ିଲା । ଖାଦ୍ୟାଭାବ ଯୋଗୁଁ ରାଜ୍ୟରେ ହାହାକାର ପଡ଼ିଗଲା । ବ୍ରହ୍ମାଙ୍କ ନିର୍ଦ୍ଦେଶକ୍ରମେ ନାରଦ ଚାରିଆଡ଼େ ବୁଲି ଧାନ ଓ ଅନ୍ୟାନ୍ୟ ଶସ୍ୟ ଠାବ କରିବାକୁ ଲାଗିଲେ । ଅମ୍ବିକା ଚଣ୍ଡାଳର ପ୍ରଚୁର

ଧାନଗଦା ଦେଖି ସେ ତାକୁ ଧାନ ଦେବାପାଇଁ କହିଲେ । ମାତ୍ର ଅମ୍ବିକା ଚଣ୍ଡାଳ ଏକ ସର୍ତ୍ତ ରଖିଲା ଯେ ତା'ର ଅରୁନ୍ଧତୀ ନାମରେ ଏକ ସୁନ୍ଦରୀ ଗୁଣବତୀ କନ୍ୟା ଅଛି, ତା' ପାଇଁ ଉପଯୁକ୍ତ ବର ମିଳୁନାହିଁ । ଯେଉଁ ଉପଯୁକ୍ତ ବର ତା' କନ୍ୟାକୁ ବିବାହ କରିବ ତାକୁ ସେ ଯୌତୁକ ସ୍ୱରୂପ ସମସ୍ତ ଧନଧାନ୍ୟ ଦେଇଦେବେ । ଏକଥା ନାରଦ ଫେରିଆସି ବ୍ରହ୍ମାଙ୍କୁ କହିଲେ । ତା'ପରେ ବ୍ରହ୍ମାଙ୍କ ନିର୍ଦ୍ଦେଶକ୍ରମେ ନିଜେ ରାଜା ନଘୋଷ ଧାନ ପାଇଁ ଅମ୍ବିକା ପାଖକୁ ଗଲେ । ମାତ୍ର ଅମ୍ବିକା ନଘୋଷକଙ୍କୁ ମଧ୍ୟ ସେହି ଏକାକଥା କହିଲା । ନଘୋଷ ରାଜି ହେଲେ ନାହିଁ । ସେ ସୋମବଂଶୀ ରାଜା । ଚଣ୍ଡାଳ କନ୍ୟାକୁ ବିବାହ କରି ବଂଶ, କୁଳ ଧର୍ମକୁ ନଷ୍ଟ କରିବେ କିପରି ? ତେଣୁ ବ୍ରହ୍ମା ଏଥର ବଶିଷ୍ଠଙ୍କୁ ପଠାଇଲେ । ଅମ୍ବିକା ବଶିଷ୍ଠଙ୍କର ଆଦର ସତ୍କାର କଲା, ତାଙ୍କ ସହିତ ଧର୍ମ ଚର୍ଚ୍ଚା କରି ତାଙ୍କୁ ମୁଗ୍ଧକଲା । ବଶିଷ୍ଠ ଧାନ ମାଗନ୍ତେ ଅମ୍ବିକା ତା'ର ପୁରୁଣା ସର୍ତ୍ତକୁ ଦୋହରାଇଲା । ବଶିଷ୍ଠ ମଧ୍ୟ ଫେରି ଆସିଲେ, ମାତ୍ର ବ୍ରହ୍ମାଙ୍କ ପରାମର୍ଶ ଅନୁଯାୟୀ ସେ ପୁନଶ୍ଚ ଅମ୍ବିକା ଘରକୁ ଅନ୍ୟ ବ୍ରହ୍ମର୍ଷି ଓ ପଣ୍ଡିତମାନଙ୍କ ସହିତ ଯାଇ ଅରୁନ୍ଧତୀଙ୍କ ପାଣି ଗ୍ରହଣ କଲେ । ଯୌତୁକ ସ୍ୱରୂପ ପାଇଥିବା ସମସ୍ତ ଧାନ ନଘୋଷଙ୍କ ରାଜ୍ୟର ପ୍ରଜାମାନଙ୍କ ଜୀବନ ରକ୍ଷା କଲା । ଏହି ଉପାଖ୍ୟାନଦ୍ୱାରା ସାରଳା ଦାସ ଦର୍ଶାଇଛନ୍ତି ଯେ ସବୁ ମଣିଷ ଯେ ସମାନ ଏବଂ ଜାତି କୁଳକୁ ନେଇ ବୃଥା ଅଭିମାନଦ୍ୱାରା ପ୍ରଜା ଶାସନ କରିହୁଏ ନାହିଁ ।

ସାମ୍ୟ, ମୈତ୍ରୀ ଏବଂ ଐକ୍ୟର ପରିଚୟ ବହନ କରୁଥିବା ଏହିପରି ଅନେକ ପ୍ରସଙ୍ଗ ସାରଳା ଦାସଙ୍କ ସାହିତ୍ୟ କୃତିଗୁଡ଼ିକରେ ଅନେକ ସ୍ଥାନରେ ଚିତ୍ରିତ ହୋଇଛି । ଶୁଦ୍ର, କୃଷକ ସାରଳା ଦାସ ସମାଜର ନିମ୍ନ ପାହାଚରୁ ଆବିର୍ଭୂତ ହୋଇ ସେକାଳର ବିଜ୍ଞ ପଣ୍ଡିତମାନଙ୍କର ସଂସ୍କୃତିପ୍ରୀତି ଓ ପ୍ରାନ୍ତୀୟ ଭାଷାପ୍ରତି ଥିବା ଘୃଣାକୁ ଉପଲବ୍ଧି କରିଥିଲେ ଓ ସମୟର ଆହ୍ୱାନକୁ ଗ୍ରହଣ କରି ଲୋକ କଥିତ ଓଡ଼ିଆ ଭାଷାରେ ଶାସ୍ତ୍ର ରଚନା କରିଥିଲେ । ସେ ଓଡ଼ିଆ ସାହିତ୍ୟର ଆଦି ନିର୍ମାତା । ତାଙ୍କର ସାହିତ୍ୟ ଆଜି ପର୍ଯ୍ୟନ୍ତ ସବୁ ଶ୍ରେଣୀର ଲୋକଙ୍କୁ ପ୍ରେରଣା ଦେଉଛି, ଓଡ଼ିଆ ଭାଷାକୁ ଭଲ ପାଇବା ପାଇଁ ପ୍ରକୃତରେ ସେ ଅମର ।

ଗ୍ରା/ପୋ– ସର୍ଦ୍ଦୋଳା
ଭା–କନକପୁର (ଝଙ୍କଡ଼)
ଜି.–ଜଗତସିଂହପୁର

# ଇ–ରେଜିଷ୍ଟ୍ରେସନ ପ୍ରକଳ୍ପ ଉଦ୍‌ଘାଟିତ

ରାଜ୍ୟର ଜମିଜମାଗୁଡ଼ିକର ରେଜିଷ୍ଟ୍ରେଶନ କାର୍ଯ୍ୟକୁ ଇଲେକ୍‌ଟ୍ରୋନିକ୍ ମାଧ୍ୟମରେ କରିବା ପାଇଁ ଏକ ଆଧୁନିକ ବ୍ୟବସ୍ଥା ଇ–ରେଜିଷ୍ଟ୍ରେସନ ପ୍ରକଳ୍ପ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଭୁବନେଶ୍ୱରଠାରେ ଉଦ୍‌ଘାଟନ କରିଛନ୍ତି । ଏହି ବ୍ୟବସ୍ଥାଦ୍ୱାରା ରାଜସ୍ୱ ବିଭାଗ ପକ୍ଷରୁ ହେଉଥିବା ଜମି ରେଜିଷ୍ଟ୍ରେସନ କାର୍ଯ୍ୟ ସୁରୁଖୁରୁରେ ଓ ଅତିଶୀଘ୍ର ହୋଇପାରିବ ।

ମୁଖ୍ୟମନ୍ତ୍ରୀ କହିଛନ୍ତି ଯେ, ଏହି ବ୍ୟବସ୍ଥା ରାଜ୍ୟର ସମସ୍ତ ୧୭୭ଟି ରେଜିଷ୍ଟ୍ରେସନ ଅଫିସ୍‌ରେ କାର୍ଯ୍ୟକାରୀ ହେବ । ତଦ୍ୱାରା ରେଜିଷ୍ଟ୍ରେସନ କାର୍ଯ୍ୟ ତ୍ୱରାନ୍ୱିତ, ସରଳ ଓ ନିର୍ଭୁଲ ହୋଇପାରିବ । ଏକ ଘଣ୍ଟାରୁ କମ୍ ସମୟ ମଧ୍ୟରେ ରେଜିଷ୍ଟ୍ରେସନ ହେବା ସହିତ ଏନ୍‌କମ୍‌ବ୍ରାନ୍ସ ସାର୍ଟିଫିକେଟ୍ (ଇସି) ଓ ପ୍ରାମାଣିକ ନକଲ ମଧ୍ୟ ମିଳିପାରିବ । ଏହି ବ୍ୟବସ୍ଥାଦ୍ୱାରା ଅନଧିକାରପ୍ରାପ୍ତ ଜମି ବିକ୍ରିକୁ ମଧ୍ୟ ରୋକାଯାଇ ପାରିବ । ଏହି ନୂଆ ବ୍ୟବସ୍ଥାରେ ଅନୁସୂଚିତ ଜାତି ଓ ଜନଜାତିମାନଙ୍କର ଜମି ବିକ୍ରି କ୍ଷେତ୍ରରେ ଉପଯୁକ୍ତ ତଦାରଖ କରାଯାଇପାରିବ ବୋଲି ମୁଖ୍ୟମନ୍ତ୍ରୀ କହିଛନ୍ତି । ଓକାକ୍ ଓ ଆଇ.ଏଲ୍.ଆଣ୍ଡ୍.ଏଫ୍.ଏସ୍.ଦ୍ୱାରା ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଓଡ଼ିଶା ଇ–ଗଭର୍ଣ୍ଣାନ୍ସ ସର୍ଭିସେସ୍ ଲିମିଟେଡ୍ (ଓ.ଇ.ଏସ୍.ଏଲ୍.) ଦ୍ୱାରା ଏହି ପ୍ରକଳ୍ପ କାର୍ଯ୍ୟକାରୀ ହେଉଛି । ଏହି ଉଦ୍‌ଘାଟନ ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ମନ୍ତ୍ରୀ ଶ୍ରୀ ସୂର୍ଯ୍ୟନାରାୟଣ ପାତ୍ର, ସୂଚନା ଓ ପ୍ରଯୁକ୍ତି ରାଷ୍ଟ୍ରମନ୍ତ୍ରୀ ଶ୍ରୀ ରମେଶ ଚନ୍ଦ୍ର ମାଝି, ରାଜସ୍ୱ ବିଭାଗ ସଚିବ ଶ୍ରୀ ରାଜକୁମାର ଶର୍ମା, ଆଇ.ଟି. ବିଭାଗ ସଚିବ ଶ୍ରୀ ପି.କେ. ମହାପାତ୍ର ଏବଂ ଆଇ.ଏଲ୍. ଆଣ୍ଡ୍ ଏଫ୍.ଏସ୍.ର ନିର୍ଦ୍ଦେଶକ ଶ୍ରୀ ଦିନେଶ ଗୁପ୍ତା ପ୍ରମୁଖ ଯୋଗ ଦେଇଥିଲେ । ଶେଷରେ ଆଇ.ଜି., ରେଜିଷ୍ଟ୍ରେସନ ସି.ଟି.ଏମ୍. ସୁଗୁଣା ଧନ୍ୟବାଦ ଦେଇଥିଲେ । କାର୍ଯ୍ୟକ୍ରମ ଶେଷରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ସାମ୍ବାଦିକମାନଙ୍କୁ କହିଥିଲେ ଯେ, ରାଜ୍ୟର ଜମିଜମା ରେକର୍ଡ଼ ସଂରକ୍ଷଣ ଓ ବିକ୍ରିବଟା କ୍ଷେତ୍ରରେ ଏହି ନୂତନ ପ୍ରକଳ୍ପ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବ । ରାଜସ୍ୱ ମନ୍ତ୍ରୀ ଶ୍ରୀ ପାତ୍ର କହିଥିଲେ ଯେ, ଏହି ନୂତନ ବ୍ୟବସ୍ଥା ଗୋଟିଏ ପକ୍ଷରେ ଜମିଜମା ରେଜିଷ୍ଟ୍ରେସନ ବେଳେ ହେଉଥିବା ଦୁର୍ନୀତିକୁ ଦୂର କରିବ ଏବଂ ଲୋକଙ୍କୁ ସୁବିଧାରେ ନଥିପତ୍ର ମିଳିପାରିବ । ଏହି ନୂତନ ବ୍ୟବସ୍ଥାରେ ଜଣେ ବ୍ୟକ୍ତି ପ୍ରାୟ ଅଧ ଘଣ୍ଟା ମଧ୍ୟରେ ଜମି ରେଜିଷ୍ଟ୍ରେସନ ଓ ଗୋଟିଏ ମିନିଟ୍‌ରେ ଏନକମବ୍ରାନ୍ସ ସାର୍ଟିଫିକେଟ୍ ପାଇପାରିବେ । ସବୁ ଜମିଜମା ରେକର୍ଡ଼ ଓ ଜମିର ମୂଲ୍ୟ ପ୍ରଭୃତିକୁ କମ୍ପ୍ୟୁଟରୀକରଣ କରାଯାଇଥିବା ଏହି ସୁବିଧା ଜନସାଧାରଣଙ୍କୁ ଉପଲବ୍ଧ ହେବ ବୋଲି ଆଇ.ଟି. ସଚିବ କହିଥିଲେ । ଏହି କାର୍ଯ୍ୟକ୍ରମରେ ରାଜସ୍ୱ ବିଭାଗ ୫ ବର୍ଷରେ ୮୦ କୋଟି ଟଙ୍କା ବ୍ୟୟ କରିବ । ସବୁ ସବ୍‌ରେଜିଷ୍ଟ୍ରାର ଅଫିସ୍‌କୁ କମ୍ପ୍ୟୁଟରଦ୍ୱାରା ସଂଯୋଗ କରାଯାଇ ରେଜିଷ୍ଟ୍ରେସନ ବ୍ୟବସ୍ଥା ଆରମ୍ଭ କରାଯାଇଛି ।

# ଗାନ୍ଧିଜୀ ଓ ଓଡ଼ିଆ ନାରୀ

ପବିତ୍ର ମୋହନ ବାରିକ

**ଜା**ତିର ପିତା ମହାମାନବ ମହାତ୍ମା ଗାନ୍ଧୀ ବିଂଶ ଶତାବ୍ଦୀରେ ବିଶ୍ୱର ଏକ ବିସ୍ମୟ ବ୍ୟକ୍ତିତ୍ୱ । ଦେବଦତ୍ତ ପ୍ରତିଭାର ଅଧିକାରୀ ମହାନ କାରୁଣିକ, ସତ୍ୟର ପୂଜାରୀ ଗାନ୍ଧିଜୀ ଭାରତୀୟ ନାରୀ ସମାଜର ବିକାଶ, ଉନ୍ନତି, ସମୃଦ୍ଧି ଓ ଅଗ୍ରଗତିରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ । କୁସଂସ୍କାର, ଅନ୍ଧବିଶ୍ୱାସ, ହୀନମାନ୍ୟତା ଓ ଅସୂୟାଭାବ ନାରୀମାନଙ୍କ ମନରୁ ଦୂର କରିବା ନିମନ୍ତେ ନାରୀ ଶିକ୍ଷା ଯେ ଏକାନ୍ତ ଅପରିହାର୍ଯ୍ୟ ଏକଥା ସେ ଭଲ ଭାବରେ ହୃଦୟଙ୍ଗମ କରିଥିଲେ । ଗାନ୍ଧିଜୀ ଥିଲେ ନାରୀ ସଶକ୍ତିକରଣର ସାର୍ଥକ ନେତା । ସାମାଜିକ କୁସଂସ୍କାର ବିରୋଧରେ ସ୍ୱର ଉତ୍ତୋଳନ କରିବା ପାଇଁ ସେ ନାରୀମାନଙ୍କୁ ଆହ୍ୱାନ କରିଥିଲେ । ନାରୀମାନଙ୍କ ପ୍ରତି ଅତ୍ୟାଚାର, ଅବିଚାର ଓ ନିଷ୍ଠୁରତାକୁ ଗାନ୍ଧିଜୀ ଦୃଢ଼ ଭାବେ ନିନ୍ଦା କରିଥିଲେ । ଏକ ପ୍ରଗତିଶୀଳ ସମାଜ ଓ ସମୃଦ୍ଧ ରାଷ୍ଟ୍ର ଗଠନରେ ନାରୀମାନଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ ଏକଥା ସେ ଭଲଭାବରେ ହୃଦୟଙ୍ଗମ କରିଥିଲେ । ଶୋଷଣ, କଷଣ ଓ ନିର୍ଯ୍ୟାତନାରୁ ନାରୀ ଜାତିକୁ ମୁକ୍ତି କରି ସେମାନଙ୍କୁ ସମାଜ ଗଠନରେ ବିନିଯୋଗ କରିବା ନିମନ୍ତେ ଉଦ୍ୟମ କରି ସେ ଦିଗରେ ଅଶେଷ ସଫଳତା ଅର୍ଜନ କରିଥିଲେ ।



ଭାରତୀୟ ନାରୀ ଜାଗରଣ ଓ ଆନ୍ଦୋଳନ କ୍ଷେତ୍ରରେ ଗାନ୍ଧିଜୀଙ୍କର ଭୂମିକା ଅତୁଳନୀୟ । ନାରୀ ଜାତିର ସମ୍ମାନ ଓ ସ୍ୱାଭିମାନ ପ୍ରତିଷ୍ଠା ସହିତ ସେମାନଙ୍କର ରାଜନୈତିକ ଓ ସାମାଜିକ ପ୍ରତିଷ୍ଠା ଦିଗରେ ସେ ଅନେକ କାର୍ଯ୍ୟ କରିଯାଇଛନ୍ତି । ଗାନ୍ଧିଜୀ ଯେଉଁ ଆଦର୍ଶ, ଚିନ୍ତାଧାରା, ନୀତି ଓ କାର୍ଯ୍ୟପନ୍ଥା ସ୍ଥିର କରିଥିଲେ ତାହାକୁ କାର୍ଯ୍ୟକାରୀ କରିବା ଦିଗରେ ଅନେକ ନାରୀ ନିଷ୍ଠାର ସହିତ ଉଦ୍ୟମ କରିଛନ୍ତି । ସେ ନାରୀମାନଙ୍କ ମନରେ ଶକ୍ତି, ସାହସ ଓ ସ୍ୱାଭିମାନ ସୃଷ୍ଟି କରିବା ଦିଗରେ ସମର୍ଥ ହୋଇଥିଲେ । ତାଙ୍କର ଐଶ୍ୱରୀୟ ବ୍ୟକ୍ତିତ୍ୱର ପ୍ରଭାବରେ ଅନୁପ୍ରାଣୀତ ଓ ପ୍ରଭାବିତ ହୋଇ ଅନେକ ନାରୀ ଦେଶମୁକ୍ତି, ସାମାଜିକ ଓ ରଚନାତ୍ମକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ନିଜର ସୁଖ, ଶାନ୍ତି, ସାମାଜିକ ପ୍ରତିଷ୍ଠା, ଭୋଗ, ବିଳାସ ଓ ଆମୋଦ-ପ୍ରମୋଦ ପ୍ରଭୃତିକୁ ପରିହାର କରି ମହିୟସୀ ମହିଳାମାନେ ଗାନ୍ଧିଜୀଙ୍କର ନେତୃତ୍ୱପ୍ରତି ଦୃଢ଼ ଆସ୍ଥା ଓ ବିଶ୍ୱାସ ସ୍ଥାପନ କରି ସମାଜ ସେବାରେ ନିଜକୁ ହଜାଇ ଦେଇଥିଲେ ।

ଗାନ୍ଧିଜୀ ନାରୀମାନଙ୍କୁ ସ୍ୱାଧୀନତା ସଂଗ୍ରାମର ପରିସରକୁ ଆକର୍ଷିତ କରି ସେମାନଙ୍କ ହୃଦୟରେ ଜାତୀୟତା, ଦେଶପ୍ରେମ ଓ ସ୍ୱଦେଶପ୍ରୀତି ଭାବନାକୁ ଉଜ୍ଜୀବିତ କରିଥିଲେ । ଭାରତୀୟ ରାଜନୀତିରେ ଗାନ୍ଧିଜୀଙ୍କର ଆବିର୍ଭାବ ପୂର୍ବରୁ ଦେଶରେ ନାରୀ ଜାଗରଣ ଓ ସଚେତନତା ସେଭଳି କୌଣସି ବିଶେଷ ସଫଳତା ଅର୍ଜନ କରିପାରିନଥିଲା । ଗାନ୍ଧିଜୀଙ୍କ ମହାମନ୍ତ୍ରରେ ଅଭିମନ୍ତ୍ରିତ ହୋଇ ନାରୀମାନେ ଘରର ଏରୁଣ୍ଡିବନ୍ଧ ଡେଇଁ ରାଜରାସ୍ତାରେ ସାମ୍ରାଜ୍ୟବାଦୀ ଶକ୍ତି ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ କରିବା ପାଇଁ ଆଗେଇ ଆସିଥିଲେ । ଏହା ସହିତ ସେମାନେ ସାମାଜିକ କଳଙ୍କ ଯଥା- ନାରୀ ନିର୍ଯ୍ୟାତନା, ଯୌତୁକ ପ୍ରଥା, ବାଲ୍ୟ ବିବାହ ଓ ସତୀଦାହ ପ୍ରଥା ବିରୋଧରେ ଜନମତ ସୃଷ୍ଟି କଲେ । ସ୍ୱାଧୀନତା ସଂଗ୍ରାମରୂପକ ମହାନାଟକର ନିର୍ଦ୍ଦେଶକ

ଗାନ୍ଧିଜୀଙ୍କ ନେତୃତ୍ୱରେ ନାରୀମାନେ ସମସ୍ତ ସାମାଜିକ ପ୍ରତିବନ୍ଧକକୁ ଭ୍ରୂକ୍ଷେପ ନକରି ସାହସର ସହିତ ଏଥିରେ ଅଂଶ ଗ୍ରହଣ କରିଥିଲେ । ଗାନ୍ଧିଜୀଙ୍କର ସମୟରୁ ନାରୀ ଆନ୍ଦୋଳନ ସଚେତନତା ଓ ଜାଗରଣର ମହାନପର୍ବ ପ୍ରସ୍ତୁତ ହେଲା । ଗାନ୍ଧିଜୀ ଥରେ ଉଲ୍ଲେଖ କରିଥିଲେ – 'ଯେତେବେଳେ ଭାରତର ସ୍ୱାଧୀନତା ସଂଗ୍ରାମର ଇତିହାସ ରଚନା କରାଯିବ ଭାରତୀୟ ନାରୀମାନଙ୍କର ଅବଦାନ ଏଥିରେ ମୁଖ୍ୟ ସ୍ଥାନ ଅଧିକାର କରିବ ।'

ଗାନ୍ଧିଜୀ ବିଭିନ୍ନ ପର୍ଯ୍ୟାୟରେ ଓଡ଼ିଶାକୁ ଗସ୍ତ କରି ବିଶେଷ କରି ନାରୀମାନଙ୍କ ହୃଦରେ ଜାତୀୟତା, ଦେଶଭକ୍ତି ଓ ସମାଜ ସେବାର ଭାବାବେଗକୁ ଜାଗ୍ରତ କରିଥିଲେ । ଓଡ଼ିଆ ନାରୀମାନେ ଗାନ୍ଧିଜୀଙ୍କର ବଳିଷ୍ଠ ବ୍ୟକ୍ତିତ୍ୱରେ ଅନୁପ୍ରାଣୀତ ଓ ଆକର୍ଷିତ ହୋଇ ଦେଶ ମୁକ୍ତି ପାଇଁ ମୁକ୍ତି ଯୁଦ୍ଧରେ ନିର୍ଭୀକ ଯୋଦ୍ଧା ରୂପେ ଯୋଗଦାନ କରିଥିଲେ । ଓଡ଼ିଆ ରମଣୀମାନଙ୍କୁ ଦୁଃସାହସୀ, ସ୍ୱାଭିମାନୀ ଓ ସମାଜସେବୀ କରିବା ଦିଗରେ ଗାନ୍ଧିଜୀଙ୍କର ପ୍ରଚ୍ଛନ୍ନ ଭୂମିକା ରହିଛି କେହି ଅସ୍ୱୀକାର କରିପାରିବେ ନାହିଁ । ଗାନ୍ଧିଜୀ ସାତଥର ପବିତ୍ର ଓଡ଼ିଶା ମାଟିକୁ ଗସ୍ତ କରିଥିଲେ । ପୁଣ୍ୟାତ୍ମା ପଣ୍ଡିତ ଗୋପବନ୍ଧୁ ଦାସଙ୍କ ନିମନ୍ତ୍ରଣ ରକ୍ଷା କରି ମହାତ୍ମା ଗାନ୍ଧୀ ୧୯୨୧ ମସିହା ମାର୍ଚ୍ଚ ମାସ ୨୩ ତାରିଖ ଦୋଳପୂର୍ଣ୍ଣିମା ଦିନ ପ୍ରଥମ କରି ଓଡ଼ିଶାର ଐତିହାସିକ ସହର କଟକରେ ପଦାର୍ପଣ କଲେ । ମାର୍ଚ୍ଚ ମାସ ୨୪ ତାରିଖ ଦିନ କଟକ ବିନୋଦ ବିହାରୀ ମନ୍ଦିର ପରିସରରେ ଗାନ୍ଧିଜୀ ମହିଳାମାନଙ୍କର ଏକ ସ୍ୱତନ୍ତ୍ର ସଭାରେ ଉଦ୍‌ବୋଧନ ଦେଇଥିଲେ । ସେ ତାଙ୍କ ବକ୍ତବ୍ୟରେ ଉଲ୍ଲେଖ କରିଥିଲେ – 'ଜଗତରେ କିଛି କାମ କରିବାକୁ ଇଚ୍ଛା କରୁଥିଲେ ଦେହ ସଜାଇବାର ନିର୍ବୋଧତାକୁ ଛାଡ଼ିବାକୁ ହେବ । ପୁରୁଷ କେବେ ହେଲେ ନାରୀକୁ ନିଜର ଖେଳ କଣ୍ଢେଇ କରି ରଖିପାରିବ ନାହିଁ । ମୁଁ ଯଦି ଜଣେ ନାରୀ ହୋଇଥାନ୍ତି ନିଶ୍ଚୟ ଏହା ବିରୋଧରେ ବିଦ୍ରୋହ କରନ୍ତି । ଆପଣମାନେ ସୌଖୀନତାକୁ ବଡ଼ କରନ୍ତୁ ନାହିଁ । ଏସବୁ ଗହଣାଗାଣ୍ଠି ଆଦର ଛାଡ଼ି ଦିଅନ୍ତୁ । ଅନ୍ତରର ସୁଗନ୍ଧି ସବୁଠାରୁ ବେଶୀ ବାସ ଚହଟାଇ ପାରିବ ଏବଂ ତାହାରିଦ୍ୱାରା ଆପଣମାନେ କେବଳ ପୁରୁଷକୁ ନୁହେଁ ସମଗ୍ର ମାନବ ଜାତିକୁ ବଶ କରି ପାରିବେ ।'

ବିନୋଦ ବିହାରୀ ମନ୍ଦିର ପରିସରରେ ଗାନ୍ଧିଜୀ ଓଡ଼ିଆ ନାରୀମାନଙ୍କୁ ଦେଇଥିବା ଅଭିଭାଷଣ ୧୯୨୧ ମସିହା ମାର୍ଚ୍ଚ ୨୮ ତାରିଖରେ ଗୋଟିଏ ସମ୍ବାଦପତ୍ରରେ ପ୍ରକାଶିତ ହୋଇଥିଲା । ଇତିହାସ ପ୍ରସିଦ୍ଧ ସେହି ନାରୀ ସଭାରେ ପ୍ରାୟ ୪୦ ଜଣ ମହିଳା ଅଂଶ ଗ୍ରହଣ କରିଥିଲେ । ସରୋଜିନୀ ଚୌଧୁରୀ, ସରଳା ଦେବୀ, ହିରଣ୍ୟମୟୀ ସେନାପତି, ରମାଦେବୀ ଓ ହୈମବତୀ ଦେବୀ ପ୍ରଭୃତି ସୁନାମଧନ୍ୟା ନାରୀମାନେ ଗାନ୍ଧିଜୀଙ୍କ ସଭାରେ ଯୋଗଦାନ କରିଥିଲେ । ସେହି ଐତିହାସିକ ସଭା ଆୟୋଜନର ସମସ୍ତ ବ୍ୟବସ୍ଥା ହୈମବତୀ ଦେବୀ କରିଥିଲେ । ପ୍ରଧାପକ ମୋହିନୀ ମୋହନ ସେନାପତିଙ୍କର ସହଧର୍ମିଣୀ ସେହି ଅବସରରେ ଏକ ଦେଶାତ୍ମବୋଧକ ସଂଗୀତ ଗାନ କରିଥିଲେ । ଫକୀରମୋହନ ସେନାପତିଙ୍କର ସଂପର୍କୀୟା ସରୋଜିନୀ ଚୌଧୁରୀଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ସେ ନାରୀମାନଙ୍କୁ ଅନୁରୋଧ କରିଥିଲେ ସ୍ୱାଧୀନତା ସଂଗ୍ରାମରୂପକ ପବିତ୍ର କାର୍ଯ୍ୟରେ ନିଜକୁ ଉତ୍ସର୍ଗିକୃତ କରିବା ସହିତ ହରିଜନ ସଂପ୍ରଦାୟର ସାମାଜିକ ଓ ଅର୍ଥନୈତିକ ବିକାଶରେ ସହାୟତା ପ୍ରଦାନ କରିବା ପାଇଁ । ସରଳା ଦେବୀ ସେହିଦିନଠାରୁ ଖଦି ଲୁଗା ପରିଧାନ କରି କଂଗ୍ରେସର ସଭ୍ୟା ପଦ ଗ୍ରହଣ କରିଥିଲେ । ସରଳା ଦେବୀଙ୍କର ଅନୁରୋଧରେ ସେହି ସଭାରେ ଉପସ୍ଥିତ ଥିବା ଧନାଢ୍ୟ ମହିଳାମାନେ କାନଫୁଲ, ମୁଦି ଓ ଅନ୍ୟାନ୍ୟ ସୁନା ଗହଣା ହରିଜନ ପାଣ୍ଠିକୁ ଦାନ କରିଥିଲେ । ଉପସ୍ଥିତ ବାଦାନ୍ୟ ମହିଳାମାନେ ଏକ ହଜାର ଟଙ୍କା ମଧ ସେହି ମହତ୍ କାର୍ଯ୍ୟ ପାଇଁ ଦାନ କରିଥିଲେ । ଷାଠିଏରୁ ସତୁରୀ ଭରି ପର୍ଯ୍ୟନ୍ତ ଓଜନର ଗହଣା ସଂଗ୍ରହ କରାଯାଇଥିଲା । ରମା ଦେବୀ ତାଙ୍କ ଘରୁ ଅରଟରେ କାଟି କରି ଆଣିଥିବା ସୂତା ବିଡ଼ାକୁ ଗାନ୍ଧିଜୀଙ୍କୁ ପ୍ରଦାନ କରିଥିଲେ । ସେ ଦିନ ଓଡ଼ିଆ ନାରୀମାନଙ୍କର ଏହି ମହାନୁଭବତାର ପରିଚୟ ପାଇ ଗାନ୍ଧିଜୀ ଅତୀବ ସନ୍ତୋଷ ଲାଭ କରିଥିଲେ ।

ପ୍ରଥମ ଥର ଲାଗି ଓଡ଼ିଆ ନାରୀମାନେ ସେହି ସାର୍ବଜନୀନ ସଭାରେ ଯୋଗଦାନ କରି ଇତିହାସରେ ଏକ ଉଲ୍ଲେଖନୀୟ ଅଧ୍ୟାୟ ସୃଷ୍ଟି କରିଥିଲେ । ଗାନ୍ଧିଜୀଙ୍କ ସଭାରେ ଯୋଗ ଦେଇଥିବା ନାରୀମାନେ ପରବର୍ତ୍ତୀ ଦଶ ବର୍ଷ ମଧ୍ୟରେ ସ୍ୱାଧୀନତା ସଂଗ୍ରାମ, ରାଜନୀତି, ସମାଜସେବା, ସଂସ୍କାର ଓ ସାହିତ୍ୟ କ୍ଷେତ୍ରରେ ସଫଳତାର ଶୀର୍ଷ ସ୍ଥାନକୁ ସ୍ପର୍ଶ କରିପାରିଥିଲେ । ଗାନ୍ଧିଜୀ ପୁରୀରେ ପହଞ୍ଚିବା ପରେ ତାଙ୍କୁ ଅଭୂତପୂର୍ବ ସ୍ୱାଗତ ଓ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଘର ଭିତରେ ଥାଇ ମହିଳାମାନେ ହୁଳହୁଳି ଦେଇ ତାଙ୍କୁ ଅଭିନନ୍ଦନ ଜ୍ଞାପନ କରିଥିଲେ । ମାର୍ଚ୍ଚ ୨୭ ତାରିଖରେ ଗାନ୍ଧିଜୀ ପୁରୀରେ ଏକ ମହିଳା ସଭାରେ ଉଦ୍‌ବୋଧନ ଦେଇଥିଲେ । ଗାନ୍ଧିଜୀଙ୍କଦ୍ୱାରା ଅନୁପ୍ରାଣୀତ ହୋଇ ରମାଦେବୀ ସାମାଜିକ କଳଙ୍କ ତଥା ଘୃଣ୍ୟ ପ୍ରଥା ଛୁଆଁଅଛୁଆଁ ଭେଦଭାବ ବିରୁଦ୍ଧରେ ସଂଗ୍ରାମ ଆରମ୍ଭ କଲେ । 'ଅସ୍ପୃଶ୍ୟତା ନିବାରଣ ସମିତି'

ନାମକ ଏକ ଅନୁଷ୍ଠାନ ଗଠନ କରାଯାଇ ତାହାରି ମାଧ୍ୟମରେ ରଚନାତ୍ମକ କାର୍ଯ୍ୟ ଆରମ୍ଭ ହେଲା । ସେହି ସମିତିର ସଭାପତି ବାଲୁଙ୍କେଶ୍ୱର ଆଚାର୍ଯ୍ୟ, ସଂପାଦକ ସତ୍ୟନାରୟଣ ସେନଗୁପ୍ତ ଓ ଯୁଗ୍ମ ସଂପାଦକ ରମାଦେବୀ ଥିଲେ । ପରେ ଏହି ସମିତିର ନାମକରଣ 'ହରିଜନ ସେବା ସଂଘ' ରଖାଯାଇଥିଲା । ହରିଜନମାନଙ୍କ ଉଦ୍ଦେଶ୍ୟରେ ସଂଗଠିତ ରଚନାତ୍ମକ କାର୍ଯ୍ୟକୁ ରମାଦେବୀ ହିନ୍ଦୀରେ ଲେଖି ଗାନ୍ଧିଜୀଙ୍କ ନିକଟକୁ ପଠାଉଥିଲେ । ଗାନ୍ଧିଜୀଙ୍କଦ୍ୱାରା ପ୍ରକାଶିତ 'ହରିଜନ' ପତ୍ରିକାରେ ୧୯୩୩ ମସିହା ମାର୍ଚ୍ଚ ୨୫ ତାରିଖରେ ଗାନ୍ଧୀ ରମାଦେବୀ ପଠାଇଥିବା ବିବରଣୀକୁ ପ୍ରକାଶ କରିଥିଲେ । ରମାଦେବୀ ଓ ତାଙ୍କ ସହକର୍ମୀମାନଙ୍କର ହରିଜନମାନଙ୍କ ଉନ୍ନତି ନିମନ୍ତେ କାର୍ଯ୍ୟକ୍ରମକୁ ଗାନ୍ଧିଜୀ ଭୂୟସୀ ପ୍ରଶଂସା କରି ଉଲ୍ଲେଖ କରିଥିଲେ – ନିତାନ୍ତ ଆବଶ୍ୟକ ଏକ ସମାଜ ସଂସ୍କାର କାର୍ଯ୍ୟରେ କଟକର ଭଉଣୀମାନଙ୍କ ଆଗ୍ରହ ପାଇଁ ମୁଁ ଧନ୍ୟବାଦ ଦେଉଛି । ଜୀବନରେ ଯାହା ଶୁଦ୍ଧ ଓ ଧର୍ମ ସଂଗତ ସେ ସବୁର ମାରଫତଦାର ହେଉଛନ୍ତି ନାରୀମାନେ ।

ଗାନ୍ଧିଜୀ ମଧ୍ୟ ପ୍ରକାଶ କରିଥିଲେ – ନାରୀମାନେ ସ୍ୱଭାବତଃ ରକ୍ଷଣଶୀଳ । ତେଣୁ ସେମାନେ କୁ-ସଂସ୍କାରସବୁ ସହଜରେ ଛାଡ଼ି ପାରନ୍ତି ନାହିଁ । ବର୍ତ୍ତମାନ ଚାଲିଥିବା ଧର୍ମ ସଂସ୍କାରରେ ଭାରତର ନାରୀମାନେ ଅଗ୍ରଣୀ ହେବେ ବୋଲି ଆଶା କରାଯାଏ । କଟକର ନାରୀମାନଙ୍କର ଉଦାହରଣ ଅନ୍ୟତ୍ର ଅନୁସୃତ ହେବ ବୋଲି ଆଶା କରେଁ । ଅସୁବିଧା ଓ ନିରାଶା ଯାହାସବୁ ଆସୁପଛକେ ଶ୍ରୀମତୀ ରମାଦେବୀ ଓ ତାଙ୍କ ସହକର୍ମୀମାନେ ଯେଉଁ କାମ ଆରମ୍ଭ କରିଛନ୍ତି, ତାହା ଚାଲୁ ରଖିବେ ବୋଲି ଆଶା କରେ । ୧୯୩୪ ମସିହାରେ ଗାନ୍ଧିଜୀ ହରିଜନ ପଦଯାତ୍ରାରେ ଓଡ଼ିଶା ଆସିଥିଲେ । ସେହି ବର୍ଷ ମେ ମାସ ୯ ତାରଖରେ ଗାନ୍ଧିଜୀ ପୁରୀରୁ ପଦଯାତ୍ରା ଆରମ୍ଭ କଲେ । ଏହି ଐତିହାସିକ ପଦଯାତ୍ରାରେ ରମାଦେବୀ ପ୍ରଥମରୁ ଗାନ୍ଧିଜୀଙ୍କ ସହିତ ସହଯୋଗ କରି ଆସିଥିଲେ । ପଦଯାତ୍ରା ଅବସରରେ ଗାନ୍ଧିଜୀ ରମାଦେବୀଙ୍କୁ କହିଥିଲେ – 'ଓଡ଼ିଶାର ନାରୀମାନଙ୍କ ମଧ୍ୟରେ ବହୁତ କାମ କରିବାକୁ ଅଛି । ତୁମେ ସେହି କାମରେ ବେଶି ମନ ଦିଅ ।' ଓଡ଼ିଆ ନାରୀମାନଙ୍କୁ ସଂଗ୍ରାମୀମୁଖୀ ଓ ସମାଜସେବୀ କରିବା ଦିଗରେ ଗାନ୍ଧିଜୀଙ୍କର ପ୍ରେରଣା ଓ ଉତ୍ସାହ ସଫଳତା ଲାଭ କରିଥିଲା, ଏଥିରେ କୌଣସି ଦ୍ୱିମତ ନାହିଁ ।

ହରିଜନ ପଦଯାତ୍ରା ସମୟରେ ଗାନ୍ଧିଜୀ ରମାଦେବୀଙ୍କ ଗଠନମୂଳକ କାର୍ଯ୍ୟକ୍ରମକୁ ପ୍ରଶଂସା କରିବା ସହିସତ ପରାମର୍ଶ ଦେଇଥିଲେ – 'ଓଡ଼ିଶାରେ ସ୍ତ୍ରୀ ଲୋକମାନଙ୍କୁ ତାଲିମ ଦେଇ କାମରେ ଲଗାଇବା ପାଇଁ କୌଣସି ସଂସ୍ଥା କି ବ୍ୟବସ୍ଥା ନାହିଁ । ସେ କାମଟି ତମେ ହାତକୁ ନିଅ । ପାଠୁଆ ହେଉ କି ଅପାଠୁଆ ହେଉ ଯିଏ ତମ ପାଖକୁ ଆସିବ, ତାକୁ ନେଇ ତାଲିମ ଦେବ ।' ହରିଜନ ପଦର୍ଯତ୍ରାର ଅବ୍ୟବହିତ ପୂର୍ବରୁ ୧୯୩୪ ମସିହାରେ ମେ ମାସ ଆଠ ତାରିଖ ଦିନ ପୁରୀରେ ଗାନ୍ଧିଜୀ ନାରୀ ସଭାରେ ଉଦ୍‌ବୋଧନ ଦେଇଥିଲେ । ଗାନ୍ଧଜୀ ସାକ୍ଷୀଗୋପାଳଠାରେ ନାରୀ ଅଭିଭାଷଣ ପ୍ରଦାନ କରି ସେମାନଙ୍କ ମନରୁ ଭୟ, ଆଶଙ୍କା ଓ ଲଜ୍ଜ୍ୟା ଦୂର କରିବା ପାଇଁ ଚେଷ୍ଟା କରିଥିଲେ । ହରିଜନ ପଦଯାତ୍ରା ସମୟରେ କଟକର ମହିଳାମାନ ୨୮ ଟଙ୍କା ଗାନ୍ଧିଜୀଙ୍କୁ ଦାନ କରିଥିଲେ । କଟକ ନିକଟସ୍ଥ ତେଲଙ୍ଗାପେଣ୍ଠର ଜଣେ ଅଶୀବର୍ଷ ବୟସ୍କା ବୃଦ୍ଧା ଗାନ୍ଧିଜୀଙ୍କୁ ଖଣ୍ଡିଏ ଲୁଗା ଉପହାର ଦେଇଥିଲେ । ସେହି ଲୁଗାଟି ସାତ ଟଙ୍କାରେ ନିଲାମ ହୋଇଥିଲା ।

ସତ୍ୟଭାମାପୁର ମଧୁବାବୁଙ୍କ ଜନ୍ମ ସ୍ଥାନ । ମଧୁବାବୁଙ୍କୁ ଗାନ୍ଧିଜୀ ଖୁବ୍ ଉଚ୍ଚସ୍ଥାନ ଦେଉଥିଲେ । ପଦଯାତ୍ରା ସମୟରେ ସେହି ବାଟେ ଯିବେ ବୋଲି କାଜିପାଟଣାଠାରେ ଶୁଣି ଗାନ୍ଧିଜୀ ଖୁବ୍ ଖୁସି ହେଲେ । ସେହି ଗସ୍ତ ସମୟରେ ମଧୁବାବୁଙ୍କ ବୋହୂ ଉର୍ମିଳା ଦେବୀ ନିଜ ଅଳଙ୍କାର ନେଇ ବାପୁଜୀଙ୍କୁ ପ୍ରଦାନ କରିଥିଲେ । ପଦଯାତ୍ରା ସମୟରେ ନିଶ୍ଚିନ୍ତକୋଇଲି ସଭାରେ ବହୁ ସଂଖ୍ୟକ ନାରୀ ଯୋଗଦାନ କରିଥିବାରୁ ଗାନ୍ଧିଜୀ ଖୁବ୍ ଆନନ୍ଦିତ ହୋଇଥିଲେ । ଭଦ୍ରକର ନାରୀମାନେ ଗାନ୍ଧିଜୀଙ୍କୁ ୨୯ ଟଙ୍କା ପ୍ରଦାନ କରିଥିଲେ । ରମାଦେବୀ ଓ କେତେକ ବାଳିକା ଗାନ୍ଧିଜୀଙ୍କର ହରିଜନ ପଦଯାତ୍ରାରେ କିଛି ବାଟ ତାଙ୍କ ସହିତ ଯାତ୍ରା କରିଥିଲେ । ବିଦାୟବେଳେ ଗାନ୍ଧିଜୀ ସେମାନଙ୍କର କାର୍ଯ୍ୟରେ ଉଚ୍ଚ ପ୍ରଶଂସା କରି ଉଲ୍ଲେଖ କରିଥିଲେ – 'ରମାଦେବୀ ଓ ତାଙ୍କର ବାଳିକାମାନେ ଯାତ୍ରା ସମୟରେ ଯେପରି କାର୍ଯ୍ୟ କରିଛନ୍ତି, ସେଥିରେ ମୁଁ ବିସ୍ମିତ ହୋଇଛି । ହଜାର-ହଜାର ଭାରତୀୟ ନାରୀମାନଙ୍କୁ ମିଶିବାର ଓ ସେମାନଙ୍କର କାର୍ଯ୍ୟ ଦେଖିବାର ସୁଯୋଗ ମୋର ଘଟିଛି, କିନ୍ତୁ ରମାଦେବୀ ଓ ତାଙ୍କର ଛୋଟ ଦଳଟି ଯେପରି ସ୍ୱାଭାବିକ ଓ ସୁନ୍ଦର ଭାବରେ କାର୍ଯ୍ୟ କରିଛନ୍ତି ସେପରି ମୁଁ ଅନ୍ୟତ୍ର ଦେଖି ନାହିଁ । ସେମାନେ ନିଜ ପାଇଁ କୌଣସି ସୁବିଧା ଦରକାର କରି ନାହାନ୍ତି ବା ଦାବି କରିନାହାନ୍ତି ।' ପଦଯାତ୍ରା ସମୟରେ ଗାନ୍ଧିଜୀ ଥରେ କହିଥିଲେ, 'ମୁଁ ଓଡ଼ିଆ ଶିଖିବି, ନ ହେଲେ ଓଡ଼ିଶା ଭିତରେ ଗସ୍ତ କଲାବେଳେ ତ କିଛି ଜାଣିପାରିବି ନାହିଁ ।' ବାଲେଶ୍ୱରର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ ଶ୍ରୀ ରବୀନ୍ଦ୍ରମୋହନ ଦାସଙ୍କ ପତ୍ନୀ ଗୋଦାବରୀ ଦେବୀଙ୍କ ଉପରେ ଗାନ୍ଧିଜୀଙ୍କୁ ଓଡ଼ିଆ ଶିଖାଇବାର

ଦାୟିତ୍ୱ ପଡ଼ିଲା । ୧୯୩୪ ମସିହା ଜୁନ୍ ୮ ତାରିଖ ଦିନ 'ହରିଜନ' ପତ୍ରିକାରେ ମିରାବେନ ନିଜର ଏକ ସୁନ୍ଦର ଓ ଚିତ୍ତାକର୍ଷକ ଅନୁଭୂତି ବିବରଣୀ ପ୍ରଦାନ କରିଥିଲେ – ପଦଯାତ୍ରା ସମୟରେ ଗାନ୍ଧିଜୀ ବହୁଗ୍ରାମ ନାମକ ଏକ ଗାଁରେ ଅବସ୍ଥାନ କରିଥିଲେ । କିନ୍ତୁ ସେଠାକାର ବାରିକ ପୂର୍ବଦିନରୁ ଏକ ଦୂର ଗ୍ରାମକୁ ଯାଇଥିଲେ । ଗାନ୍ଧିଜୀଙ୍କୁ ଖିଅର କରିବା ପାଇଁ ବାରିକିଆଣୀ ନିଜର ସମ୍ମତି ପ୍ରକାଶ କଲେ । ବାରିକିଆଣୀ ଗାନ୍ଧିଜୀଙ୍କୁ ଖିଅର କରୁଥିବା ସମୟରେ ସେ ଧାରଣ କରିଥିବା ସୁବର୍ଣ୍ଣ ନିର୍ମିତ କାନଫୁଲ, ଚୁଡ଼ି ଓ ଅନ୍ୟାନ୍ୟ ଅଳଙ୍କାରକୁ ଗାନ୍ଧିଜୀ ଦେଖିବାକୁ ପାଇଲେ । ଗାନ୍ଧିଜୀଙ୍କ ବାରିକିଆଣୀକୁ ପ୍ରଶ୍ନ କଲେ – ଏଗୁଡ଼ିକ କାହିଁକି ପରିଧାନ କରିଛ ? ଏସବୁ ତୁମକୁ ମାନୁ ନାହିଁ । ଗାନ୍ଧିଜୀଙ୍କ ପ୍ରଶ୍ନର ଉତ୍ତର ଦେବାକୁ ଯାଇ ବାରିକିଆଣୀ କହିଥିଲା – 'ଆପଣଙ୍କ ପରି ବଡ଼ ଲୋକଙ୍କ ପାଖକୁ ଆସୁଛି ବୋଲି ଏ ସବୁ ଅଳଙ୍କାର ମାଗି ଆଣି ପିନ୍ଧି ଅଛି ।' ଗାନ୍ଧିଜୀ ତାଙ୍କୁ ଅଳଙ୍କାର ବିରୋଧରେ ବୁଝାଇଥିଲେ । ସେ ସେହିଦିନଠାରୁ ଅଳଙ୍କାର ପିନ୍ଧିବା ଛାଡ଼ି ଦେଇଥିଲେ । ବାରିକିଆଣୀ ସେଠାରେ ଆଉ ଦୁଇ ଜଣଙ୍କୁ ଖିଅର କରି ଯାହା ପାରିଶ୍ରମିକ ପାଇଲା ତାହା ଗାନ୍ଧିଜୀଙ୍କୁ ପ୍ରଦାନ କରିଥିଲା । ଓଡ଼ିଶାରେ ହରିଜନ ପଦଯାତ୍ରା ଶେଷ କରି ଝିଅମାନଙ୍କଠାରୁ ବିଦାୟ ନେଇ ରେଳରେ ବସିବା ବେଳେ ଗାନ୍ଧିଜୀ ସ୍ନେହରେ କହି ପକାଇଲେ, 'ତୁମ ଭିତରୁ କାହାରିଠାରେ ତ ସୁନା ଚୁଡ଼ି ନାହିଁ, କ'ଣ ଛଡ଼ାଇ ନେବି ?

୧୯୨୮ ମସିହାରେ ଗାନ୍ଧିଜୀ ସମ୍ବଲପୁର ଗସ୍ତରେ ଆସି ଏ କ ନାରୀ ସଭାରେ ଉଦ୍‌ବୋଧନ ଦେଇଥିଲେ । ଏହି ନାରୀ ସଭାରେ ଚନ୍ଦ୍ରଶେଖର ବେହେରାଙ୍କ ଦୁଇ କନ୍ୟା ଗାନ୍ଧିଜୀଙ୍କୁ ଦୁଇଟି ସୁନା ମୁଦି ପ୍ରଦାନ କରିଥିଲେ । ଗାନ୍ଧିଜୀ ଏଥିରେ ପ୍ରୀତ ହୋଇ ତାହା ଖଦି କାର୍ଯ୍ୟରେ ବ୍ୟବହାର କରାଯିବ ବୋଲି ଉଲ୍ଲେଖ କରିଥିଲେ । ପଶ୍ଚିମ ଓଡ଼ିଶାର ପ୍ରଥମ ମହିଳା ସ୍ୱାଧୀନତା ସଂଗ୍ରାମୀ ରୂପେ ଜମ୍ବୁବତୀ ଦେବୀ କାରାବରଣ କରିଥିଲେ । ଗାନ୍ଧିଜୀଙ୍କ ଆହ୍ୱାନରେ ସେ ନିଜର ସମସ୍ତ ଗହଣା ନିଜ ସ୍ୱାମୀ ସଂଗ୍ରାମୀ ଭାଗିରଥୀ ପଟ୍ଟନାୟକଙ୍କୁ ରଚନାତ୍ମକ କାର୍ଯ୍ୟ ପାଇଁ ପ୍ରଦାନ କରିଥିଲେ । ସେ ସେହି ଦିନଠାରୁ ସ୍ୱର୍ଣ୍ଣାଳଙ୍କାର ପରିତ୍ୟାଗ କରି ଖଦିକୁ ଆପଣାର କରିଥିଲେ । ପଶ୍ଚିମ ଓଡ଼ିଶାର ଦୁଇଜଣ ସୁନାମଧନ୍ୟା ଓ ସୁପରିଚିତା ନାରୀ ସ୍ୱାଧୀନତା ସଂଗ୍ରାମୀ ଥିଲେ ସେବା ଓ ସାଧନାର ମୂର୍ତ୍ତିମନ୍ତ ପ୍ରତୀକ ଡଃ ପ୍ରଭାବତୀ ଦେବୀ ଓ ପ୍ରଚଣ୍ଡ ବିପ୍ଳବିଣୀ ବହ୍ନି କନ୍ୟା ପାର୍ବତୀ ଗିରି । ପ୍ରଭାବତୀ ଦେବୀ ବିଭିନ୍ନ ରଚନାତ୍ମକ କାର୍ଯ୍ୟ ପାଇଁ ମହାରାଷ୍ଟ୍ରର ୱାର୍ଦ୍ଧାରେ ତାଲିମ ନେଉଥିଲେ । ସେଠାରେ ସେ ଦୀର୍ଘ ୧୫ ଦିନ ପାଇଁ ମହାତ୍ମା ଗାନ୍ଧୀଙ୍କ ସହିତ କାମ କରିବାର ସୁଯୋଗ ପାଇଥିଲେ । ପାର୍ବତୀ ଗିରି ଗାନ୍ଧିଜୀଙ୍କ ଆଶ୍ରମରେ ରଚନାତ୍ମକ କାର୍ଯ୍ୟ ଶିକ୍ଷାଲାଭ କରିଥିଲେ ।

୧୯୩୪ ମସିହାରେ ଗାନ୍ଧିଜୀ ଓଡ଼ିଶା ଗସ୍ତରେ ଆସି ଝାରସୁଗୁଡ଼ାଠାରେ ପଦାର୍ପଣ କଲେ । ମୁଙ୍ଗାପଡ଼ାସ୍ଥିତ ସଂଗ୍ରାମୀ ବିହାରୀ ରାମ ତନ୍ତୀଙ୍କ ବାସଗୃହକୁ ସେ ଯାଇଥିଲେ । ସଂଗ୍ରାମୀ ବିହାରୀ ରାମତନ୍ତୀଙ୍କ ଧର୍ମପତ୍ନୀ ହୀରାମତୀ ଦେବୀ ଗାନ୍ଧିଜୀଙ୍କୁ ନିଜ ହାତରେ ଛେଳିଦୁଗ୍ଧ ଓ ଅଙ୍ଗୁର ଖୁଆଇ ଦେଇଥିଲେ ।

କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ଭଗ୍ନୀ କୋକିଳା ଦେବୀ ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ହରିଜନମାନଙ୍କ ଉଦ୍ଦେଶ୍ୟରେ ଏକ ବିଦ୍ୟାଳୟ ଭଦ୍ରକ ଅନ୍ତର୍ଗତ ତାଳପଦା ଗ୍ରାମରେ ପ୍ରତିଷ୍ଠା କରିଥିଲେ । ଗାନ୍ଧିଜୀଙ୍କ ସଚିବ ମହାଦେବ ଦେଶାଇ ସେ ସଂପର୍କରେ ଗାନ୍ଧିଜୀଙ୍କୁ ଜଣାଇବାରୁ ଗାନ୍ଧିଜୀ ତାଙ୍କର ପ୍ରଶଂସା, କରି 'ଇଂରାଜୀ ହରିଜନ' ପତ୍ରିକାରେ ଲେଖିଥିଲେ । ନିଶାମଣି ଦେବୀ ଓ ଅନ୍ନପୂର୍ଣ୍ଣା ଦେବୀ ପରବର୍ତ୍ତୀ ସମୟରେ ଗାନ୍ଧିଜୀଙ୍କ ସାବରମତୀ ଆଶ୍ରମରେ ରହି ସତ୍ୟାଗ୍ରହ ବିଷୟରେ ଶିକ୍ଷା ଗ୍ରହଣ କରି ନିଜର ଉତ୍ତମ କାର୍ଯ୍ୟ ପାଇଁ ଗାନ୍ଧିଜୀଙ୍କର ପ୍ରଶଂସାଭାଜନ ହୋଇପାରିଥିଲେ । ହରିଜନ ସେବା, ନିଶା ନିବାରଣ, ଅସ୍ପୃଶ୍ୟତା ଦୂରୀକରଣ ଇତ୍ୟାଦି ସମାଜ ଗଠନ କାର୍ଯ୍ୟ ଓ ମୁକ୍ତି ଆନ୍ଦୋଳନରେ ଓଡ଼ିଆ ନାରୀ ଗାନ୍ଧିଜୀଙ୍କୁ ପୂର୍ଣ୍ଣପ୍ରାଣରେ ସହାୟତା ପ୍ରଦାନ କରି ଆସିଥିଲେ ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୭୫୨୦୫୪

■ ■ ■ ■



# ମଣିଷ ପଣିଆର ପ୍ରତୀକ ରାଜୁବାବୁ

ନଟବର ଖୁଣ୍ଟିଆ

**ରା**ଜକିଶୋର ନାୟକ ଯେ କି ସାରା ଓଡ଼ିଶାରେ ବିଶେଷକରି ପାଟକୁରା ଅଞ୍ଚଳରେ ଲୋକପ୍ରିୟ ଭାବରେ ରାଜୁବାବୁ ନାମରେ ପରିଚିତ ଥିଲେ ୨୦୧୦ ମସିହା ଜାନୁଆରୀ ୪ ତାରିଖ ଦିନ ତାଙ୍କର ଦେହାନ୍ତ ହୋଇଗଲା । ଦୀର୍ଘଦିନ ଧରି ଜରାରୋଗରେ ପୀଡ଼ିତ ହୋଇ ଶାରୀରିକ ଦୃଷ୍ଟିରୁ ଅସୁସ୍ଥ ଥିବାରୁ ପ୍ରତ୍ୟକ୍ଷ ରାଜନୀତିରୁ ଏକପ୍ରକାର ସନ୍ନ୍ୟାସ ନେଇ ସମାଜ ସେବାରେ ନିଜକୁ ନିୟୋଜିତ କରିଥିଲେ । ଅସୁସ୍ଥତା ସତ୍ତ୍ୱେ ଭଲ ଭାବରେ ଚାଲିପାରୁ ନଥିବାବେଳେ, ଦୈନନ୍ଦିନ ଖାଦ୍ୟରେ ନାନା ପ୍ରକାର କଟକଣା ଥିଲେ ବି, କାନକୁ ଭଲ କରି ଶୁଭୁ ନଥିଲେ ବି ସତ୍ତ୍ୱେ ମାନସିକ ସ୍ତରରେ ଏତେ ସୁସ୍ଥ ଓ ସଜାଗ ଥିଲେ ଯେ, ସେବା ଗୋସେବାରେ ସେ ନିଜକୁ ନିୟୋଜିତ କରିଥିଲେ । କଟକ ଜିଲ୍ଲାର ସାଲେପୁର ନିକଟସ୍ଥ ଅସୁରେଶ୍ୱରଠାରେ ସ୍ୱାଧୀନତା ପୂର୍ବରୁ ପ୍ରତିଷ୍ଠିତ ଗୋରକ୍ଷଣୀ ସମିତିର ସଂପାଦକ ଦାୟିତ୍ୱ ତୁଲାଉଥିଲେ ମୃତ୍ୟୁ ପର୍ଯ୍ୟନ୍ତ । ବୃଦ୍ଧ ରୋଗାକ୍ରାନ୍ତ ଗାଈଗୋରୁଙ୍କୁ ଯତ୍ନ ସହକାରେ ପାଳନ କରୁଥିଲେ ଗୋରକ୍ଷଣୀରେ । ଏଥିପାଇଁ ଆବଶ୍ୟକ ପାଣ୍ଠିର ମୂଳ ଉତ୍ସ ଥିଲା ମୁଷ୍ଟି ଭିକ୍ଷା ଚାଉଳ । ହଜାର ହଜାର ଘରୁ ପ୍ରତିଦିନର ମୁଷ୍ଟିଭିକ୍ଷା ଚାଉଳକୁ ସଂଗ୍ରହ କରାଯିବାପରେ ସେହି ଚାଉଳକୁ ବିକ୍ରୟ କରି ଗୋରକ୍ଷଣୀର ଖର୍ଚ୍ଚ ମେଣ୍ଟାଉଥିଲେ । ଏହାବ୍ୟତୀତ କେତେକ ବଦାନ୍ୟ ବ୍ୟକ୍ତିଙ୍କଠାରୁ ଏକକାଳୀନ କିଛି ଦାନ ସଂଗ୍ରହ କରି ସେହି ଦାନ ଅର୍ଥକୁ ବ୍ୟାଙ୍କରେ ରଖି – ସେହି ସୁଧକୁ ମଧ୍ୟ ଦୈନନ୍ଦିନ ଖର୍ଚ୍ଚରେ ବ୍ୟବହାର କରୁଥିଲେ । ସେବା ଥିଲା ତାଙ୍କ ଜୀବନର ବ୍ରତ । ଭୋଗ ବିଳାସଠାରୁ ସେ ଦୂରରେ ରହୁଥିଲେ ।

ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇ ଗାନ୍ଧିଜୀଙ୍କ ଆଦର୍ଶରେ ନିଜେ ଜୀବନଯାପନ କରୁଥିଲେ । ଦେଶ ସ୍ୱାଧୀନ ହେବାପରେ ସେ ଶିକ୍ଷକତାକୁ ନିଜ ଜୀବନର ବୃତ୍ତି ରୂପେ ବାଛି ନେଇଥିଲେ । ସେ ଜଣେ ଆଦର୍ଶ, ଦରଦୀ, ସ୍ନେହୀ ଶିକ୍ଷକ ଭାବରେ ଛାତ୍ରଛାତ୍ରୀମାନଙ୍କଦ୍ୱାରା ଯେତିକି ଆଦୃତ ହେଉଥିଲେ, ସେତିକି ସମ୍ମାନିତ ହେଉଥିଲେ । ତାଙ୍କର ସାଧୁତା, ସଚ୍ଚୋଟପଣିଆ, ଅମାୟିକ ବ୍ୟବହାର, ସରଳ ଜୀବନଯାପନ ପ୍ରଣାଳୀ ଯୋଗୁଁ ବିଜୁବାବୁ ତାଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ ଓ ସମ୍ମାନ ଦେଉଥିଲେ । ତାଙ୍କ ଚିକିତ୍ସାର ଭାର ବିଜୁବାବୁ ବହନ କରିଥିଲେ । ସେ ଦୁଇଥର ରାଜ୍ୟ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ଥରେ ପଞ୍ଚାୟତ ସମିତିର ଅଧ୍ୟକ୍ଷ ହୋଇଥିବାବେଳେ, ଦୁଇ ଦୁଇ ଥର ରାଜ୍ୟ ଖଦି ବୋର୍ଡ଼ର ଅଧ୍ୟକ୍ଷ ଥିବା ସତ୍ତ୍ୱେ ତାଙ୍କର ଜୀବନଯାପନ ପ୍ରଣାଳୀ ଦେଖିଲେ ଯେ କେହି ଆଶ୍ଚର୍ଯ୍ୟ ହୋଇଯିବ । ବିଭିନ୍ନ ସମୟରେ ତିନି ତିନିଟା ପଦବୀରେ ଥାଇ ତାଙ୍କର ସଚ୍ଚୋଟପଣିଆ ଓ ସାଧୁତା ଯୋଗୁଁ ଅତି ସାଧାରଣ ମଣିଷଟିଏ ପରି ସେ ଅଭାବ ଅସୁବିଧାରେ ଜୀବନ ବିତାଉଥିଲେ । ବିଧାନସଭାର ସଦସ୍ୟ ଥିବା ଯୋଗୁଁ ସରକାରଙ୍କ ତରଫରୁ ରିହାତି ମୂଲ୍ୟରେ ଯେଉଁ ଘର ଡିହ ପାଇଁ ଜମି ଯୋଗାଇ ଦିଆଯାଉଥିଲା – ସେଇଥିପାଇଁ ସେ ଘର ଡିହ ପାଇଁ ଜମିଟି ପାଇଥିଲେ ସତ୍ୟନଗରରେ । ସେଠି ଘର ଖଣ୍ଡିଏ କରିବାକୁ ତାଙ୍କୁ କେତେ ଦିନ ଲାଗିଛି ଆଉ ସେ ଘରର ଅବସ୍ଥା କିପରି ଓ କିପ୍ରକାର ଆସବାବପତ୍ର ଘରେ ରଖିଥାନ୍ତି – ଯେ ଆଖିରେ ଦେଖିଛି ସେ ଜାଣିଛି । ସେ କ୍ଷମତାରେ ଥାଇ ମଧ୍ୟ କ୍ଷମତାର ଅପବ୍ୟବହାର ନକରି କିପରି ସାଧୁ ଓ ସଚ୍ଚୋଟ ଜୀବନଯାପନ କରୁଥିଲେ, ତାଙ୍କ ପରିବାର ତାଙ୍କ ସଚ୍ଚୋଟ ପଣିଆର ମୂକସାକ୍ଷୀ । ଆଜିକାଲି ବିଧାନସଭା ସଦସ୍ୟଙ୍କ କଥା ଛାଡ଼ନ୍ତୁ, ପଞ୍ଚାୟତ ସମିତିର ଅଧ୍ୟକ୍ଷଙ୍କ କଥା ଛାଡ଼ନ୍ତୁ, ଯେଉଁମାନେ ଏହି ନିର୍ବାଚିତ ପ୍ରତିନିଧିଙ୍କ ପଛରେ ଗୋଡ଼ାଇ ତାଙ୍କର ଏଜେଣ୍ଟ ରୂପେ କାର୍ଯ୍ୟ କରୁଛନ୍ତି ତାଙ୍କର ଘରଦ୍ୱାର, ଗାଡ଼ିମଟର, ବେଶପୋଷାକ, ଜୀବନଯାତ୍ରା ଶୈଳୀ ଦେଖିଲେ ଆଖି ଝଲସି ଯିବ । ରାଜୁବାବୁଙ୍କ ପରି ଗାନ୍ଧିବାଦୀ ଜନସେବକ ରାଜନେତା ଆଉ ଆଜିର ଅର୍ଥସର୍ବସ୍ୱ ତଥାକଥିତ ନେତାମାନଙ୍କ ମଧ୍ୟରେ ଏହା ହିଁ ତଫାତ୍ ।

ରାଜୁବାବୁ ଥିଲେ ପାଟକୁରା ଥାନାର ଏକ ନାମକରା ସ୍କୁଲ କୋରୁଆ ହାଇସ୍କୁଲରେ ଶିକ୍ଷକ । ମୁଁ ପଢୁଥାଏଁ ପଡ଼ୋଶୀ ହାଇସ୍କୁଲ ଜୟରାମ ହାଇସ୍କୁଲ କରିଲୋପାଟଣାରେ । ୧୯୬୨ ମସିହାରେ ମାଟ୍ରିକ୍ ପରୀକ୍ଷା ଆଉ ତିନି ଚାରିମାସ ବାକି ଥାଏ ଆମ ଗଣିତ ଶିକ୍ଷକ ସ୍କୁଲ ଛାଡ଼ି ଦେଲେ – ଆମ ଗଣିତ କୋର୍ସ ଶେଷ ହୋଇ ନଥାଏ । ମୁଁ ଓ ମୋର ସହପାଠୀ ରମେଶ ଚନ୍ଦ୍ର ପରିଡ଼ା ଯେ କି ପରବର୍ତ୍ତୀ ସମୟରେ ରସାୟନ ବିଜ୍ଞାନର ପ୍ରଫେସର ହୋଇ ଏବେ ଅବସର ନେଇଛନ୍ତି, କୋରୁଆ ସ୍କୁଲର ଗଣିତ ଶିକ୍ଷକଙ୍କ ପାଖରେ ଗଣିତ କୋର୍ସ ଶେଷ କରିବାକୁ ଟେଷ୍ଟ ପରୀକ୍ଷା ପରେ ପ୍ରାୟ ଦେଢ଼ମାସ ପାଇଁ ଯାଇଥିଲୁଁ । ସେଠି ଆମେ ଯାଇ ରହିଲୁ ଶିକ୍ଷକମାନଙ୍କର ମେସ୍‌ରେ । ସେହି ମେସ୍‌ରେ ଥାନ୍ତି ରାଜୁବାବୁ । ତାଙ୍କ ସହ ପ୍ରଥମ ପରିଚୟ ହେଲା ସେହି ସମୟରୁ । ଆମେ ଦୁଇଜଣ ତାଙ୍କ ସ୍କୁଲର ଛାତ୍ର ନଥିଲୁ ଅବା ତାଙ୍କ ପାଖରେ ପଢୁନଥିଲୁ – କିନ୍ତୁ ସେ ଆମକୁ ଯେଉଁ ସ୍ନେହ ଶ୍ରଦ୍ଧା ଅଜାଡ଼ି ଦେଲେ ତାହା ଜୀବନରେ କେବେ ଭୁଲି ହେବ ନାହିଁ । ଆମ ଖାଇବା କଥାଠାରୁ ଆରମ୍ଭ କରି ପାଠପଢ଼ା କିପରି ହେଉଛି ସଦାବେଳେ ବୁଝୁଥିବେ । ଗଣିତ ବ୍ୟତୀତ ଅନ୍ୟପାଠ ପଢ଼ିବାକୁ ପରାମର୍ଶ ଦେଉଥିବେ । ତାଙ୍କର ଅନାବିଳ ସ୍ନେହରେ ଆମେ ବାନ୍ଧି ହୋଇ ପଡ଼ିଲୁଁ ।

ମାଟ୍ରିକ୍ ପରୀକ୍ଷା ପରେ ମୁଁ ଆସି କୃଷି ବିଶ୍ୱବିଦ୍ୟାଳୟରେ ପଢ଼ିଲି । ଅଧ୍ୟୟନ କରୁଥିବାବେଳେ କୃଷି ବିଜ୍ଞାନ ଓ ଗ୍ରାମ୍ୟ ଅର୍ଥନୀତି ସମ୍ବନ୍ଧୀୟ କେତେକ ପ୍ରବନ୍ଧ ବେଳେବେଳେ ସମ୍ବାଦପତ୍ର ଓ ପତ୍ରପତ୍ରିକାରେ ଲେଖୁଥାଏ । ତାକୁ ପଢ଼ି ରାଜୁବାବୁ ମୋର କେଉଁଠି କେମିତି ଦେଖାହେଲେ ପ୍ରଶଂସା କରନ୍ତି ଓ ଆହୁରି ଲେଖିବାକୁ ଉତ୍ସାହିତ କରନ୍ତି । ପାଠ ଶେଷ ପରେ କିଛି ଦିନ କୃଷି ବିଭାଗରେ କାର୍ଯ୍ୟ କଲାପରେ ବ୍ୟାଙ୍କ ଜାତୀୟକରଣ ହୋଇଯିବା ପରେ ଗୋଟିଏ ଜାତୀୟକରଣ ବ୍ୟାଙ୍କରେ କୃଷି ଉନ୍ନୟନ ଅଫିସର ରୂପେ ଯୋଗ ଦେଲି । ବ୍ୟାଙ୍କ ପରିଚାଳନା ଓ ବ୍ୟାଙ୍କ ଅର୍ଥନୀତି ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କଲି । ସେହି ସମ୍ବନ୍ଧରେ ଓଡ଼ିଶାର ବିଭିନ୍ନ ପତ୍ରପତ୍ରିକାରେ ମୋ' ଲେଖାସବୁ ପ୍ରକାଶ ପାଇଲା । ରାଜୁବାବୁ ମୋର ଦେଖା ହେଲେ ମୋତେ ଆହୁରି ଅଧିକ ଲେଖିବାକୁ ଉତ୍ସାହିତ କରିବାବେଳେ ଗ୍ରାମାଞ୍ଚଳର ଅନ୍ୟ ସମସ୍ୟା ଉପରେ ଲେଖିବାକୁ ପରାମର୍ଶ ଦେଉଥିଲେ । ତାଙ୍କ ସହିତ ଆହୁରି ଘନିଷ୍ଠତା ବଢ଼ିଲା ଯେତେବେଳେ ୧୯୭୦ ଦଶକର ଦ୍ୱିତୀୟାର୍ଦ୍ଧରେ ପାଟକୁରା ଅଞ୍ଚଳର ବିକାଶ ପାଇଁ ଗଠିତ ହେଲା ଏକ ଉନ୍ନୟନ ପରିଷଦ । ସେହି ପରିଷଦର ନାମ ଥିଲା 'ମହାନଦୀ, ଲୁଣା ଚିତ୍ରୋତ୍ପଳା ତ୍ରିକୋଣ ଭୂମି ଉନ୍ନୟନ ପରିଷଦ' । ପାଟକୁରା ଅଞ୍ଚଳ ନଦୀ ନାଳ ଘେରା ଏକ ଅଗମ୍ୟ ଅଞ୍ଚଳ ଥିଲା । କଟକ-ପାରାଦୀପ ରାସ୍ତା ଦେଇ ଗଲେ ମହାନଦୀ ଓ ପାଇକା ନଦୀ ପାର ହେବାକୁ ପଡ଼ିବ ଆଉ କଟକ-କେନ୍ଦ୍ରାପଡ଼ା ରାସ୍ତା ଦେଇଗଲେ ଲୁଣା, କରାଣ୍ଡିଆ ଓ ଚିତ୍ରୋତ୍ପଳା ନଦୀ ପାର ହେବାକୁ ପଡ଼ିବ । ଏହି ଗମନାଗମନର ଅସୁବିଧା ପାଇଁ ଏହି ଅଞ୍ଚଳରୁ ଯେଉଁମାନେ ପାଠପଢ଼ି ବାହାରେ ଚାକିରି କରନ୍ତି – ବିବାହ ପରେ ପିଲାଛୁଆଙ୍କୁ ସାଙ୍ଗରେ ନେଇଗଲେ ଆଉ ମଝିରେ ମଝିରେ ଗାଁକୁ ଆସିବାକୁ ମନ ବଳାନ୍ତି ନାହିଁ । ସେହି ଗମନାଗମନ ସମସ୍ୟାକୁ ଦୂର କରିବା ପାଇଁ ଅନ୍ତତଃ ଅସୁରେଶ୍ୱର ନିକଟରେ ଲୁଣା ନଦୀରେ ଏକ ପୋଲ ହୋଇଗଲେ ଅନେକ ସମସ୍ୟାର ସମାଧାନ ହୁଅନ୍ତା ବୋଲି ବିଚାର କରାଗଲା । ତ୍ରିକୋଣ ଭୂମି ଉନ୍ନୟନ ପରିଷଦର ମୁଖ୍ୟ ଲକ୍ଷ୍ୟ ରହିଲା ପୋଲ ନିର୍ମାଣ । ଗଣତାନ୍ତ୍ରିକ ଉପାୟରେ ଆମର ସମସ୍ୟାକୁ ସରକାରଙ୍କ ନିକଟରେ ଉପସ୍ଥାପନ ପାଇଁ ପରିଷଦ ପକ୍ଷରୁ ଉଦ୍ୟମ ହେଲା । ଏହି ପରିଷଦର ସଭାପତି ଥାଆନ୍ତି ପୂର୍ବତନ ମନ୍ତ୍ରୀ ପ୍ରହ୍ଲାଦ ମଲ୍ଲିକ । ଉପସଭାପତି ରାଜୁବାବୁ, ସାଧାରଣ ସଂପାଦକ ଥା'ନ୍ତି ରାଜ୍ୟ ପରିସଂଖ୍ୟାନ ଓ ଅର୍ଥନୀତି ସଂସ୍ଥାର ତତ୍କାଳୀନ ଜଏଣ୍ଟ ଡାଇରେକ୍ଟର ପ୍ରଭାକର ପ୍ରଧାନ । ପ୍ରଭାକର ବାବୁ ଜଣେ ଉଚ୍ଚଶିକ୍ଷିତ ସରକାରୀ ଅଫିସର ହେଲେ ବି ତାଙ୍କର ଜୀବନଯାପନ ପ୍ରଣାଳୀ ଥିଲା ଅତି ସରଳ ଓ ନିରାଡ଼ମ୍ବର । ସେ ଥିଲେ ଗାନ୍ଧିବାଦୀ । ଖଦଡ଼ ବି ପରିଧାନ କରୁଥିଲେ । ସେତେବେଳକୁ ମୁଁ ବଦଳି ହୋଇ ଆସି ଭୁବନେଶ୍ୱରରେ ଅବସ୍ଥାପିତ ହୋଇଥାଏ । ଆମ ସ୍କୁଲରେ ମୋ' ତଳଶ୍ରେଣୀରେ ପଢୁଥିବା ବ୍ରହ୍ମାନନ୍ଦ ପାତ୍ର ମୋର ଥରେ ଦେଖା ହୋଇଗଲେ । ସେ ମୋତେ ପରିଷଦ କଥା କହିଲେ ଏବଂ ଏହାର ଜଣେ ସଦସ୍ୟ ହେବା ପାଇଁ ପ୍ରବର୍ତ୍ତାଇଲେ । ମୁଁ ସଦସ୍ୟ ହେଲି ଆଉ ପରିଷଦର ଜଣେ ସଂପାଦକ ହିସାବରେ ମୋତେ ମନୋନୀତ କରାଗଲା । ସେହି ପରିଷଦର ବୈଠକ ନିୟମିତ ହୁଏ । ରାଜୁବାବୁ ଉପସଭାପତି ଭାବରେ ପ୍ରତ୍ୟେକ ବୈଠକକୁ ଆସନ୍ତି ଓ ବିଭିନ୍ନ ପରାମର୍ଶ ଦିଅନ୍ତି । ମୋ' ସହିତ ତାଙ୍କର ଘନିଷ୍ଠତା ପୂର୍ବ ଅପେକ୍ଷା ଆହୁରି ବଢ଼ିଗଲା । ଆମ ପରିଷଦ ତରଫରୁ ବିଭିନ୍ନ ଦାବି ନେଇ ଆମେ ମନ୍ତ୍ରୀ ଓ ସରକାରୀ କର୍ମକର୍ତ୍ତାଙ୍କ ସହ ଆଲୋଚନା କଲୁଁ । ରାଜୁବାବୁ ସଦାବେଳେ ଆମ ସହିତ ଯାଇ ଆଲୋଚନାରେ ଭାଗ ନିଅନ୍ତି । ଆମ ପାଟକୁରା ଅଞ୍ଚଳର ସମସ୍ୟାକୁ ନେଇ ଏକ ସ୍ମରଣିକା ପ୍ରକାଶ ପାଇଁ ସ୍ଥିର ହେଲା । ସେହି ସ୍ମରଣିକାର ସଂପାଦନା ଦାୟିତ୍ୱ ମୋ' ଉପରେ ଦିଆଗଲା । ସେହି ସ୍ମରଣିକାଟି କିପରି ହେବ ଓ ସେଥିରେ କେଉଁ

କେଉଁ ସମସ୍ୟା ଉପରେ ପ୍ରବନ୍ଧମାନ ସ୍ଥାନ ପାଇବ ରାଜୁବାବୁ ମୋତେ ପରାମର୍ଶ ଦେଉଥାନ୍ତି । ଆମର ସେହି ପରିଷଦର ଅକ୍ଲାନ୍ତ ଉଦ୍ୟମ ଫଳରେ ଅସୁରେଶ୍ୱରଠାରେ ଲୁଣା ନଦୀ ଉପରେ ଏକ ପୋଲ ନିର୍ମାଣ ସମ୍ଭବ ହେଲା – ପାଟକୁରା ଅଞ୍ଚଳକୁ ବାଟ ଫିଟିଲା । ଏବେତ ଡଜନେ ପାଖାପାଖି ପୋଲ ନିର୍ମାଣ ହେଲାଣି ମହାନଦୀ, ଚିତ୍ରୋତ୍ପଳା, ଲୁଣା ତ୍ରିକୋଣ ଭୂମି ଅଞ୍ଚଳକୁ ପ୍ରବେଶ କରିବା ପାଇଁ । ସେହି ପୋଲ ନିର୍ମାଣରେ ରାଜୁବାବୁଙ୍କ ଭୂମିକା ଭୁଲି ହେବ ନାହିଁ ।

ରାଜୁବାବୁ କେବଳ ଗାନ୍ଧିବାଦୀ ନଥିଲେ – ସେ ଥିଲେ ଭାରତୀୟ ସଂସ୍କୃତି ଓ ପରମ୍ପରାର ସମର୍ଥକ, କିନ୍ତୁ ଅନ୍ଧ ବିଶ୍ୱାସର ସେ ଥିଲେ ବିରୋଧୀ । ରାଜୁବାବୁ ଥିଲେ ଜଣେ ଆଦର୍ଶ ଗୃହସ୍ଥ । ସଦ୍‌ଗୁରୁ ନିଗମାନନ୍ଦ ସରସ୍ୱତୀଙ୍କ ଦର୍ଶନରେ ଥିଲା ତାଙ୍କର ଅଟଳ ବିଶ୍ୱାସ । ସଦ୍‌ଗୁରୁ ନିଗମାନନ୍ଦ ସରସ୍ୱତୀଙ୍କ ଜ୍ଞାନ, ଯୋଗ, ତନ୍ତ୍ର ଓ ପ୍ରେମରେ ସିଦ୍ଧିଲାଭ କରି ଭାରତବାସୀ କିପରି ଆଦର୍ଶ ଗୃହସ୍ଥ ଜୀବନଯାପନ କରି ମଣିଷ ପରି ମଣିଷ ହୋଇ ସମାଜର ବିକାଶ କରିବେ ତାହା ପ୍ରଚାର ଓ ପ୍ରସାର ପାଇଁ ବିଭିନ୍ନ ଆଶ୍ରମ ନିର୍ମାଣ ସହ ସତ୍‌ସଂଘ ସ୍ଥାପନ କଲେ । ସେ ଥିଲେ ସମନ୍ୱୟୀ – ଶ୍ରୀ ଶଙ୍କରାଚାର୍ଯ୍ୟଙ୍କ ଜ୍ଞାନମତ ଓ ଶ୍ରୀ ଚୈତନ୍ୟ ଦେବଙ୍କ ପ୍ରେମ ପଥର ସମନ୍ୱୟ ଆଣି ଗୃହସ୍ଥମାନଙ୍କୁ ପରାମର୍ଶ ଦେଉଥିଲେ ଶଙ୍କରାଚାର୍ଯ୍ୟଙ୍କ ଜ୍ଞାନ ମତ ଅନୁସାରେ ଚୈତନ୍ୟ ଦେବଙ୍କ ପ୍ରେମ ମାର୍ଗ ମଧ୍ୟରେ ଚାଲିବାକୁ । ରାଜୁବାବୁ ନିଗମଦର୍ଶନର ଜଣେ ପଥିକ ଥିଲେ । ସେ ପୁରୁଣା ଭୁବନେଶ୍ୱରର ସାମନ୍ତରାପୁରସ୍ଥିତ ନିଗମାନନ୍ଦଙ୍କ ସତ୍‌ସଂଘ ଆଶ୍ରମକୁ ନିୟମିତ ଯାଉଥିଲେ । ମୁଁ ବେଳେ ବେଳେ ସତ୍‌ସଂଘରେ ଯୋଗ ଦେଉଥିଲି । ମୋର ଦେଖା ହୋଇଗଲେ ଅତି ଆଦରରେ ପାଖରେ ନେଇ ବସାଇବେ । ନିଗମ ଦର୍ଶନ ଉପରେ ମୋ ସହିତ ଆଲୋଚନା କରିବେ । ପ୍ରସାଦ ସେବନ ବେଳେ ଅତି ଶ୍ରଦ୍ଧାର ସହ ମୋତେ ଡାକି ପାଖରେ ବସାଇ ପ୍ରସାଦ ସେବନ କରିବାକୁ କହିବେ । ଆମ ଅଞ୍ଚଳର ସମସ୍ୟା ବିଷୟରେ ସତ୍‌ସଂଘ ଆଲୋଚନା କରିବେ । ଲେଖାଲେଖି କଥା ପଚାରି ବୁଝିବେ, ପରାମର୍ଶ ଦେବେ । ଏପରି ଜଣେ ସ୍ନେହୀ ଲୋକ ମୁଁ ଜୀବନରେ କ୍ୱଚିତ୍ ଦେଖିଛି ।

ରାଜୁବାବୁ ଅସୁରେଶ୍ୱରରେ ଥିବା ଗୋରକ୍ଷଣୀର ବାର୍ଷିକ ଅଧିବେଶନ କରନ୍ତି – ଗୋଷ୍ଠାଷ୍ଟମୀ ଦିନ । କେତେଥର ମୋତେ ଡାକିଛନ୍ତି – ସେହି ବାର୍ଷିକ ଅଧିବେଶନରେ ଯୋଗ ଦେବା ପାଇଁ । ବାର୍ଷିକ ଅଧିବେଶନକୁ ମାନ୍ୟଗଣ୍ୟ ବ୍ୟକ୍ତି ଏବଂ ମନ୍ତ୍ରୀମାନଙ୍କୁ ଅତିଥି କରି ଡାକନ୍ତି । ସଭା ହୁଏ ଓ ଗୋସଂପଦର ସମସ୍ୟା ସମ୍ବନ୍ଧରେ ଆଲୋଚନା ହୁଏ । ଥରେ ଏକ ବାର୍ଷିକ ଅଧିବେଶନକୁ ମୁଁ ଯାଇଥାଏଁ – ଭୁବନେଶ୍ୱରରୁ । ମୁଁ ବସ୍‌ରେ ଯାଇଥାଏଁ । ଅଧିବେଶନରେ ଯୋଗ ଦେବାପରେ ତାଙ୍କ ସହ ବିଭିନ୍ନ ବିଷୟରେ ବାର୍ତ୍ତାଳାପ ହେଲା । ପ୍ରସାଦ ସେବନ କଲି । ସନ୍ଧ୍ୟା ହୋଇ ଆସିଲାବେଳକୁ ଆକାଶରେ ହଠାତ୍ କଳାବଉଦ ଦେଖା ଦେଲା – ବର୍ଷା ହେବାର ପୂର୍ବସୂଚନା ମିଳିଲା । ମୁଁ ଅସୁରେଶ୍ୱରରୁ ବସ୍‌ରେ କଟକ ଆସି ପୁନଶ୍ଚ କଟକରୁ ବସ୍ ଧରି ଭୁବନେଶ୍ୱର ଫେରିବି । ବର୍ଷା ଆସିବା ଦେଖି ଟିକେ ଭୟ କରି ଗଲି । ତରତର ହେଲି ବସ୍ ଧରି କଟକ ଆସିବାକୁ । ରାଜୁବାବୁ ସେତେବେଳେ ଅତିଥିମାନଙ୍କ ସହ ଆଲୋଚନାରେ ବ୍ୟସ୍ତ ଥାଆନ୍ତି । ତାଙ୍କୁ କହି ବିଦାୟ ନେବାକୁ ସୁଯୋଗ ମିଳିଲା ନାହିଁ । ଆଉ ଜଣେ ଭଦ୍ରଲୋକଙ୍କୁ କହିଲି – 'ମୁଁ ଚାଲି ଯାଉଛି – ରାଜୁବାବୁଙ୍କୁ ଟିକେ କହିଦେବେ ।' ମୁଁ ବସ୍‌ରେ ବସିଲାବେଳକୁ ବର୍ଷା ଆରମ୍ଭ ହେଲା । ଭଲ କରି ଅସରାଏ ବର୍ଷା ହୋଇଗଲା । ମୁଁ ଆସି ଭୁବନେଶ୍ୱର ଘରେ ପହଞ୍ଚିଲା ବେଳକୁ ରାତ୍ରି ୯ଟା ପାଖାପାଖି । ମୋତେ ଦେଖି ମୋ' ପତ୍ନୀ ଖପ୍ପା । ସେ କହିଲେ – 'ତୁମେ କିପରି ଲୋକ ରାଜୁବାବୁଙ୍କୁ ନକହି କିପରି ଚାଲି ଆସିଲ ? ତୁମକୁ ଖୋଜି ନପାଇ ସେ ବଡ଼ ବ୍ୟସ୍ତ । ସେ ତିନିଥର ଟେଲିଫୋନ କରି ସାରିଲେଣି ତୁମେ ପହଞ୍ଚିଲ କି ନାହିଁ । ଯାଅ ସାଙ୍ଗେ ସାଙ୍ଗେ ତାଙ୍କୁ ଟେଲିଫୋନ କରି ଭୁଲ ପାଇଁ କ୍ଷମା ମାଗ ।' ମୁଁ ସଙ୍ଗେ ସଙ୍ଗେ ରାଜୁବାବୁଙ୍କୁ ଟେଲିଫୋନ କରି ସମସ୍ତ କଥା ଜଣାଇ କ୍ଷମା ମାଗିଲି । ସେ ଥିଲେ ରାଜୁବାବୁ ।

ରାଜୁବାବୁଙ୍କ ଦେହାନ୍ତପରେ କେବଳ ପାଟକୁରାବାସୀ ନୁହନ୍ତି – ସାରା ଓଡ଼ିଶା ଜଣେ ଗାନ୍ଧିବାଦୀ ମଣିଷପରି ମଣିଷକୁ ହରାଇଲା । ରାଜୁବାବୁ ଉଚ୍ଚାରଣ କଲାମାତ୍ରେ ମୋ' ମାନସପଟରେ ଆଣ୍ଠୁ ଲୁଚୁଥିବା ମୋଟା ଖଦଡ଼ ଧୋତି ପରିହିତ, ଖଦଡ଼ ଚଦରରେ ଶରୀର ଆବୃତ୍ତ କରିଥିବା, ଶ୍ମଶ୍ରୁଶୋଭିତ ହସ ହସ ମୁଖମଣ୍ଡଳର ଏକ ଖର୍ବକାୟ ମଣିଷ ପରି ମଣିଷର ଛବି ଉଦ୍‌ଭାସିତ ହୋଇଯାଏ । ଶାରୀରିକ ଦୃଷ୍ଟିରୁ ସେ ଖର୍ବକାୟ ଥିଲେ ବି ମଣିଷପଣିଆ ଦୃଷ୍ଟିରୁ ସେ ଥିଲେ ଜଣେ ବିରାଟକାୟ ବ୍ୟକ୍ତିତ୍ୱର ଅଧିକାରୀ । ମୋ' ପାଇଁ ସେ ଥିଲେ ଜଣେ ମଣିଷପଣିଆର ମୂର୍ତ୍ତିମନ୍ତ ପ୍ରତୀକ । ତାଙ୍କର ମୃତ୍ୟୁରେ ସେହି ଅମର ଆତ୍ମା ପ୍ରତି ମୋର ବିନମ୍ର ପ୍ରଣତି ଜଣାଉଛି ।

ଏ-୫୦୨, ମୋତି କ୍ଲବ୍,
ତୋଷାଳୀ ଆପାର୍ଟମେଣ୍ଟ
ସତ୍ୟନଗର, ଭୁବନେଶ୍ୱର-୭

# ଓଡ଼ିଶାର ବରପୁତ୍ର ରାଜା ରାମଚନ୍ଦ୍ର ମର୍ଦ୍ଦରାଜ

କୃଷ୍ଣଚନ୍ଦ୍ର ସୁଆର

**ଯେ**ଉଁମାନଙ୍କ ବଳିଷ୍ଠ ନେତୃତ୍ୱ ଓ ତ୍ୟାଗ ଫଳରେ ଭାଷାଭିତ୍ତିକ ସ୍ୱତନ୍ତ୍ର ଉତ୍କଳ ଗଠନ ହୋଇଥିଲା, ସେମାନଙ୍କ ମଧ୍ୟରେ ଖଲ୍ଲିକୋଟର ତତ୍କାଳୀନ ରାଜା ପୁଣ୍ୟଶ୍ଳୋକ ସ୍ୱର୍ଗତଃ ରାମଚନ୍ଦ୍ର ମର୍ଦ୍ଦରାଜ ଦେଓ ହେଉଛନ୍ତି ଅନ୍ୟତମ ।



ସେ ଏକାଧାରରେ ଥିଲେ ଜଣେ ଓଡ଼ିଆପ୍ରାଣ ଆଦର୍ଶ ମଣିଷ, ବହୁ ଭାଷାବିତ୍, ସୁଶାସକ, ବ୍ୟବସ୍ଥାପକ, ପ୍ରବୀଣ ରାଜନୀତିଜ୍ଞ, ସଂଗଠକ, ଶିକ୍ଷାନୁରକ୍ତ, ସାମାଜିକ ସଂସ୍କାର ସଚେତକ, ସତ୍ୟାନୁରାଗୀ, ପ୍ରଜାବତ୍ସଳ ଭଦ୍ର ଓ ଶାନ୍ତଶିଷ୍ଟ ତଥା ବହୁମୁଖୀ ପ୍ରତିଭାର ଅଧିକାରୀ ।

ତାଙ୍କର ପିତା ଥିଲେ ହରିହର ମର୍ଦ୍ଦରାଜ ଜଣେ ବିଶିଷ୍ଟ ଗୁଣଗ୍ରାହୀ, ଦେଶ ମିଶ୍ରଣର ପ୍ରଧାନକର୍ମୀ, ଓଡ଼ିଆ ଭାଷା ସାହିତ୍ୟର ଉନ୍ନତିକାମୀ ଭାବେ ଚିରସ୍ମରଣୀୟ ଓ ମାତା ରାଣୀ କନକ ମଞ୍ଜରୀ ଜଣେ ରତ୍ନଗର୍ଭା, ଧର୍ମପ୍ରାଣା ଓ ପରମ ବିଦୁଷୀ । ଏ ସମ୍ବନ୍ଧେ ବ୍ୟାସକବି ଫକୀରମୋହନ ତାଙ୍କର ଉତ୍କଳ ପ୍ରସଙ୍ଗରେ ଲେଖିଛନ୍ତି–

'ଧନ୍ୟ ଧନ୍ୟ ମହାଦେବୀ କନକମଞ୍ଜରୀ
ଖଲ୍ଲିକୋଟ ଆଠଗଡ଼ ରାଜରାଜେଶ୍ୱରୀ ।
ଉତ୍କଳ ଲଳନାକୁଳେ ରଖିଲ କୀରତି
ଦେଉନ୍ତୁ ତୁମକୁ ବର ଲକ୍ଷ୍ମୀ ସରସ୍ୱତୀ ।
ବାଜୁଥିବ ଖଲ୍ଲିକୋଟ ନାମରେ ନାଗରା
କଲେଜ ସକାଶେ ଲକ୍ଷେ ଟଙ୍କା ଦେଲପରା ।
ମାତୃଭାଷା ପାଇଁ ପୁଣି ଅଛି ତୁମ୍ଭ ଟାଣ
ଚିଲିକାର ଏହି କୀର୍ତ୍ତି ରହିଗଲା ଜାଣ ।'

ଏହି ପ୍ରଥିତଯଶା ଦେବ ପ୍ରେରିତ ମନିଷୀଙ୍କର ଆବିର୍ଭାବ ହୁଏ ୧୯୦୦ ମସିହା ଜାନୁଆରୀ ମାସ ୧୩ ତାରିଖରେ । ଊନବିଂଶ ଶତାବ୍ଦୀର ଉତ୍ତରରେ ବେଙ୍ଗଲ, ଦକ୍ଷିଣରେ ମାଡ୍ରାସ ଓ ପଶ୍ଚିମରେ ସେଣ୍ଟ୍ରାଲ ପ୍ରୋଭିନ୍ସ ମଧ୍ୟରେ ବାଣ୍ଟି ହୋଇ ଓଡ଼ିଶା ଏକ ପ୍ରକାର ଖଣ୍ଡବିଖଣ୍ଡିତ ହୋଇ ଚରମ ବିପର୍ଯ୍ୟୟର ସମ୍ମୁଖୀନ ହୋଇଥିଲା ।

ସେ ଥିଲେ ପିତାମାତାଙ୍କର ଏକ ଆଦର୍ଶ ଓ ଯୋଗ୍ୟ ସନ୍ତାନ । ରାଜା ହରିହରଙ୍କ ଚେଷ୍ଟାରେ ୧୯୦୨ ମସିହାରେ ରାମଚନ୍ଦ୍ରଙ୍କ ଦ୍ୱିତୀୟ ଜନ୍ମ ବାର୍ଷିକରେ ଏକ ବନ୍ଧୁ ମିଳନର ଆୟୋଜନ କରି ରମ୍ଭା ରାଜପ୍ରାସାଦରେ ଆରମ୍ଭ କରିଥିଲେ ଖଣ୍ଡବିଖଣ୍ଡିତ ଉତ୍କଳମାତାର ଏକତ୍ରୀକରଣ ମହାଯଜ୍ଞ ବା 'ଗଞ୍ଜାମ ଜାତୀୟ ସମ୍ମିଳନୀ' । ସେହିଠାରେ ହିଁ ଉତ୍କଳ ମିଶ୍ରଣ ଆନ୍ଦୋଳନର ମୂଳଦୁଆ ସ୍ଥାପିତ ହୋଇଥିଲା । ସେହି ପବିତ୍ର କାର୍ଯ୍ୟରେ ଯେଉଁ ମହାନ୍ ବ୍ୟକ୍ତିତ୍ୱଗଣ ଅକୁଣ୍ଠ ଚିତ୍ତରେ ସହଯୋଗ ଉଦ୍ୟମ କରିଥିଲେ, ସେମାନଙ୍କ ମଧ୍ୟରେ ଥିଲେ ଓଡ଼ିଶାର ସୁନାମ ଧନ୍ୟ ଜନନାୟକ ବାରିଷ୍ଟର ମଧୁସୂଦନ ଦାସ, ଔପନ୍ୟାସିକ ଫକୀରମୋହନ ସେନାପତି, କବିବର ରାଧାନାଥ ରାୟ, ମୟୂରଭଞ୍ଜ ରାଜା ରାମଚନ୍ଦ୍ର ଭଂଜଦେବ, ସାର୍ ପର୍ଶୁରାମ ପାତ୍ର, ପଣ୍ଡିତ ନୀଳମଣି ବିଦ୍ୟାରତ୍ନ, ପଣ୍ଡିତ ଗଦାଧର ବିଦ୍ୟାରତ୍ନ, ସଦାଶିବ ବିଦ୍ୟା ଭୂଷଣ, ବଳରାମ ମହାରଣା ତଥା ମଞ୍ଜୁଷା, ତରଳା, ଟେକିଲୀ, ବୁଢ଼ାରସିଙ୍ଗି, ଚିକିଟି, ସୁରଙ୍ଗୀ ଓ ଧରାକୋଟ ରାଜା ଏବଂ ଗଞ୍ଜାମର ଅନେକ ବିଶିଷ୍ଟ ବ୍ୟକ୍ତି ।

'ଗଞ୍ଜାମ ଜାତୀୟ ସମିତି' ଉତ୍କଳ ସମ୍ମିଳନୀର ଜନ୍ମଦାତ୍ରୀ । ତେଣୁ ପଣ୍ଡିତ ଗୋପବନ୍ଧୁ ଦାସ ଲେଖିଥିଲେ–

'ଅନ୍ଧାର ଉତ୍କଳ–ନଭେ ଏତେ ଶୁଭ ଦିନେ,
ଉଇଁଛି ଉଜ୍ଜ୍ୱଳ ଆଶା–ତାରକା ଦକ୍ଷିଣେ,
ନବୋଦିତ ଯୋଗୁଁ ପ୍ରଭା ଅଳପ ବିକାଶ

ତଥାପି ଜାଳଇ ପ୍ରତି ପରାଣେ ଆଶ୍ୱାସ ।
ଧନ୍ୟ ହେ ଗଞ୍ଜାମବାସୀ ଓଡ଼ିଆ ସକଳ
ଧନ୍ୟ ତୁମ୍ଭ କଉଶଳ ଧନ୍ୟ ତୁମ୍ଭ ବଳ ।'

X X X X

ଦେଖାଇଲ ଯେ ଉତ୍ସାହ ଉଦ୍ୟମ ଶକତି,
ମାତୃଭାଷା ମାତୃଭୂମି ଅଟଳ ଭକତି
ଦେଲ ଯେ ଜାତୀୟ ଭାବ ଦୃଢ଼ ପରିଚୟ,
ଚିରଦିନ ଗାଇବେ ତା' ଉତ୍କଳ-ତନୟା ।'

(ଅବକାଶ ଚିନ୍ତା)

ମାତ୍ର ନଅ ବର୍ଷ ବୟସରେ ରାମଚନ୍ଦ୍ରଙ୍କର ପିତୃ ବିୟୋଗ ଘଟିଥିଲା । ସେ ମାନ୍ଦ୍ରାଜରୁ ପାଠପଢ଼ା ସାରି ରାଜସିଂହାସନ ଆରୋହଣ କରିବାଠାରୁ ହିଁ ଦେଶ ମିଶ୍ରଣ ଓ ଓଡ଼ିଆ ଭାଷାର ଉତ୍ଥାନ ନିମନ୍ତେ କାର୍ଯ୍ୟ ଆରମ୍ଭ କରିଥିଲେ । ଯୁବରାଜ ରାମଚନ୍ଦ୍ରଙ୍କ ଉପରେ ସଂସ୍କୃତିସଂପନ୍ନା ମାତା ଓ ପିତାଙ୍କର ପ୍ରଭାବ ଗଭୀର ଭାବରେ ପ୍ରତିଫଳିତ ହୋଇଥିଲା । ୧୯୨୨ ମସିହାରୁ ୧୯୩୭ ଯାଏଁ ଗଞ୍ଜାମ ଜିଲ୍ଲା ବୋର୍ଡ଼ର ସେ ସଭାପତି ରହି ଜିଲ୍ଲାର ବଡ଼ ବଡ଼ ନଦୀମାନଙ୍କରେ ପୋଲ ଓ ରାସ୍ତା ନିର୍ମାଣ କରି ପ୍ରଭୂତ ଉନ୍ନତି କରିଥିଲେ । ତେଣୁ ଲୋକମାନେ ତାଙ୍କୁ ସେତୁ ସଭାପତି ଆଖ୍ୟା ଦେଇଥିଲେ । ସେତେବେଳେ ଋଷିକୁଲ୍ୟା, ଘୋଡ଼ାହାଡ଼, ବାହୁଦା, ବଡ଼ନଦୀ, ବଂଶଧାରା, ମହେନ୍ଦ୍ରତନୟା ଆଦି ଗଞ୍ଜାମ ଜିଲ୍ଲାର ବିଭିନ୍ନ ନଦୀରେ ପୋଲ ନିର୍ମିତ ହୋଇ ଗ୍ରାମାଞ୍ଚଳ ଲୋକମାନଙ୍କର ଯାତାୟାତର ବହୁ ସୁବିଧା ହୋଇଥିଲା । ଦେଶ ମିଶ୍ରଣ ପାଇଁ ସରକାର ନିଯୁକ୍ତି କରିଥିବା ଫିଲିପ୍‌ଡଫ୍ - କମିଶନଙ୍କୁ ରମ୍ଭାରେ ୧୯୨୪ ମସିହାରେ ଆତିଥ୍ୟ ଦେଇ ଓଡ଼ିଆ ଭାଷୀ ଅଞ୍ଚଳକୁ ଏକ ଶାସନାଧୀନ ନ କଲେ ଏ ଜାତିର ବୈଷୟିକ ଉନ୍ନତି ଅସମ୍ଭବ ବୋଲି ହୃଦବୋଧ କରାଇ ପାରିଥିଲେ । ୧୯୨୩ ମସିହାରେ ରାମଚନ୍ଦ୍ର ମାନ୍ଦ୍ରାଜ ଲାଟସଭାର ସଦସ୍ୟ ରହି ଓଡ଼ିଆ ଜାତିର ଉନ୍ନତି ପାଇଁ ମଧ୍ୟ ଉଦ୍ୟମ କରିଥିଲେ । ସ୍ୱରାଜ୍ୟ ଆନ୍ଦୋଳନ ପରିପ୍ରେକ୍ଷୀରେ ୧୯୨୭ ମସିହାରେ ଜାତିର ଜନକ ମହାତ୍ମା ଗାନ୍ଧୀ ରମ୍ଭା ରାଜପ୍ରାସାଦରେ ଅବସ୍ଥାନ କରି ଅହିଂସା ଉପାୟରେ ସ୍ୱାଧୀନତା ଆନ୍ଦୋଳନରେ ଜନସାଧାରଣଙ୍କୁ ଅଧିକରୁ ଅଧିକ ପରିମାଣରେ ଭାଗ ନେବାପାଇଁ ବିଭିନ୍ନ ସଭାମାନଙ୍କରେ ଉଦ୍‌ବୋଧନ ଦେଇଥିଲେ ଓ ବିଦେଶୀ ଲୁଗା ବର୍ଜନ କରି ଖଦୀ ଲୁଗା ବ୍ୟବହାର ଉପରେ ଗୁରୁତ୍ୱାରୋପ କରିଥିଲେ । କଚେରୀକୁ ନଯାଇ ଗ୍ରାମପଞ୍ଚାୟତଙ୍କଦ୍ୱାରା ଆପୋଷ ଆଲୋଚନା ମାଧ୍ୟମରେ ବିଭିନ୍ନ ସମସ୍ୟାର ସମାଧାନ କରାଇବା ପାଇଁ ସଚେତନତା ସୃଷ୍ଟି କରିଥିଲେ । ବ୍ରିଟିଶ ସରକାରଙ୍କ ଶତ୍ରୁ ରୂପେ ବିବେଚିତ ହେଉଥିବା ମହାତ୍ମା ଗାନ୍ଧୀଙ୍କୁ ସେତେବେଳେ ନିଜ ଭବନରେ ଅତିଥି କରିବା କମ୍ ସାହସିକତାର କଥା ନଥିଲା । ଏଥିରୁ ତାଙ୍କର ନିର୍ମଳ ଦେଶପ୍ରେମ ଓ ସହୃଦୟତାର ପରିଚୟ ମିଳେ । ଗାନ୍ଧିଜୀଙ୍କ ଆହ୍ୱାନର ଫଳସ୍ୱରୂପ ସେହି ଅଞ୍ଚଳର ବହୁ ବ୍ୟକ୍ତି ସ୍ୱାଧୀନତା ଆନ୍ଦୋଳନରେ ଲମ୍ଫ ପ୍ରଦାନ କରି ଜେଲବରଣ କରିଥିଲେ । ସେହି ସମୟରେ ସତ୍ୟାଗ୍ରହରେ ଯୋଗ ଦେଇ ଲୋକେ କାରାବରଣ କରି ଫେରିବା ପରେ ତାଙ୍କୁ ଜାତି ହରାଇବାକୁ ପଡୁଥିଲା । ଏହି କୁ-ପ୍ରଥାକୁ ରାମଚନ୍ଦ୍ର ଉଠାଇ ଦେଇଥିଲେ ।

୧୯୩୨ ମସିହାରେ ସେ ମାନ୍ଦ୍ରାଜ କାଉନସିଲରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ଓ ବିଚ୍ଛିନ୍ନାଞ୍ଚଳର ଏକତ୍ରୀକରଣ ପାଇଁ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ ଏବଂ ଦକ୍ଷିଣ ଭାରତ ଜମିଦାରଙ୍କ ପ୍ରତିନିଧି ଭାବେ ଲଣ୍ଡନ ଯାତ୍ରା କରି ତୃତୀୟ ଗୋଲଟେବୁଲ ବୈଠକରେ ଓଡ଼ିଶାର ଦାବିକୁ ଯଥାର୍ଥ ଭାବେ ଉପସ୍ଥାପନ କରିଥିଲେ । ଏଥିରେ ପ୍ରୀତ ହୋଇ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏକ ଅଭିନନ୍ଦନ ବାର୍ତ୍ତା ଲଣ୍ଡନ ପଠାଇଥିଲେ । ୧୯୩୩ ମସିହାରେ ମିଳିତ ପାର୍ଲାମେଣ୍ଟାରୀ କମିଟି (Joint Parliamentary Committee)ରେ ସେ ଯୋଗ ଦେଇ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଚେଷ୍ଟା କରିଥିଲେ । ଓଡ଼େନେଲ କମିଟି ସମ୍ମୁଖରେ ପାରଳାଖେମୁଣ୍ଡି, ଜୟପୁର ଇତ୍ୟାଦିକୁ ଅନ୍ତର୍ଭୁକ୍ତ କରିବାପାଇଁ ବଳିଷ୍ଠ ଯୁକ୍ତି ସେ ଉପସ୍ଥାପନ କରିଥିଲେ ।

୧୯୩୫ ମସିହାରେ ଭାରତ ଶାସନ ଆଇନ ପ୍ରଣୀତ ହେଲା । ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ହେଲା । କିନ୍ତୁ ବହୁ ଓଡ଼ିଆ ଭାଷୀ ଅଞ୍ଚଳ ଅନ୍ୟ ପ୍ରଦେଶରେ ରହିଗଲା । ଓଡ଼ିଶା ପ୍ରଶାସନ ସକାଶେ ଗଠିତ ପ୍ରଥମ ଉପଦେଷ୍ଟା ପରିଷଦର ଅନ୍ୟତମ ସଦସ୍ୟ ଭାବେ ସେ ନିଯୁକ୍ତି ପାଇଥିଲେ । ତାଙ୍କର ବ୍ୟକ୍ତିଗତ ବୈଶିଷ୍ଟ୍ୟ ପାଇଁ ଭାରତର ଭାଇସରାୟ ଏବଂ ଗଭର୍ଣ୍ଣର ଜେନେରାଲ ତାଙ୍କୁ ରାଜା ବାହାଦୁର ଉପାଧି ପ୍ରଦାନ କରିଥିଲେ ଏବଂ ସେ ୧୯୩୭ ମସିହାଠାରୁ ୧୯୪୫ ମସିହା ପର୍ଯ୍ୟନ୍ତ ଅପ୍ରତିଦ୍ୱନ୍ଦୀ ଭାବେ ଓଡ଼ିଶା ବିଧାନସଭାର ସଭ୍ୟ ରହିଥିଲେ । ୧୯୩୯ ମସିହାରେ ୟୁରୋପୀୟ ମହାସମର ଆରମ୍ଭ ହେବା ପରେ ଭାରତ ସରକାରଙ୍କ ରାଜ୍ୟ ପ୍ରତିରକ୍ଷା କାଉନସିଲ (National Defence Council)ରେ ଓଡ଼ିଶା ପକ୍ଷରୁ ସେ ସଦସ୍ୟ ରହିଥିଲେ । ୧୯୪୨ ମସିହା ଭାରତଛାଡ଼

ଆନ୍ଦୋଳନବେଳେ ମନ୍ତ୍ରିମଣ୍ଡଳ ଇସ୍ତଫା ପ୍ରଦାନ କରିଥିଲେ । ରାଜା ବାହାଦୁର ରାମଚନ୍ଦ୍ରଙ୍କୁ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ଅନୁରୋଧ କରାଯାଇଥିଲେ ମଧ୍ୟ ସେ ଏହା ପ୍ରତ୍ୟାଖ୍ୟାନ କରିଥିଲେ । ୧୯୪୫ରେ ସେ କେନ୍ଦ୍ର ବ୍ୟବସ୍ଥା ସଭାର ସଦସ୍ୟ ହୋଇଥିଲେ । ମହାତ୍ମା ଗାନ୍ଧୀଙ୍କ ସହ ଜମିଦାରୀ ଉଚ୍ଛେଦ ବିଷୟରେ ସେ ୧୯୪୬ ମସିହାରେ ଦିଲ୍ଲୀଠାରେ ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଚଳାଇ ପ୍ରଜା ଓ ରାଜା ଉଭୟେ ଯେଉଁଭଳି ଅସୁବିଧାର ସମ୍ମୁଖୀନ ନହୁଅନ୍ତି ସେଥିନିମନ୍ତେ କେତେକ ପ୍ରସ୍ତାବ ଦେଇଥିଲେ ।

ଓଡ଼ିଶା ବିଧାନସଭାର ସଦସ୍ୟ ଥିଲାବେଳେ ସେ ଅନେକ କଲ୍ୟାଣମୂଳକ କାର୍ଯ୍ୟ କରିଥିଲେ । ୧୯୫୩ରେ ଜମିଦାରୀ ଉଚ୍ଛେଦ ପରେ ୧୯୫୫ରେ ବ୍ରହ୍ମପୁରଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ତାଙ୍କ ସହଯୋଗରେ ହୋଇଥିଲା । ଉକ୍ତ ଅଧିବେଶନରେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ, ଗୋବିନ୍ଦ ବଲ୍ଲଭ ପନ୍ଥ, ଲାଲବାହାଦୁର ଶାସ୍ତ୍ରୀ, ୟୁ.ଏନ୍. ଧେବର ପ୍ରଭୃତି ଗଣ୍ୟମାନ୍ୟ ବ୍ୟକ୍ତି ଯୋଗ ଦେଇ ରମ୍ଭାରେ ରାଜାଙ୍କର ଆତିଥ୍ୟ ଗ୍ରହଣ କରିଥିଲେ । ଏତଦ୍‌ବ୍ୟତୀତ ରାଜାଙ୍କର ଅତିଥି ପରାୟଣତା ତଥା ଖଲ୍ଲିକୋଟର ପ୍ରାକୃତିକ ଦୃଶ୍ୟାବଳୀ ଓ ଚିଲିକାର ମନୋମୁଗ୍ଧକର ଦୃଶ୍ୟରେ ଆକୃଷ୍ଟ ହୋଇଥିଲେ ଦେଶବିଦେଶରୁ ବହୁ ବିଶିଷ୍ଟ ବ୍ୟକ୍ତି ରମ୍ଭା ଆସି ତାଙ୍କ ରାଜପ୍ରାସାଦରେ ଅତିଥି ରୂପେ ଅବସ୍ଥାନ କରୁଥିଲେ । ୧୯୫୭ ମସିହାରେ ବିଧାନସଭାକୁ ନିର୍ବାଚିତ ହୋଇ ୧୯୫୯ ପର୍ଯ୍ୟନ୍ତ ଓଡ଼ିଶା ସରକାରଙ୍କ ନଦୀ ଉପତ୍ୟକା ଉନ୍ନୟନ, ଦୁର୍ନୀତି ନିର୍ବାରଣ ଓ ରାଜଧାନୀ ଉନ୍ନୟନ ବିଭାଗର ମନ୍ତ୍ରୀ ଭାବରେ ବହୁ ଉନ୍ନତିମୂଳକ ଓ ଜନହିତକର କାର୍ଯ୍ୟ କରିଥିଲେ । ୧୯୬୧ ମସିହାରେ ପୁନଶ୍ଚ ସେ ବିଧାନସଭାକୁ ନିର୍ବାଚିତ ହୋଇଥିଲେ ଏବଂ କିଛି ଦିନ ଓଡ଼ିଶା ସମବାୟ ବ୍ୟାଙ୍କ ସଭାପତି ଭାବେ କାର୍ଯ୍ୟ କରିଥିଲେ ।

ସେ ପିତାଙ୍କ ପ୍ରତିଷ୍ଠିତ ଖଲ୍ଲିକୋଟ କଲେଜ ଓ ଖଲ୍ଲିକୋଟ, ବୋଇରାଣୀ, କବିସୂର୍ଯ୍ୟନଗର ଉଚ୍ଚ ଇଂରାଜୀ ବିଦ୍ୟାଳୟ ଓ ବୋଇରାଣୀସ୍ଥ ସଂସ୍କୃତ ଟୋଲମାନଙ୍କୁ ଅନେକ ସାହାଯ୍ୟ ଦେଇଥିଲେ । ଖଲ୍ଲିକୋଟ କଲେଜରେ ନୂତନ ବିଭାଗ ଖୋଲିବା, ଛାତ୍ରାବାସାଦି ନିର୍ମାଣ କରିବା ସାଂଗକୁ ବିଭିନ୍ନ ବିଭାଗର ସେ ଉନ୍ନତି କରିଥିଲେ । ଶିକ୍ଷା ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ସେ କବିସୂର୍ଯ୍ୟନଗର, ଖଲ୍ଲିକୋଟ ଇତ୍ୟାଦି ସ୍ଥାନମାନଙ୍କରେ ବହୁ ଶିକ୍ଷାନୁଷ୍ଠାନ ଓ ଚିକିତ୍ସାଳୟ ମଧ୍ୟ ସ୍ଥାପନ କରିଥିଲେ । ଦେଶ ଗଠନ, ଶିକ୍ଷା ଚରିତ୍ର ଗଠନ ଓ ଉତ୍ତମ ନାଗରିକ ସୃଷ୍ଟି ତାଙ୍କର ଲକ୍ଷ୍ୟ ଥିଲା । କବିବର ଚିନ୍ତାମଣି ମହାନ୍ତି ତାଙ୍କ ସଂପର୍କରେ ଲେଖିଛନ୍ତି,

‘ଆଉ ଏକ ପୁତ୍ର ମୋର ମହା ବିଦ୍ୟାବନ୍ତ
ରାଜନ୍ୟ ବାଞ୍ଛିତ ସର୍ବ ସଦ୍‌ଗୁଣ ଗରିଷ୍ଠ ।
ଘୋଷେ ତା’ର ଯଶଖ୍ୟାତି ମହୋଦଧି ଜେମା
ସୁଷମା ସୃଷ୍ଟିର ଚାରୁ-ଚନ୍ଦ୍ରିକା ଚିଲିକା ।
ଉଚ୍ଚ କଣ୍ଠେ ଘୋଷେ ପୁଣି ‘ନିର୍ମଳ ନିର୍ଝର’
ଝର୍ଝର-ଝଙ୍କାରେ ସଦା ଆଦିବା ରଜନୀ ।
ସେହି ରାଜା ରାମଚନ୍ଦ୍ର ରାମଚନ୍ଦ୍ରୋ ନାମ
ରୂପେ ଗୁଣେ ଶୀତଳ ଧନ୍ୟ ସାଧୁ ସଦାଶୟ ।’

ଏକଦା ବଙ୍ଗର ନବାବ ତକି ଖାଁର ଆକ୍ରମଣରୁ ରକ୍ଷା ପାଇବା ପାଇଁ ଆରାଧ୍ୟ ଠାକୁର ଶ୍ରୀଜଗନ୍ନାଥଙ୍କୁ ଗଞ୍ଜାମ ଆଠଗଡ଼ ମାରଦାକୁ ଦୁଇ ବର୍ଷ ସକାଶେ ଅଣାଯାଇଥିଲା ଓ ଖଲ୍ଲିକୋଟର ପାଇକସେନା ଠାକୁରଙ୍କୁ ସୁରକ୍ଷା କରିଥିଲେ । ଆଠଗଡ଼ ରାଜ୍ୟ ସେତେବେଳେ ଖଲ୍ଲିକୋଟ ରାଜାଙ୍କ ଅଧୀନରେ ଥିଲା । ତେଣୁ ‘ଶରଣ ପଞ୍ଜରି ମାରଦା’ ନାମରେ ଖ୍ୟାତ ଏ ସ୍ଥଳୀ ଏବେବି ବିଦ୍ୟମାନ ଓ ନିତ୍ୟ ପୂଜିତ । ଏ ସ୍ମୃତିକୁ ଉଜ୍ଜୀବିତ କରି ରଖିବା ପାଇଁ ଆଜି ସୁଦ୍ଧା ପୁରୀ ଜଗନ୍ନାଥ ମନ୍ଦିରରେ ଏକାଦଶୀ ଦିନ ମହାଦୀପ ଉଠିଲାବେଳେ ଡାକପଡ଼େ ‘ଖଲ୍ଲିକୋଟ ରାଣାକୁ ଶଙ୍ଖରେ ପୂରାଇ ଚକ୍ର ଆଢୁଆଳରେ ରହିବା ଆଜ୍ଞା ହେଉ ହେ ମଣିମା ।’ ଏତଦ୍‌ବ୍ୟତୀତ ମୁକ୍ତିମଣ୍ଡପ ପଣ୍ଡିତ ସଭାରେ ଖଲ୍ଲିକୋଟରେ ସ୍ଥାନ ସଂରକ୍ଷିତ । ରାଜା ରାମଚନ୍ଦ୍ରଙ୍କ ନାମକୁ ସ୍ମରଣୀୟ କରିବା ନିମନ୍ତେ ସର୍ବସାଧାରଣରେ ଖଲ୍ଲିକୋଟର ରାମଚନ୍ଦ୍ର ମର୍ଦ୍ଦରାଜ ବିଜ୍ଞାନ କଲେଜ, ଖଲ୍ଲିକୋଟ ମର୍ଦ୍ଦରାଜ ଉଚ୍ଚ ଇଂରାଜୀ ବିଦ୍ୟାଳୟର ଛାତ୍ରାବାସ, ସ୍ଥାନୀୟ କଳା ବିଦ୍ୟାଳୟ ଓ କନ୍ହେଇପୁରଠାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟ ପ୍ରଭୃତି ତାଙ୍କରି ନାମରେ ନାମିତ ହୋଇଅଛି ।

ଓଡ଼ିଆ ଆନ୍ଦୋଳନ ଇତିହାସରେ ଏକ ଅମ୍ଳାନ ଅଧ୍ୟାୟ ସୃଷ୍ଟି କରିଥିବା ଏହି ଉଜ୍ଜ୍ୱଳ ଜ୍ୟୋତିଷ୍କ ଗତ ତା.୨୩.୧.୧୯୬୩ରିଖରେ ଉତ୍କଳ ଆକାଶରୁ ଅସ୍ତମିତ ହୋଇଥିଲେ । ତାଙ୍କର ଉଚ୍ଚ ଆଦର୍ଶ ଓ ନିଃସ୍ୱାର୍ଥପର ନେତୃତ୍ୱ ଯୁଗ ଯୁଗ ଧରି ଏ ଜାତିକୁ ଓ ଅନୁ କରୁଥିବ, ଏହା ନିଃସନ୍ଦେହ ।

ଏମ୍.ଆଇ.ଜି.ୱାନ୍-୪୨/୧
ଚନ୍ଦ୍ରଶେଖରପୁର ହାଉସିଂବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬

# ଓଡ଼ିଶା ନବନିର୍ମାଣ ଯୁଗ ଓ ଶଶିଭୂଷଣ ରଥ

ଡଃ ପ୍ରସନ୍ନ କୁମାର ସ୍ୱାଇଁ

**ବିଂ**ଶ ଶତକର ପ୍ରଥମ ଦଶକରେ ଓଡ଼ିଆ ଜାତୀୟ ଜୀବନକୁ ଚଳଚଞ୍ଚଳ କରିବା ସହିତ ମହାଭାରତୀୟ ସ୍ରୋତରେ ଓଡ଼ିଆମାନଙ୍କୁ ସାମିଲ କରିବାରେ ଶଶିଭୂଷଣ ରଥ ଥିଲେ ଓଡ଼ିଶାର ଜଣେ ପଥିକୃତ ସ୍ରଷ୍ଟା । ୧୮୮୫ ମସିହା ଜାନୁଆରୀ ୧ ତାରିଖରେ ତତ୍କାଳୀନ ମାନ୍ଦ୍ରାଜ ପ୍ରେସିଡେନ୍ସିର ଗଞ୍ଜାମ ଅନ୍ତର୍ଗତ ସୋରଡ଼ାର ମହୁଲିଆଠାରେ ଜନ୍ମଗ୍ରହଣ କରିଥିବା ଏହି ସ୍ରଷ୍ଟା ଯେ ଦିନେ ସୁପ୍ତ ଓଡ଼ିଆ ଜାତିକୁ ଚଳଚଞ୍ଚଳ କରି ଉନ୍ନତି ପଥରେ ଆଗେଇ ନେବ, ଏକଥା ତାଙ୍କର ପିତାମାତାଙ୍କଠାରୁ ଆରମ୍ଭ କରି କେହି ସ୍ୱପ୍ନରେ ସୁଦ୍ଧା ଭାବି ନଥିଲେ । ସ୍ରଷ୍ଟାଙ୍କ ଜନ୍ମକାଳୀନ ସୋରଡ଼ା ଥିଲା ଅଗମ୍ୟ, ଘଞ୍ଚ ଅରଣ୍ୟାନୀ ପରିପୂର୍ଣ୍ଣ । ତୁଳସୀ ଦୁଇପତ୍ରରୁ ବାସିଲା ପରି ଶଶିଭୂଷଣଙ୍କ ଶୈଶବର କିଛିକାଳ ମହୁଲିଆ ଓ ରସୁଲକୋଣ୍ଡାରେ ହିଁ ଅତିବାହିତ ହୋଇଥିଲା । ମାତ୍ର ସେତେବେଳେ ସେଠାରେ ଅଧିକ ଶିକ୍ଷାଲାଭର ସୁବିଧା ନଥିବାରୁ ତାଙ୍କର ଆତ୍ମୀୟସ୍ୱଜନ ଓ ଅଭିଭାବକଙ୍କ ନିଷ୍ପତ୍ତିକ୍ରମେ ଶଶିଭୂଷଣଙ୍କୁ ସୁଦୂର ପାରଳାଖେମୁଣ୍ଡି ଯିବାକୁ ପଡ଼ିଥିଲା । ପାରଳାଖେମୁଣ୍ଡିଠାରେ ଶଶିଭୂଷଣ ବିଦ୍ୟାଳୟ ଛାତ୍ରାବାସରେ ରହି ୧୯୦୨ ମସିହାରେ ମାଟ୍ରିକ୍ ପାସ୍ କରିଥିଲେ ।



ପାରଳାଖେମୁଣ୍ଡି ଥିଲା ସେ କାଳରେ ଏକ ଦେଶୀୟ ରାଜ୍ୟ ଓ ଶିକ୍ଷା । ସଂସ୍କୃତି, ସାହିତ୍ୟ ରାଜନୀତି – ସବୁ କ୍ଷେତ୍ରରେ ଖୁବ୍ ସମୃଦ୍ଧ । ଶଶିଭୂଷଣଙ୍କର କୈଶୋର ଓ ଆଦ୍ୟଯୌବନ ଏହି ଶିକ୍ଷା ଓ ସଂସ୍କୃତି ସମୃଦ୍ଧ ସହରରେ କଟିଥିବାରୁ ତାଙ୍କର ଦୃଷ୍ଟିଭଙ୍ଗୀରେ ଆସିଥିଲା ଏକ ଅସମ୍ଭାବିତ ପରିବର୍ତ୍ତନ । ଓଡ଼ିଆ ଭାଷା–ସାହିତ୍ୟ–ସଂସ୍କୃତିର ଉନ୍ନତି ପାଇଁ ସେ ଏହି ପାରଳାଖେମୁଣ୍ଡିରୁ ହିଁ ଗଭୀର ପ୍ରତିଶ୍ରୁତି ପାଇଥିଲେ । ନିଜର ସ୍ୱପ୍ନକୁ ସାକାର କରିବା ପାଇଁ ତାଙ୍କୁ ସେତେବେଳେ କିଛିକାଳ ବମ୍ବେ ଓ କଲିକତାରେ ଅତିବାହିତ କରିବାକୁ ପଡ଼ିଥିଲା । ବମ୍ବେରେ ଶଶିଭୂଷଣ ବ୍ୟବସାୟିକ ଦୃଷ୍ଟିକୋଣ ନେଇ ନିଜର କର୍ମମୟ ଜୀବନର ଅୟମାରମ୍ଭ କରିଥିଲେ । ସେତେବେଳେ ସେ ସେଠାରେ ପ୍ରଥମେ ରଥ ଏଣ୍ଡ୍ କୋଃ ନାମରେ ଏକ ଯୋତା ବ୍ୟବସାୟ ପ୍ରତିଷ୍ଠାନ ଆରମ୍ଭ କରିଥିଲେ । ଏହି ଯୋତା ଖୁବ୍ ଭଲ ବିକ୍ରୀ ହେବାରୁ ସେ ସେଠାରେ ଏକ ଯୋତା ପ୍ରସ୍ତୁତି କାରଖାନା କରିଥିଲେ । ମାତ୍ର ସ୍ଥାନୀୟ ଜନସାଧାରଣଙ୍କର ବ୍ୟବସାୟିକ ବିଷଦୃଷ୍ଟିର ଶିକାର ହେବାରୁ ତାଙ୍କୁ ସବୁଦିନ ପାଇଁ ବମ୍ବେ ସହର ପରିତ୍ୟାଗ କରିବାକୁ ପଡ଼ିଥିଲା । ଯୋତା ବ୍ୟବସାୟରେ ବିପୁଳ ଅଭିଜ୍ଞତା ସହିତ ଶଶିଭୂଷଣ କଟକ ଫେରିଆସି ଉତ୍କଳ ଗୌରବ ମଧୁସୂଦନ ଦାସଙ୍କ ପ୍ରତିଷ୍ଠିତ 'ଉତ୍କଳ ଟ୍ୟାନେରୀ'ରେ କିଛିକାଳ ମ୍ୟାନେଜର ଭାବରେ ବିତାଇଥିଲେ । 'ଉତ୍କଳ ଟ୍ୟାନେରୀ' ବିପୁଳ କ୍ଷତିର ସମ୍ମୁଖୀନ ହେବାରୁ ସେଠାରେ ଅଧିକ କାଳ ରହିବା ଅନୁଚିତ ମଣି ସେ କଲିକତା ଚାଲି ଯାଇଥିଲେ । କଲିକତାରେ ଅବସ୍ଥାନ କାଳରେ ସେ ସେଠାରେ ବସବାସ କରୁଥିବା ନିରକ୍ଷର ଓ ଶ୍ରମିକଶ୍ରେଣୀର ଓଡ଼ିଆମାନଙ୍କୁ ସାହାଯ୍ୟ କରିବାକୁ ପ୍ରୟାସୀ ହୋଇ ଗୋଟିଏ ଔଷଧ କମ୍ପାନୀରେ ଯୋଗ ଦେଇ ସେଠାକାର ମ୍ୟାଲେରିଆ ପୀଡ଼ିତ ଓଡ଼ିଆମାନଙ୍କ ସେବା ଶୁଶ୍ରୁଷା କରୁଥିଲେ । ଫଳତଃ କଲିକତାରେ ଥିବା ଓଡ଼ିଆମାନଙ୍କର ଶଶିଭୂଷଣଙ୍କପ୍ରତି ଯଥେଷ୍ଟ ସୁନାମ ବୃଦ୍ଧି ପାଇଥିଲା ।

ଏହି କଲିକତାରେ ରହଣିକାଳରେ ଶଶିଭୂଷଣଙ୍କ ଜୀବନରେ ଏକ ଅଭୂତପୂର୍ବ ପରିବର୍ତ୍ତନ ଆସିଥିଲା ।

ସେହିଠାରେ ହିଁ ସେ ଉତ୍କଳଗୌରବ ମଧୁସୂଦନ, ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ କୃପାସିନ୍ଧୁ ମିଶ୍ର ପ୍ରଭୃତିଙ୍କର ଘନିଷ୍ଠ ସଂସ୍ପର୍ଶରେ ଆସିଥିଲେ । ବାଣିଜ୍ୟ ବ୍ୟବସାୟ ବଦଳରେ ଦେଶ ଗଠନ ଓ ଦେଶସେବାର ବ୍ରତ ହିଁ ଆଲୋଚ୍ୟ ବନ୍ଧୁ ଓ ସୁହୃଦ୍‌ମାନଙ୍କଠାରୁ ସେ ଲାଭ କରିଥିଲେ । ନିଜ ଜନ୍ମମାଟି ଗଞ୍ଜାମ ସମେତ ଫୁଲବାଣୀ, କନ୍ଧମାଳ, ଜୟପୁର ପ୍ରଭୃତି ସେତେବେଳେ ମାନ୍ଦ୍ରାଜ ଶାସନାଧୀନ ଥିଲା । ଗଞ୍ଜାମ ଜିଲ୍ଲାର ସାଧାରଣ ଜନତା ସେ କାଳରେ ସ୍ୱାଭାବିକ ରୀତିରେ ତେଲୁଗୁ ଭାଷାରେ କଥାବାର୍ତ୍ତା ହେବା ସହିତ ତେଲୁଗୁ ସଂସ୍କୃତିପ୍ରତି ଅଧିକ ଆକର୍ଷିତ ହୋଇପଡ଼ିଥିଲେ । ପୁନଶ୍ଚ ସେତେବେଳେ ବ୍ରହ୍ମପୁର ପୌରପାଳିକାର ପ୍ରାୟ ସମସ୍ତ ସଦସ୍ୟ ଥିଲେ ଅଣଓଡ଼ିଆ । ଗଞ୍ଜାମର ସରକାରୀ କଳକୁ ଅଣଓଡ଼ିଆ ତେଲୁଗୁମାନେ ନିୟନ୍ତ୍ରଣ କରୁଥିଲେ । ସେହି ଅଞ୍ଚଳର ଶିକ୍ଷା, ସଂସ୍କୃତି, ସାମାଜିକ ଓ ଆର୍ଥନୀତିକ ବ୍ୟବସ୍ଥା ମଧ୍ୟ ସେହିମାନଙ୍କ ଅଧୀନରେ ରହି ସେହି ତେଲୁଗୁଙ୍କଦ୍ୱାରା ନିୟନ୍ତ୍ରିତ ହେଉଥିଲା । ଫଳତଃ ଉତ୍କଳଗୌରବ ମଧୁସୂଦନ ସାଧାରଣ ଓଡ଼ିଆଙ୍କ ଉଦ୍ଦେଶ୍ୟରେ ଉଦ୍ଦିଷ୍ଟ ଉଦ୍‌ବୋଧନୀମୂଳକ ଗୀତିକାରେ କ୍ଷୋଭ ପ୍ରକାଶ କରି ଗାନ କରିଥିଲେ –

'ମାଆ ମାଆ ବୋଲି କେତେ ମୁଁ ଖୋଜିଲି
ମାଆକୁ ପାଇଲି ନାହିଁ,
ଭାଇ ଭାଇ ବୋଲି କେତେ ମୁଁ ଡାକିଲି
ନଦେଲେ ଉତ୍ତର କେହି ।'

(ସନ୍ତାନର ଉକ୍ତି)

ଏହିପରି ଏକ ସନ୍ଧିକ୍ଷଣରେ ଜାତୀୟ ଚେତନା ସହିତ ନିଜକୁ ଏକାନ୍ତ ଭାବେ ସଂଶ୍ଲିଷ୍ଟ କରି ଦେଇଥିଲେ ଶଶିଭୂଷଣ ରଥ ଏବଂ ବାଣିଜ୍ୟ ବ୍ୟବସାୟରୁ ଓହରି ଆସି ସେ ନୂତନ ଓଡ଼ିଶା ଗଠନର ସ୍ୱପ୍ନ ଦେଖିଥିଲେ ।

କଲିକତାରୁ ଗଞ୍ଜାମକୁ ଫେରି ଆସିବା ପରେ ମଣି କାଞ୍ଚନର ସଂଯୋଗ ପରି ଗଞ୍ଜାମରୁ ସେ କାଳରେ ପ୍ରକାଶିତ 'ପ୍ରଜାବନ୍ଧୁ' ପତ୍ରିକାର ସଂପାଦକ ନୀଳମଣି ବିଦ୍ୟାରତ୍ନଙ୍କ ସହିତ ତାଙ୍କର ବହୁବାର ସାକ୍ଷାତାଲୋଚନା ହୋଇଥିଲା । ୧୯୦୮ ମସିହା ବେଳକୁ ବଡ଼ଖେମୁଣ୍ଡିର ରାଜା କୃପାମୟ ଦେବଙ୍କ ସହିତ ଦେଶ ଗଠନ ପାଇଁ ସେ ମଧ୍ୟ ବହୁ ସମୟରେ ଆଳାପ ଆଲୋଚନା କରୁଥିଲେ । ଏତିକିବେଳେ କୃପାମୟ ଦେବ 'ଗଞ୍ଜାମ ଗୁଣଦର୍ପଣ' ନାମରେ ଯେଉଁ ପତ୍ରିକା ପ୍ରକାଶ କରିଥିଲେ ତାହାର ସଂପାଦକ ଥିଲେ, ତାହାର ସଂପାଦକ ଥିଲେ ନୀଳମଣି ବିଦ୍ୟାରତ୍ନ । ଗଞ୍ଜାମରୁ ପ୍ରକାଶିତ ଦୁଇଗୋଟି ପତ୍ରିକାର ସଂପାଦନାର ଅନୁଭୂତି ହିଁ ନୀଳମଣିଙ୍କ ମନରେ ନବଉତ୍କଳର ଗଠନର ସ୍ୱପ୍ନକୁ ସାକାର କରିବା ପାଇଁ ଦାନା ବାନ୍ଧି ଥିଲା । ନୀଳମଣି ବିଦ୍ୟାରତ୍ନ ନିଜ ମନର କଥାକୁ ସେ ଦିନର ଉଦୀୟମାନ ଯୁବକ ଶଶିଭୂଷଣଙ୍କ ସମ୍ମୁଖରେ ପ୍ରକାଶ କରିଥିଲେ । ଶଶିଭୂଷଣ ଏହିପରି ଏକ ସୁଯୋଗର ଅପେକ୍ଷାରେ ରହିଥିଲେ । ନବ ଓଡ଼ିଶା ଗଠନ ନିମିତ୍ତ ଜନଜାଗରଣର ଆବଶ୍ୟକତା ଅନୁଭବ କରି ଶଶିଭୂଷଣ ସେହିଦିନ ଏକ ସମ୍ବାଦପତ୍ର ପ୍ରକାଶ କରିବାପାଇଁ ବଜ୍ର ଶପଥ ନେଇଥିଲେ । ଇଚ୍ଛାଥିଲେ ଉପାୟ ଛାଏଁ ଛାଏଁ ଆସିବା ପରି ଘୋର ଆର୍ଥିକ ପ୍ରତିବନ୍ଧକ ସତ୍ତ୍ୱେ ବି ନୀଳମଣିଙ୍କ ପରାମର୍ଶକ୍ରମେ କୃପାମୟ ଦେବଙ୍କଠାରୁ ପାଞ୍ଚଶତ ଟଙ୍କା ଧାର ସୂତ୍ରରେ ଆଣି ଶିଶୁଭୂଷଣ ଏକ ସମ୍ବାଦପତ୍ର ପ୍ରକାଶନର ସ୍ୱପ୍ନ ଦେଖିଥିଲେ । ସେହି ସ୍ୱପ୍ନର ସାକାର ରୂପରେଖ ଥିଲା ୧୯୧୩ ମସିହା ଏପ୍ରିଲ୍ ୧୩ ତାରିଖରେ ଜନ୍ମଲାଭ କରିଥିବା 'ଆଶା' – ଓଡ଼ିଶାର ପ୍ରଥମ ସାପ୍ତାହିକ ସମ୍ବାଦପତ୍ର ।

'ଆଶା' ପ୍ରଥମେ ଥିଲା ଏକ ସାପ୍ତାହିକ ସମ୍ବାଦପତ୍ର । ସେହି ପତ୍ରିକାକୁ ମୁଦ୍ରଣ କରିବା ନିମିତ୍ତ ଶଶିଭୂଷଣ ପ୍ରଥମେ ବେଲଗୁଣ୍ଠାରୁ ଏକ ହସ୍ତଚାଳିତ ମୁଦ୍ରାଯନ୍ତ୍ର ସ୍ୱଳ୍ପ ମୂଲ୍ୟରେ କ୍ରୟ କରିଥିଲେ । ଏହି ମୁଦ୍ରାଯନ୍ତ୍ର ପ୍ରଥମେ ବ୍ରହ୍ମପୁର ଭେଙ୍କଟେଶ୍ୱର ମନ୍ଦିର ପାର୍ଶ୍ୱରେ ଭଡ଼ାସୂତ୍ରରେ ନିଆଯାଇଥିବା ଏକ ଚାଳଛପର ଘରେ ପ୍ରତିଷ୍ଠା କରାଯାଇଥିଲା । ସେ କାଳରେ ନାନା ଘାତପ୍ରତିଘାତ, ଅର୍ଥାଭାବ ପ୍ରଭୃତି ଶଶିଭୂଷଣଙ୍କ ନିମିତ୍ତ ପ୍ରେସ୍ ପରିଚାଳନା ଓ 'ଆଶା'ର ପ୍ରକାଶନ ପାଇଁ ଘୋର ପ୍ରତିବନ୍ଧକ ସାଜିଥିଲେ ମଧ୍ୟ ନିଜର ଦୃଢ଼ ଇଚ୍ଛାଶକ୍ତି ନିକଟରେ ସେହି ଆର୍ଥିକ ଅନଟନ ବେଶୀକାଳ ସ୍ଥାୟୀ ହୋଇପାରିନଥିଲା । ପତ୍ରିକା ପ୍ରକାଶନର ମାତ୍ର କେତେ ମାସ ମଧ୍ୟରେ ତାହା ଗଞ୍ଜାମ ସମେତ ସମଗ୍ର ଓଡ଼ିଶାର ନିଷ୍ପେସିତ ଜନତାର ମୁଖପତ୍ର ପାଲଟି ଯାଇଥିଲା । ୧୯୧୪ ମସିହା ବେଳକୁ 'ଆଶା'ର ଛାପାସଂଖ୍ୟା ଥିଲା ପ୍ରାୟ ଚଉଦ ହଜାର । ସେହି ପତ୍ରିକାର ଉଜ୍ଜ୍ୱଳ ଭବିଷ୍ୟତ କାମନା କରି ସେଦିନ ଯେଉଁ ବିଶିଷ୍ଟ ବ୍ୟକ୍ତିବର୍ଗ ଶଶିଭୂଷଣଙ୍କୁ ସେ ଉଦ୍ଦେଶ୍ୟରେ ସାହାଯ୍ୟ ଓ ସହଯୋଗର ହସ୍ତ ପ୍ରସାରିତ କରିଥିଲେ, ସେମାନଙ୍କ ମଧ୍ୟରେ ପ୍ରଧାନ ଥିଲେ ଧରାକୋଟର ରାଜା ମଦନମୋହନ ସିଂହଦେଓ, ଚିକିଟିର ରାଜା ରାଧାମୋହନ ରାଜେନ୍ଦ୍ର ଦେବ, ସୁରଙ୍ଗୀ ରାଜା ଚନ୍ଦ୍ର ଚୂଡ଼ାମଣି ହରିଚନ୍ଦନ, ବଡ଼ଖେମୁଣ୍ଡି ରାଜା କୃପାମୟ ଦେବ, ନିମଖଣ୍ଡିର ବିଶିଷ୍ଟ ବ୍ୟବସାୟୀ ପରମାନନ୍ଦ ସାହୁ ।

ଶଶିଭୂଷଣଙ୍କର ଗୋପବନ୍ଧୁ ପ୍ରଭୃତି ସତ୍ୟବାଦୀ ସାଧକଙ୍କ ସହିତ କଲିକତାରେ ଅବସ୍ଥାନ କାଳରୁ ଖୁବ୍ ଆତ୍ମିକ ସଂପର୍କ ରହିଥିଲା । ସେହି ସଂପର୍କର ସଦ୍‌ବ୍ୟବହାର କରିବା ପାଇଁ ଶଶିଭୂଷଣ ସତ୍ୟବାଦୀର ସମସ୍ତ ସ୍ରଷ୍ଟାଙ୍କୁ 'ଆଶା'ରେ ଲେଖାଲେଖି କରିବା ପାଇଁ ସାଗ୍ରହ ନିମନ୍ତ୍ରଣ ଜଣାଇଥିଲେ । ପରିସ୍ଥିତି ଏପରି ଥିଲା ଯେ 'ଆଶା' ପ୍ରକାଶନର ବହୁ କାଳ ପର୍ଯ୍ୟନ୍ତ ଗୋପବନ୍ଧୁ ଦାସଙ୍କୁ ଏହାର ସଂପାଦକୀୟ ଓ ଅଗ୍ରଲେଖ ଲେଖିବାକୁ ପଡୁଥିଲା । ସଦ୍ୟବାଦୀ ସାଧକଙ୍କ ଚିନ୍ତାଦର୍ଶ 'ଆଶା'ରେ ହିଁ ପ୍ରତିଫଳିତ ହୋଇଥିଲା । ଗୋଦାବରୀଶ ମିଶ୍ର ତାଙ୍କର 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ' ସ୍ଥାନ' ଆତ୍ମଜୀବନୀ ଗ୍ରନ୍ଥରେ ସେ ସଂପର୍କରେ ଉଲ୍ଲେଖ କରିଛନ୍ତି – 'ସାପ୍ତାହିକ ସମ୍ବାଦପତ୍ର 'ଆଶା' ସହିତ ଆମମାନଙ୍କର ଘନିଷ୍ଠ ସଂପର୍କ ଥାଏ । ଗୋପବନ୍ଧୁ ବାବୁ ପ୍ରତି ସପ୍ତାହରେ ଅଗ୍ରଲେଖ ଓ ସଂପାଦକୀୟ ଆଲୋଚନା ସବୁ ଲେଖନ୍ତି । ନୀଳକଣ୍ଠ ବାବୁ ଓ ମୁଁ ଆଉ କିଛି କିଛି ଲେଖୁଁ । ଲେଖାଲେଖି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଚାଲିଥାଏ । ତେଣୁ ଡାକକୁ ଯାଇପାରେ ନାହିଁ । ମୁଁ ପ୍ରତି ସପ୍ତାହରେ ଡାକ ବିଭାଗର ରନର୍ ପରି ସନ୍ଧ୍ୟାରେ ଷ୍ଟେସନକୁ ଯାଇ ରେଳଗାଡ଼ିରେ ଲେଖାସବୁ ଡାକ ବିଭାଗ କର୍ମଚାରୀଙ୍କୁ ଦେଇଆସେ । ମୋ' ଯିବାରେ ଅକସ୍ମାତ ଥରେ ଅଧେ ଟିକିଏ ଡେରି ହୋଇଗଲେ, ଡାକ ବିଭାଗ କର୍ମଚାରୀଙ୍କ ଅନୁରୋଧରେ ରେଳ ଗାଡ଼ିକି ଦୁଇ ଚାରି ମିନିଟ୍ ଅଟକାଇ ରଖାହୁଏ ।' (ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ (୧୯୮୦ ସଂ), ପୃ.୧୪୨)

ଏ ଯାବତ୍ ଓଡ଼ିଆ ଭାଷା-ସାହିତ୍ୟ କ୍ଷେତ୍ରରେ ଯେଉଁ ଲିପି ସଂସ୍କାର ହୋଇଛି ତାହାର ଶ୍ରେୟ ଆମେ ସମସ୍ତେ ପଣ୍ଡିତ ନୀଳକଣ୍ଠଙ୍କୁ ହିଁ ଦେଇଥାଉଁ । **ମାତ୍ର ନୀଳକଣ୍ଠଙ୍କ ବହୁ ପୂର୍ବରୁ ପଣ୍ଡିତ ଗୋପବନ୍ଧୁ ଦାସ ହିଁ ଏହି ସଂସ୍କାରର ଶୁଭାରମ୍ଭ 'ଆଶା'ରେ ହିଁ କରିଥିଲେ । ସେ ଓଡ଼ିଆ ଯୁକ୍ତ ବର୍ଣ୍ଣ ସ୍ଥାନରେ ଅନୁସ୍ୱାର ଦେଇ 'ଆଶା'ରେ ହିଁ ଲେଖିବା ଆରମ୍ଭ କରିଥିଲେ** ଓ ଏହାକୁ ସତୀର୍ଥ ପଣ୍ଡିତ ନୀଳକଣ୍ଠ ଦାସ ଗ୍ରହଣ କରିବା ସହିତ ଆମ ଭାଷାରେ ଏହି କାର୍ଯ୍ୟକ୍ରମକୁ ବ୍ୟାପକ କରିଥିଲେ । ଏଥିପାଇଁ ଅବଶ୍ୟ ନୀଳକଣ୍ଠଙ୍କୁ ବହୁ ଅସୁବିଧା ଓ ସମାଲୋଚନାର ଶରବ୍ୟ ହେବାକୁ ପଡ଼ିଥିଲା । ତେବେ ସେ ଯାହା ହେଉପଛେ ଓଡ଼ିଆ ସାମ୍ବାଦିକତା ସହିତ ଆଧୁନିକ ଓଡ଼ିଆ ଭାଷା-ସାହିତ୍ୟର ବିକାଶରେ ସେ କାଳରେ 'ଆଶା'ର ଭୂମିକା ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ପ୍ରାରମ୍ଭରେ ପଣ୍ଡିତ ଗୋପବନ୍ଧୁଙ୍କସମେତ ସତ୍ୟବାଦୀ ସାଧକଗଣ 'ଆଶା' ସହିତ ଓତଃପ୍ରୋତ ସଂପୃକ୍ତ ହେବା ଫଳରେ ସମକାଳର ବହୁ ପ୍ରବୀଣ ଓ ନବୀନ ସ୍ରଷ୍ଟା ଏହି ପତ୍ରିକାପ୍ରତି ଆକର୍ଷିତ ହୋଇ ପଡ଼ିଥିଲେ । ଫଳତଃ ଫକୀରମୋହନ, ଗୋପାଳଚନ୍ଦ୍ର ପ୍ରହରାଜ, ଜଗବନ୍ଧୁ ସିଂହ, ପ୍ରଚାରକ ଅନନ୍ତ ମିଶ୍ର, ଆପନା ପରିଚ୍ଛା, ଗଦାଧର ବିଦ୍ୟାଭୂଷଣ, ବିକ୍ରମଦେବ ବର୍ମା, ରାଧାଚରଣ ପଣ୍ଡା, ରାମଚନ୍ଦ୍ର ଆଚାର୍ଯ୍ୟ, ଜୟମଙ୍ଗଳ ରଥ, ସଦାଶିବ ବିଦ୍ୟାଭୂଷଣ ପ୍ରଭୃତି ସ୍ରଷ୍ଟାମାନେ 'ଆଶା' ସହିତ ସଂଶ୍ଳିଷ୍ଟ ରହି ସେଥିରେ ନିୟମିତ ନିଜ ନିଜର ଲେଖା ପ୍ରକାଶ କରୁଥିଲେ ।

ଶଶିଭୂଷଣ ଯେ ଆଶା ପ୍ରେସ୍‌ରୁ କେବଳ 'ଆଶା' ସାପ୍ତାହିକ ସମ୍ବାଦ ପ୍ରକାଶ କରୁଥିଲେ, ତାହା ନୁହେଁ, ସେହି ପ୍ରେସ୍‌ରୁ ୧୯୧୫ ମସିହାରେ 'ସତ୍ୟବାଦୀ', ୧୯୧୭ ମସିହାରେ 'ପ୍ରଦୀପ' ଏବଂ ୧୯୩୯ ମସିହାରେ 'ନିଆଁଖୁଣ୍ଟା' ପ୍ରକାଶ ପାଇଥିଲା । 'ସତ୍ୟବାଦୀ' ପତ୍ରିକା ଥିଲା ସେ କାଳରେ ଓଡ଼ିଆ ସାହିତ୍ୟ ସମାଲୋଚନାର ଯଥାର୍ଥ ମୁଖପତ୍ର । ଐତିହାସିକ ରଚନାଠାରୁ ଆରମ୍ଭ କରି ପ୍ରତ୍ନତତ୍ତ୍ୱ, ସଂସ୍କୃତି, ଓଡ଼ିଆ ଲୋକଜୀବନ ସମେତ ପ୍ରବନ୍ଧ, କାବ୍ୟ-କବିତା, ପଲ୍ଲୀ ଜୀବନ ପ୍ରଭୃତି ସେହି ପତ୍ରିକାରେ ପ୍ରକାଶିତ ହେଉଥିଲା । ଗୋପବନ୍ଧୁ ଦାସଙ୍କ ସଂପାଦନାରେ ପ୍ରକାଶିତ ଏହି ପତ୍ରିକାର ପରିଚାଳକ ଥିଲେ ଶଶିଭୂଷଣ ରଥ । ୧୯୧୭ ମସିହାରେ 'ସତ୍ୟବାଦୀ' ପତ୍ରିକାର ମୁଦ୍ରଣ ବ୍ରହ୍ମପୁରରୁ ପୁରୀକୁ ସ୍ଥାନାନ୍ତର ପରେ ଶଶିଭୂଷଣ 'ସତ୍ୟବାଦୀ' ପରି ଏକ ସାହିତ୍ୟ ପତ୍ରିକାର ଅଭାବ ଅନୁଭବ କରି ନିଜ ସଂପାଦନାରେ ପ୍ରକାଶ କରିଥିଲେ 'ପ୍ରଦୀପ' । 'ପ୍ରଦୀପ' ପତ୍ରିକାରେ ପ୍ରଥମ ବର୍ଷ ପ୍ରଥମ ସଂଖ୍ୟାର ସଂପାଦକୀୟ ପୃଷ୍ଠାରେ ସେ ଉଲ୍ଲେଖ କରିଥିଲେ – 'କୋଟିଏ ଲୋକଙ୍କ ଅଧିବାସ ଉତ୍କଳରେ ତିନି ଚାରିଖଣ୍ଡ ମାତ୍ର ମାସିକ ପତ୍ର ବିଦ୍ୟମାନ । ସେଥିରୁ କୌଣସିଟିର ଅବସ୍ଥା ଅଶାନୁରୂପ ନୁହେଁ । ଓଡ଼ିଆ ସମ୍ବାଦପତ୍ର ଅପେକ୍ଷା ସାହିତ୍ୟପତ୍ରର ଅବସ୍ଥା ଅଧିକ ଶୋଚନୀୟ । ଅତଏବ ଯେକୌଣସି ଭାବରେ ସାହିତ୍ୟପତ୍ରପ୍ରତି ଲୋକଙ୍କର ଉତ୍ସାହ ଓ ଶ୍ରଦ୍ଧା ଉଦ୍ରେକ କରିବା ଆବଶ୍ୟକ । ତେବେ ତିନି ଚାରିଗୋଟି ପତ୍ରର ଅବସ୍ଥା ଏପରି ଥିବାସ୍ଥଳେ ନୂତନ ପତ୍ର ପ୍ରକାଶ କରିବା ପାଇଁ ଆମେମାନେ କାହିଁକି ଉଦ୍ୟତ, ତାହାର ସୂଚନା ଟିକିଏ ଦେବା ଆବଶ୍ୟକ । ପ୍ରଥମରେ ସାହିତ୍ୟପତ୍ର ବା ସମ୍ବାଦପତ୍ର ଚଳାଇ ଲାଭବାନ୍ ହେବା ଦେଶର ବର୍ତ୍ତମାନ ଅବସ୍ଥାରେ ଅସମ୍ଭବ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଚତୁର୍ଦ୍ଦିଗ ଅନ୍ଧକାରମୟ । କୌଣସି ଆଡୁ ଆଶାର ଆଲୋକ ନାହିଁ । ଏ ସମୟରେ କ୍ଷୀଣ 'ପ୍ରଦୀପ'ଟିକୁ ଧରି ଆମେମାନେ ବାହାରିବା ଲୋକଚକ୍ଷୁରେ ସାହସିକତା ବୋଲି ବିବେଚିତ ହୋଇପାରେ । ମାତ୍ର ଆଲୋକ ଯେତେ କ୍ଷୀଣ ହେଉ ପଛକେ, ଉଦ୍ୟମ ଓ ସାଧନାର

ଅଭାବରେ ସିଦ୍ଧି ଅସମ୍ଭବ । x x x କୋର୍ଟ କଚେରୀ ଓ ସ୍କୁଲମାନଙ୍କରେ ଅନ୍ୟଭାଷାର ବ୍ୟବହାର ଓ ପ୍ରାଧାନ୍ୟ ଯୋଗୁଁ ଏହି ଜିଲ୍ଲାର ଓଡ଼ିଆମାନେ ନିଜ ମାତୃଭାଷା ଓ ସାହିତ୍ୟ ଚର୍ଚ୍ଚାରେ ପ୍ରବୃତ୍ତ ହେବାପାଇଁ ସେତେ ସାହସୀ ହେଉନାହାନ୍ତି । ଫଳରେ ଭଞ୍ଜଭୂମି ଗଞ୍ଜାମ ତାହାର ପୂର୍ବ ଗୌରବ ପାଶୋରି ପକାଉଅଛି । 'ପ୍ରଦୀପ' ବିଶେଷତଃ ଗଞ୍ଜାମର ଏହି ଅଭାବ ପୂରଣ କରିବ ବୋଲି ଆମ୍ଭେମାନେ ଆଶା କଲୁ ।' ସୁତରାଂ ପତ୍ରିକାଟି କେବଳ ବ୍ରହ୍ମପୁର ସହର ବା ଗଞ୍ଜାମ ଜିଲ୍ଲାରେ ନୁହେଁ, ସମଗ୍ର ଉତ୍କଳରେ ଏକ ସୁସ୍ଥ ସାହିତ୍ୟିକ ପରିବେଶ ସୃଷ୍ଟି କରିଥିଲା । ୧୯୩୯ ମସିହା ବେଳକୁ 'ଆଶା'ର ସ୍ୱପ୍ନ କ୍ରମଶଃ ଝାପ୍‌ସା ହୋଇଆସିଲା ବେଳକୁ 'ଆଶା'ର ସହ-ସଂପାଦକ ଭାବେ କାର୍ଯ୍ୟ କରୁଥିବା ଗୋଦବରୀଶ ମହାପାତ୍ର ବ୍ରହ୍ମପୁର ଆସି 'ଆଶା' ପ୍ରେସ୍‌ରୁ 'ନିଆଁଖୁଣ୍ଟା' ଶିରୋନାମାରେ ଏକ ମାସିକ ବ୍ୟଙ୍ଗଧର୍ମୀ ସମାଲୋଚନାତ୍ମକ ପତ୍ରିକାର ଶୁଭାରମ୍ଭ କରିଥିଲେ । ସେତେବେଳେ ତାହର ମୁଦ୍ରାକର ଥିଲେ ଶଶିଭୂଷଣ ରଥ । ଓଡ଼ିଶାର ରାଜନୀତି, ସମାଜ, ସାହିତ୍ୟ କ୍ଷେତ୍ରରେ ଗଠନଧର୍ମୀ ସମାଲୋଚନା ପ୍ରକାଶ କରିବାରେ ଏହି ପତ୍ରିକା ସେ କାଳରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା ।

ସାପ୍ତାହିକ 'ଆଶା' ୧୯୨୮ ମସିହା ଏପ୍ରିଲ ୧୩ ତାରିଖ ମହାବିଷୁବ ସଂକ୍ରାନ୍ତିଠାରୁ ଦୈନିକ ସମ୍ବାଦପତ୍ର ରୂପେ ଆତ୍ମପ୍ରକାଶ କରିଥିଲା । ପତ୍ରିକାଟି ଦୈନିକ ହେବାର ପଶ୍ଚାତ୍ ଭାଗରେ ୧୯୨୭ ମସିହାରେ ମହାତ୍ମା ଗାନ୍ଧୀଙ୍କ ବ୍ରହ୍ମପୁର ଆଗମନ ଓ ଗାନ୍ଧୀଙ୍କ ଆଗମନର କିଛିବର୍ଷ ପୂର୍ବରୁ ସମଗ୍ର ଗଞ୍ଜାମରେ ସ୍ୱାଧୀନତା ସଂଗ୍ରାମୀ ଓ କର୍ମୀ ନିରଞ୍ଜନ ପଟ୍ଟନାୟକଙ୍କ ନେତୃତ୍ୱରେ ପ୍ରକାଶିତ 'ଗାନ୍ଧୀ ସମାଚାର' ହିଁ ବଳିଷ୍ଠ ଭୂମିକା ଗ୍ରହଣ କରିଥିଲା । ଶଶିଭୂଷଣ ଅନୁଭବ କରିଥିଲେ ଯେ, ଦେଶର ଏଭଳି ଏକ ସନ୍ଧିକାଳରେ ଜନସାଧାରଣ ଆଉ ସାପ୍ତାହିକ ନୁହେଁ, ଦୈନିକ ସମ୍ବାଦପତ୍ର ହିଁ ଆଶା କରନ୍ତି । ସୁତରାଂ ନାନା ଆର୍ଥିକ ଅନଟନ ସତ୍ତ୍ୱେ 'ଗାନ୍ଧୀ ସମାଚାର' ପରି ଏକ ଦୈନିକ ବୁଲେଟିନ୍‌ରୁ ପ୍ରେରଣା ପାଇ ବ୍ରହ୍ମପୁରର କିଛି ବୁଦ୍ଧିଜୀବୀଙ୍କ ସହାୟତାରେ ଶଶିଭୂଷଣ 'ଦୈନିକ ଆଶା'ର ଶୁଭାରମ୍ଭ କରିଥିଲେ । ବିଂଶ ଶତକର ଦ୍ୱିତୀୟ ଦଶକରୁ ଆରମ୍ଭ କରି ଚତୁର୍ଥ ଦଶକ ପର୍ଯ୍ୟନ୍ତ 'ଆଶା' ଥିଲା ଉତ୍କଳର ସାଧାରଣ ଜନତାର ମୁଖପତ୍ର । ଓଡ଼ିଶାର ଶିକ୍ଷା, ସଂସ୍କୃତି, ରାଜନୀତି, ଅର୍ଥନୀତି ସହିତ ଏହାର ସାମାଜିକ ଅବସ୍ଥା ଓ ସମସ୍ୟାପ୍ରତି ଏହି ପତ୍ରିକା ଥିଲା ଖୁବ୍ ସଚେତନ । ଦୀର୍ଘକାଳ ଧରି ଓଡ଼ିଶାର ସୁଖଦୁଃଖର ସାଥୀ ପାଲଟିଥିବାରୁ ଏହି ସମ୍ବାଦପତ୍ର ବାଲେଶ୍ୱରଠାରୁ ଆରମ୍ଭ କରି ସମ୍ବଲପୁର, କୋରାପୁଟ, ଜୟପୁର ପ୍ରଭୃତି ଅଞ୍ଚଳର ଅଗମ୍ୟ ସ୍ଥାନକୁ ଯାଇ ଓଡ଼ିଆ ଲୋକ ଜୀବନକୁ ପ୍ରଭାବିତ କରିବା ସହିତ ଓଡ଼ିଆ ଜାତୀୟ ଜୀବନର ଅଙ୍ଗ ପାଲଟି ଯାଇଥିଲା ।

ଊନବିଂଶ ଶତକର ଶେଷଭାଗରେ ନଅଙ୍କ ଦୁର୍ଭିକ୍ଷ ଓ ଭାଷା ସୁରକ୍ଷା ନିମିତ୍ତ ସୃଷ୍ଟ ଆନ୍ଦୋଳନ କ୍ରମଶଃ ସୀମାକୈନ୍ଦ୍ରିକ ଆନ୍ଦୋଳନରେ ରୂପାନ୍ତରିତ ହୋଇ ଏକବିଂଶ ଶତକରେ ତାହା ସମଗ୍ର ଜାତି ପାଇଁ ଏକ ମହୀରୁହରେ ପରିଣତ ହୋଇଥିଲା । ବିଂଶ ଶତକରେ ପ୍ରାରମ୍ଭରୁ ଭାଷାଭିତ୍ତିକ ପ୍ରଦେଶ ଗଠନ କରିବା ପାଇଁ ଓଡ଼ିଶାର ସଚେତନ ବୁଦ୍ଧିଜୀବୀଙ୍କ ମଧ୍ୟରେ ଯେଉଁ ଆନ୍ଦୋଳନରେ ସୂତ୍ରପାତ ହୋଇଥିଲା, ତାହା ୧୯୩୦ ମସିହା ବେଳକୁ ଉଗ୍ରରୂପ ଧାରଣ କରିଥିଲା । ଏପରିକି ୧୯୩୧ ମସିହାରେ ଜନଗଣନା କାଳରେ ଓଡ଼ିଶାର ଅଧିକ ଲୋକସଂଖ୍ୟାକୁ ପ୍ରମାଣିତ କରିବା ପାଇଁ ଏହାର ଜନଗଣନା ବିଶେଷାଙ୍କ ପ୍ରକାଶ ପାଇଥିଲା । ସେହି ବିଶେଷାଙ୍କକୁ ଓଡ଼ିଶାର ଜାତୀୟବାଦୀ କର୍ମୀ ଓ ଦେଶହିତୈଷୀମାନେ ଶହ ଶହ ସଂଖ୍ୟାରେ ଗ୍ରାମ ଗ୍ରାମ ବୁଲି ବିତରଣ କରିବା ସହିତ ଓଡ଼ିଆ ଜାତିକୁ ଜୀବନ୍ତ କରିବା ପାଇଁ ସଚେତନତା ସୃଷ୍ଟି କରିଥିଲେ । ସେହି ଆନ୍ଦୋଳନର ମୂଳ ଲକ୍ଷ୍ୟ ଥିଲା- ଯେଉଁମାନଙ୍କର ନିଃଶ୍ୱାସ ପ୍ରଶ୍ୱାସରେ ଓଡ଼ିଶାର ପାଣି ପବନ ପ୍ରବାହିତ, ଯେଉଁମାନେ ଓଡ଼ିଆ ଭାଷାରେ କଥାବାର୍ତ୍ତା କରୁଛନ୍ତି, ଓଡ଼ିଆ ସହିତ ଯେଉଁମାନଙ୍କର ଆତ୍ମିକ ସଂପର୍କ ରହିଛି – ଶିକ୍ଷିତ ଅଶିକ୍ଷିତ, ସାକ୍ଷର ନିରକ୍ଷର ନିର୍ବିଶେଷରେ ସେମାନେ ହେଉଛନ୍ତି ଓଡ଼ିଆ । ଏହି ଉଦ୍ଦେଶ୍ୟରେ ତତ୍କାଳୀନ ବଙ୍ଗ ପ୍ରଦେଶର ମେଦିନୀପୁର ଜିଲ୍ଲା କଣ୍ଟାସ ଅଞ୍ଚଳରୁ ଯତୀନ୍ଦ୍ରନାଥ ମିଶ୍ର ନାମରେ ଜନୈକ ଓଡ଼ିଆଙ୍କ ପ୍ରେରିତ ପତ୍ର 'ଆଶା'ର ତା.୨୮.୨.୧୯୩୧ରିଖରେ ପ୍ରକାଶ ପାଇଥିଲା ଓ ପତ୍ରକାଟିରେ ଉଲ୍ଲେଖ ଥିଲା – 'I have received several copies of your paper and have distributed them. We young Oriya batch are cent percent unable to read Oriya, and have not tried to learn it. About fifty percent of the old men of sixty who speak Oriya can read your paper. Some of the Oriya cooks also can read your paper. From those who can read your paper I have collected the substance of your paper.' ମେଦିନୀପୁରରେ ରହୁଥିବା ଅନ୍ୟଜଣେ ଓଡ଼ିଆ ଲକ୍ଷ୍ମୀ ନାରାୟଣ ସାହୁ ଓଡ଼ିଆ ଆନ୍ଦୋଳନ ସଂପର୍କରେ 'ଆଶା'କୁ ଯେଉଁ ପତ୍ର ପଠାଇଥିଲେ ତାହା ତା.୨୨.୧୨.୧୯୩୧ରିଖରେ ଆଶାରେ

ପ୍ରକାଶ ପାଇଥିଲା ଓ ସେଥିରେ ଉଲ୍ଲେଖ ଥିଲା– 'ଏଠାରେ ଟୋଲ୍ ଅଛି । ସେଠାରେ କାଲି ପହଞ୍ଚିଲୁ । ଛାତ୍ର ୩୦/୪୦ ଜଣ । ସମସ୍ତେ ସାଧାରଣତଃ ବଙ୍ଗଳା କଥା କହନ୍ତି । ଅନ୍ୟକୁ ଦେଖିଲେ ନିଜ ମଧ୍ୟରେ କେତେବେଳେ ବଙ୍ଗଳା ଓ କେତେବେଳେ ଓଡ଼ିଆ । ସେମାନଙ୍କ ସହିତ ବ୍ୟାକରଣ ଆଲୋଚନା କଲି । ଏହିପରି ଆଲୋଚନା କରୁ କରୁ ଭାବ ହୋଇଗଲା । ସେମାନେ ସମସ୍ତେ ଓଡ଼ିଆ । ବହୁତ କ୍ଷତି ହୋଇଛି ଓଡ଼ିଆ ଜାତିର । ସେମାନେ ଓଡ଼ିଆ ହେଲେ ମଧ୍ୟ ଓଡ଼ିଆ ଜାତିର ଅନ୍ତର୍ଭୁକ୍ତ ବୋଲି ଅନୁଭବ କରିପାରୁନାହାନ୍ତି । ନିଜ ନିଜ ଭିତରେ ଓଡ଼ିଆ କହିବାର ସ୍ୱାଚ୍ଛନ୍ଦ୍ୟ ମଧ୍ୟ ରହୁନାହିଁ – କାଳେ କିଏ ବଙ୍ଗାଳୀ ଆସି ପହଞ୍ଚିଯିବ ବୋଲି । ଏହାକୁ ଆତ୍ମହତ୍ୟା କହିବ ନାହିଁ ତ ଆଉ କାହାକୁ କହିବ ?'

ଶଶିଭୂଷଣ ଥିଲେ ପ୍ରଚଣ୍ଡ ଓଡ଼ିଆପ୍ରାଣ । ସର୍ବଦା ପ୍ରବାସୀ ଓଡ଼ିଆଙ୍କର ଦୁଃଖ ଦୁର୍ଦ୍ଦଶାକୁ ନେଇ ସେ 'ଆଶା'ର କଳେବର ପୂର୍ଣ୍ଣ କରୁଥିଲେ ଓ 'ଆଶା'ରେ ସେହି ପ୍ରବାସୀ ଓଡ଼ିଆଙ୍କର ଦୁଃଖକୁ ସଂପାଦକୀୟ ପୃଷ୍ଠା ମଧ୍ୟରେ ସ୍ଥାନିତ କରୁଥିଲେ । 'ଆଶା'ରେ ପ୍ରକାଶିତ ଏହିପରି ସଂପାଦକୀୟ ମଧ୍ୟରେ 'କଲିକତା ଓଡ଼ିଆ କୁଲି', 'ମେଦିନୀପୁର ଓଡ଼ିଆର ନିବେଦନ' ପ୍ରଭୃତି ପ୍ରଧାନ ଥିଲା । 'ଆଶା'ର ତା.୭.୦୩.୧୯୩୧ରିଖ ସଂଖ୍ୟାରେ 'ମେଦିନୀପୁର ଓଡ଼ିଆର ନିବେଦନ' ଶିରୋନାମାରେ ପ୍ରକାଶ ପାଇଥିଲା – 'ଆମ୍ଭେମାନେ ବର୍ତ୍ତମାନ ରାଜନୈତିକ ବଙ୍ଗଳା ଅନ୍ତର୍ଗତ ମେଦିନୀପୁର ଜିଲ୍ଲାର ଅଧିବାସୀ ଅଟୁ । ଏହି ମେଦିନୀପୁର ଜିଲ୍ଲା ଇଷ୍ଟଇଣ୍ଡିଆ କମ୍ପାନୀ ଅମଳରେ ଓଡ଼ିଶା ବୋଲି ପରିଚିତ ହୋଇଥିଲା । ଏହି ଜିଲ୍ଲାର ଅଧିବାସୀମାନଙ୍କର ବର୍ତ୍ତମାନର ଅବସ୍ଥା ଆଲୋଚନା କଲେ ସ୍ପଷ୍ଟ ବୁଝାଏ ଯେ କାନ୍ଥି ମହକୁମାର ରାମନଗର, ସତୀଶପୁର, ଭଗବାନପୁର, ସଦର ମହକୁମାର ମୋହନପୁର, ଦାନ୍ତବ, କୋଶିୟାଡ଼ି, ନାରାୟଣଗଡ଼, ଝାଡ଼ଗ୍ରାମ ମହକୁମାର ନୟାଗ୍ରାମ, ଗୋପୀବଲ୍ଲଭପୁର, ରାମଗୁଣି ପ୍ରଭୃତି ଥାନା ସମୂହର ଅନ୍ତର୍ଗତ ବିସ୍ତୀର୍ଣ୍ଣ ଭୂଖଣ୍ଡରେ ଉତ୍କଳୀୟଗଣ ପୁରୁଷାନୁକ୍ରମେ ବାସ କରୁଛନ୍ତି । ସେମାନେ ସମସ୍ତେ ଓଡ଼ିଆ ଭାଷା କହନ୍ତି ଓ ମିତ୍ରାକ୍ଷରୀ ଶାସ୍ତ୍ର ଅନୁସାରେ ଚଳନ୍ତି ଇତ୍ୟାଦି ।' ସୁତରାଂ ସେକାଳରେ ଓଡ଼ିଶାଠାରୁ ଆରମ୍ଭ କରି ପ୍ରବାସ ପର୍ଯ୍ୟନ୍ତ 'ଆଶା' ହିଁ ଉତ୍କଳୀୟ ଜନତାର ସୁଖଦୁଃଖର ସାଥୀ ପାଲଟି ଯାଇଥିଲା ।

ଓଡ଼ିଶାର ସମସ୍ୟା ଓ ଓଡ଼ିଆ ଜାତୀୟତାକୁ ସର୍ବଭାରତୀୟ ସ୍ତରରେ ପହଞ୍ଚାଇବାର ଲକ୍ଷ୍ୟ ନେଇ ସ୍ରଷ୍ଟା ଶଶିଭୂଷଣ ଇଂରାଜୀ ସାପ୍ତାହିକ 'The East Coast' ଓ ପରେ 'The New Orissa' ନାମରେ ଏକ ଇଂରାଜୀ ସମ୍ବାଦପତ୍ର ପ୍ରକାଶ କରିଥିଲେ । 'The East Coast' ସାପ୍ତାହିକ ସମ୍ବାଦପତ୍ରର ମୁଖ୍ୟ ଆଭିମୁଖ୍ୟ ଥିଲା ଓଡ଼ିଆ ଜାତିକୁ ଉପସ୍ଥାପନ କରିବା । ଏହି ଇଂରାଜୀ ପତ୍ରିକାର ବିଭିନ୍ନ ପୃଷ୍ଠାରେ ଓଡ଼ିଶାର ଶିକ୍ଷା ଓ ସମାଜ ବିଷୟକ ନାନା ସମସ୍ୟା ସହିତ ବିଦେଶର ଖବର ମଧ୍ୟ ପ୍ରକାଶ ପାଉଥିଲା । ସ୍ରଷ୍ଟାଙ୍କ ସଂପାଦନାରେ ପୁଣି 'The New Orissa' ଶିରୋନାମାରେ ଏକ ଦୈନିକ ସମ୍ବାଦପତ୍ର କିଛିକାଳ ପ୍ରକାଶ ପାଇ ଓଡ଼ିଶାର ଆଶା ଆକାଂକ୍ଷା ସହିତ ଓଡ଼ିଆ ଜନତାର ଭାବରୂପକୁ ସର୍ବଭାରତୀୟ ସ୍ତରରେ ପ୍ରତିଧ୍ୱନିତ କରିବାରେ ସହାୟକ ହୋଇଥିଲା । ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେବାପୂର୍ବରୁ ମହାତ୍ମା ଗାନ୍ଧୀଙ୍କ ଓଡ଼ିଶା ଆଗମନର ବାର୍ତ୍ତା ସହିତ ବ୍ରହ୍ମପୁର ଖଲ୍ଲିକୋଟ କଲେଜରେ ଟିକାଲି ରାଜାଙ୍କ ଗୁରୁତ୍ୱପୂର୍ଣ୍ଣ ଭାଷଣ, ଗଞ୍ଜାମର ନୂତନ ଜିଲ୍ଲା ଜଜ୍ ଭାବରେ ଏଫ୍.ଜି. ବର୍ଟେଲର୍‌ଙ୍କ ନିଯୁକ୍ତି, ଭାରତବର୍ଷର ବିଭିନ୍ନ ପ୍ରାନ୍ତର ସମସ୍ୟା ସହିତ କେନ୍ଦ୍ରୀୟ ଆସେମ୍ବ୍ଲିରେ ଚିନି ସଂକ୍ରାନ୍ତୀୟ ଆଇନ ପ୍ରଣୟନ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପ୍ରଭୃତି ଘଟଣାବଳୀ ଏଥିରେ ପ୍ରକାଶିତ ହୋଇଥିଲା । 'The New Orissa'ରେ ପ୍ରକାଶିତ ବିଜ୍ଞାପନ ଏହାର ମୁଖ୍ୟ ବୈଶିଷ୍ଟ୍ୟ ଥିଲା । ସେଥିରେ ପ୍ରକାଶିତ ବିଜ୍ଞାପନଗୁଡ଼ିକ ମୁଖ୍ୟତଃ କଲିକତାର ହୋଟେଲ ସେସିଲ, ଅଳଙ୍କାର ବ୍ୟବସାୟ ପ୍ରତିଷ୍ଠାନ, ରାଧାକିଷନ ଗୋପୀକିଷନ, ଜେ. ସୁର ଏଣ୍ଡ୍ କୋ, ହୋମିଓ ଡାକ୍ତର ଏମ୍. ଭଟ୍ଟାଚାର୍ଯ୍ୟ, ଡା. ଏଚ୍.ସି. ସରକାର, ବିଜୟନଗରମ୍‌ର ଡାକ୍ତର ଭେଙ୍କଟ ରାଓ, ଶ୍ରୀକାକୋଲମ୍‌ର ଡାକ୍ତର ଏ.ଏସ୍. ମୂର୍ତ୍ତି, ଝାନ୍‌ସୀର ହିନ୍ଦୁସ୍ଥାନ ସୁଗାର ଇଣ୍ଡଷ୍ଟ୍ରୀ, ଗୟାର ସିଦ୍ଧମନ୍ତ୍ର ଆଶ୍ରମ, ବନାରସର ଘନଶ୍ୟାମ ଦାସ ବିରଳାଙ୍କ ନ୍ୟୁ ଇନ୍‌ସୁରାନ୍ସ ଲିଃ ପ୍ରଭୃତି ପ୍ରଧାନ ଥିଲା ।

ସ୍ଥାନୀୟ ରାଜନୈତିକ ବ୍ୟକ୍ତିଙ୍କ ସମେତ ତୁଙ୍ଗ ନେତୃବୃନ୍ଦଙ୍କ ଘୋର ବିରୋଧ ଯୋଗୁଁ ଓଡ଼ିଶାର ଦକ୍ଷିଣାଞ୍ଚଳ ବ୍ରହ୍ମପୁରରେ ଏହାର ରାଜଧାନୀ ପ୍ରତିଷ୍ଠା ସମ୍ଭବ ହୋଇପାରି ନଥିଲେ ମଧ୍ୟ ତତ୍କାଳୀନ ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟିନ୍ ହବାକ୍ ଏବଂ ରାଜସ୍ୱ କମିଶନର୍ ମି. ମାନ୍‌ସଫିଲ୍‌ଡ ସି.ଆଇ.ଇ. ପ୍ରଭୃତିଙ୍କୁ ବ୍ରହ୍ମପୁରର ରଙ୍ଗେଲୁଣ୍ଡାଠାରେ ରାଜଧାନୀ ସ୍ଥାପନ କରି ଏହାକୁ 'ଉଦୟନଗର' ଭାବେ ନାମିତ କରିବାକୁ 'ଆଶା' ମାଧ୍ୟମରେ ଶଶିଭୂଷଣ ସମଗ୍ର ଓଡ଼ିଶାର ଜନତାଙ୍କୁ ପ୍ରବର୍ତ୍ତାଇଥିଲେ । ସେଥିରୁ ତାଙ୍କର ଦେଶଭକ୍ତି ସହିତ ଉଚ୍ଚ କର୍ତ୍ତୃପକ୍ଷଙ୍କର ତାଙ୍କ ପ୍ରତି ଥିବା ସହୃଦୟତାର ପରିଚୟ ମିଳିଥାଏ । ଏ ସଂପର୍କରେ 'ଓଡ଼ିଆ ପ୍ରାଣ ଶଶିଭୂଷଣ ରଥ ଗ୍ରନ୍ଥ ମଧ୍ୟରେ ଶ୍ରୀ ପଦ୍ମଚରଣ ସାହୁ ଶଶିଭୂଷଣଙ୍କ ଦିନଲିପି ପଞ୍ଜିକାକୁ

ଉଦ୍ଧାର କରି କହିଛନ୍ତି – 'Went yesterday to Chatrapur for interview with the Governor Sir John Austin Hubback. Ten minutes time allowed. Spoke about Capital and Press Co-operation. He is well impressed with Udayanagar site.' ମାତ୍ର ରାଜନୈତିକ ନେତୃବୃନ୍ଦଙ୍କ ବିରୋଧ ସମେତ ଅନ୍ୟାନ୍ୟ କାରଣରୁ ବ୍ରହ୍ମପୁରର ଉଦୟନଗର ସେକାଳରେ ଓଡ଼ିଶାର ରାଜଧାନୀ ହେବାରୁ ସବୁଦିନ ପାଇଁ ବଂଚିତ ହୋଇଗଲା । ନଚେତ୍ ଭୁବନେଶ୍ୱର ପରିବର୍ତ୍ତେ ସଂପ୍ରତି ବ୍ରହ୍ମପୁର ହୋଇଥାନ୍ତା ଆଧୁନିକ ଓଡ଼ିଶାର ନୂତନ ରାଜଧାନୀ ।

୧୯୨୦ ମସିହାରେ ମାନ୍ଦ୍ରାଜ ବିଧାନ ପରିଷଦ ପାଇଁ ବ୍ରହ୍ମପୁରରେ ଯେଉଁ ନିର୍ବାଚନ ଅନୁଷ୍ଠିତ ହୋଇଥିଲା, ସେହି ନିର୍ବାଚନରେ ଗଞ୍ଜାମରୁ ପର୍ଶୁରାମ ପାତ୍ର, ବିଶ୍ୱନାଥ ଦାସ ଓ ଶଶିଭୂଷଣ ରଥ ନିର୍ବାଚିତ ହୋଇଥିଲେ । ବିଧାନ ପରିଷଦର ସଭ୍ୟରୂପେ ମନୋନୀତ ହେବା ପରେ ଶଶିଭୂଷଣ ଗଞ୍ଜାମ ସମେତ ସମଗ୍ର ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ପାଇଁ ପରିଷଦ ସମ୍ମୁଖରେ ବିଭିନ୍ନ ପ୍ରସ୍ତାବ ରଖିଥିଲେ । ଗଞ୍ଜାମରେ କୃଷି ନିମିତ୍ତ ଜଳସେଚନ, ରାସ୍ତାଘାଟ, ସେତୁନିର୍ମାଣ ପାଇଁ ସେ ସେକାଳରେ ନିଷ୍ଠାପର ଉଦ୍ୟମ କରିଥିଲେ । ୧୯୨୧ ମସିହାରେ ଦ୍ୱିତୀୟବାର ପାଇଁ ଭୀଷଣ ପ୍ରତିଦ୍ୱନ୍ଦିତାର ସମ୍ମୁଖୀନ ହୋଇ ସେ ସେହି ପରିଷଦକୁ ବ୍ରହ୍ମପୁରରୁ ପୁନଃ ନିର୍ବାଚିତ ହୋଇଥିଲେ । ସେହି କାଳରେ ମଧ୍ୟ ସେ ପୂର୍ବବତ୍ ଗଞ୍ଜାମର ଉନ୍ନତି ପାଇଁ ଆପ୍ରାଣ ଉଦ୍ୟମ କରି ସେଥିରେ ସଫଳ ହୋଇଥିଲେ । ୧୯୨୮ ମସିହାରେ କଲିକତାଠାରେ ଅନୁଷ୍ଠିତ ସର୍ବଦଳୀୟ ସମ୍ମିଳନୀରେ ଓଡ଼ିଶାର ପ୍ରବୀଣ ଓ ତରୁଣ ରାଜନେତାଙ୍କ ମଧ୍ୟରେ ଶଶିଭୂଷଣ ଥିଲେ ଅନ୍ୟତମ । ସେହି ଅଧିବେଶନରେ ସଭାପତିତ୍ୱ କରୁଥିବା ମୋତିଲାଲ ନେହେରୁଙ୍କୁ 'ଓଡ଼ିଶା ପ୍ରସଙ୍ଗ' ଆଲୋଚନା କରିବାକୁ କର୍ମୀମାନେ ଅନୁରୋଧ କରିବା ଓ ସଭାପତିଙ୍କଠାରୁ ନାସ୍ତିବାଣୀ ଶୁଣିବା ପରେ ଶଶିଭୂଷଣ କଲିକତାରେ ବସବାସ କରୁଥିବା ସହସ୍ର ଓଡ଼ିଆଙ୍କୁ ସଭାସ୍ଥଳକୁ ଆଣି ଓଡ଼ିଶାର ଦାବି ଉପସ୍ଥାପନ କରିବା ପାଇଁ ସଭାପତିଙ୍କ ଉପରେ ପ୍ରବଳ ଚାପ ପକାଇବା ମଧ୍ୟରେ ତାଙ୍କର ଦେଶଭକ୍ତିର ପରିଚୟ ମିଳିଥାଏ । ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ପଶ୍ଚାଦ୍‌ଭାଗରେ ୧୯୦୩ ମସିହାରେ ଆରମ୍ଭ ହୋଇଥିବା 'ଉତ୍କଳ ସମ୍ମିଳନୀ' ହିଁ ଗୁରୁତ୍ୱପୂର୍ଣ୍ଣ ଭୂମିକା ଅଂଶ ଗ୍ରହଣ କରିଥିଲା । ଏହି ସମ୍ମିଳନୀର ୪୦ତମ ଅଧିବେଶନ ୧୯୩୮ ମସିହାରେ ଏପ୍ରିଲ୍ ୧୬-୧୭ ତାରିଖ ଦୁଇଦିନ ଧରି ମଞ୍ଜୁଷାଠାରେ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀର ସଭାପତି ଥିଲେ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ ଓ ଏହାର ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଥିଲେ ଶଶିଭୂଷଣ ରଥ । ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ଭାବରେ ସେ ସେଦିନ ଓଡ଼ିଆ ଜାତି ଓ ଭାଷାର ଉନ୍ନତି ପାଇଁ ଯେଉଁ ଐତିହାସିକ ବକ୍ତବ୍ୟ ପ୍ରଦାନ କରିଥିଲେ ତାହା ଥିଲା–

'ଯେଉଁମାନେ ଦେଶ ମିଶ୍ରଣକୁ ବ୍ରତ କରି ଲାଗିଥିଲେ – ସେମାନଙ୍କ ମଧ୍ୟରୁ ନୀଳମଣି ବିଦ୍ୟାରତ୍ନ, ମାଥୁରୀ ସାହୁ, ତାରିଣୀଚରଣ ରଥ, ଶ୍ୟାମସୁନ୍ଦର ରାଜଗୁରୁ, ଆପନ୍ନା ପରିଚ୍ଛା, ପ୍ୟାରୀମୋହନ ପାଣିଗ୍ରାହୀ, ଚକ୍ରପାଣି ପ୍ରଧାନ, ସଦାଶିବ ବିଦ୍ୟାଭୂଷଣ ପ୍ରମୁଖଙ୍କ ନାମ ଭକ୍ତି ସହିତ ଉଲ୍ଲେଖ କରି ସେମାନଙ୍କ ଉଦ୍ଦେଶ୍ୟରେ ସ୍ମୃତି ତର୍ପଣ କରୁଛି । ଉତ୍ତର ଓଡ଼ିଶା ଓ ଗଡ଼ଜାତର ଯେଉଁମାନେ ଆନ୍ଦୋଳନକୁ ସଜୀବ ରଖିଥିଲେ, ଭାଷା ଲୋପ ହୋଇଯାଉଥିବା ବେଳେ ଯେଉଁମାନେ ଉଦ୍ଧାର କଲେ ସେମାନଙ୍କ ମଧ୍ୟରେ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ, ଫକୀରମୋହନ, ଗୌରୀଶଙ୍କର, ବୈକୁଣ୍ଠନାଥ, ପ୍ୟାରୀମୋହନ, ବିଶ୍ୱନାଥ କର ପ୍ରମୁଖଙ୍କୁ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଏହି ଦେଶପ୍ରେମୀଙ୍କ ନାମ ସ୍ମରଣ କରି ଆମେମାନେ ଧନ୍ୟ ହେବା ଓ ସେମାନଙ୍କ ଉଦ୍ଦେଶ୍ୟରେ କୃତଜ୍ଞତା ଜ୍ଞାପନ କରିବା । ସେମାନଙ୍କ ଜାତିପ୍ରେମ ଆମମାନଙ୍କୁ ନୂତନ କର୍ମପନ୍ଥାରେ ଅଗ୍ରଣୀ କରୁ ।

ଉତ୍କଳ ସମ୍ମିଳନୀର ଇତିହାସ ଘଟଣାବହୁଳ । ଓଡ଼ିଆ ସତ୍ତାଲୋପ ହେଉଥିବା ବେଳେ ଖ୍ରୀ:୧୯୦୩ରେ ଏହାର ଶୁଭଜନ୍ମ । କିନ୍ତୁ ସମ୍ମିଳନୀର ଜନ୍ମପୂର୍ବରୁ ଓ ବ୍ରିଟିଶ ଶାସନ ଓଡ଼ିଶାରେ ଆରମ୍ଭ ହେବା ଦିନରୁ ଦୀର୍ଘ ଶହେବର୍ଷର ନିଦାରୁଣ ବେଦନା କାହାଣୀ ଏହିଠାରେ ଆଲୋଚନା କରି ଆପଣମାନଙ୍କ ମନରେ ଦୁଃଖ ଦେବି ନାହିଁ । ଚାରି ପ୍ରଦେଶରେ ଖଣ୍ଡେ ଖଣ୍ଡେ ହୋଇ ରହି, ଚାରି ସ୍ଥାନରେ ପ୍ରବଳ ପ୍ରତିରୋଧ ମଧ୍ୟରେ ଓ ଜାତି ଯେ ୧୯୩୬ ଯାଏଁ ବଂଚି ରହିଲା, ଏହା ଆପେ ଆପେ ଏକ ଇତିହାସ ଗଢ଼ିଲା । କୋଟିଏ ଓଡ଼ିଆଙ୍କ ପ୍ରତି ଶାସକମାନଙ୍କ ଉଦାସୀନତା ଓ ଅନ୍ୟାୟର ଏଭଳି ଦୃଷ୍ଟାନ୍ତ ଅନ୍ୟତ୍ର ଆପଣମାନେ ଖୋଜିଲେ ପାଇବେ ନାହିଁ ।

ଦକ୍ଷିଣ ବିଚ୍ଛିନ୍ନାଞ୍ଚଳର ଓଡ଼ିଆମାନେ ଜାଣି ରଖନ୍ତୁ – ସେମାନେ ଓଡ଼ିଶାରେ ମିଶିବା ପାଇଁ ଯେଉଁ ଆଗ୍ରହ ପ୍ରକାଶ କରିଛନ୍ତି ଓ କରିବେ ତାହା କାର୍ଯ୍ୟକାରୀ ହୋଇନପାରେ । ଏ ଅବସ୍ଥାରେ ସେମାନେ ନିରାଶ ନହୋଇ ଆନ୍ଧ୍ର ଭାଇମାନଙ୍କ ସହିତ କାନ୍ଧକୁ କାନ୍ଧ ମିଶାଇ ନିଜ ମାତୃଭାଷା ଯେକୌଣସି ପ୍ରକାରେ ରକ୍ଷା

କରିବାକୁ ଯତ୍ନବାନ ହୁଅନ୍ତୁ । ଓଡ଼ିଶାରେ ରହିଯାଇଥିବା ଆନ୍ଧ୍ରମାନେ ସୁଖରେ କାଳାତିପାତ କରୁଛନ୍ତି । ଏଣୁ ଆନ୍ଧ୍ର ପ୍ରଦେଶରେ ଯେଉଁ ଓଡ଼ିଆ ଅଞ୍ଚଳ ରହିଗଲା, ସେଠାରେ ଓଡ଼ିଆ ଭାଷାର ପ୍ରଚଳନ ପାଇଁ ଚେଷ୍ଟା କରନ୍ତୁ ।'

ସୁତରାଂ ଶଶିଭୂଷଣ ଥିଲେ ଓଡ଼ିଆ ନବନିର୍ମାଣ ଯୁଗର ଜାତିପ୍ରାଣ, ନବ ଉତ୍କଳର ଅନ୍ୟତମ କାଣ୍ଡାରୀ । ଓଡ଼ିଆ ଜାତୀୟତା, ସାମ୍ବାଦିକତା, ସାହିତ୍ୟ, ରାଜନୀତି, ସମ୍ବାଦପତ୍ର, ସମାଜସେବା, ଓଡ଼ିଆ ଭାଷାର ଉନ୍ନତି – ସବୁସ୍ତରରେ ତାଙ୍କର ଭୂମିକା ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ । ଶଶିଭୂଷଣ ରଥଙ୍କର ମାନସ ସନ୍ତାନ 'ଆଶା' ଥିଲା ଦେଶ ଗଠନ ସହିତ ଓଡ଼ିଆ ସାମ୍ବାଦିକତାର ମୂଳ ଉତ୍ସ । ଜୀବନରେ ବହୁ ଘାତପ୍ରତିଘାତ ସହିତ ପ୍ରତିକୂଳ ପରିବେଶ ମଧ୍ୟରେ ଗତି କରି ମଧ୍ୟ ପ୍ରତି ମୁହୂର୍ତ୍ତରେ ସେ ଚାହିଁଥିଲେ ସମଗ୍ର ଉତ୍କଳର ସର୍ବାଙ୍ଗୀନ ଉନ୍ନତି । ଓଡ଼ିଶାକୁ ନାନା ଦିଗରୁ ଉନ୍ନତ କରିବାର ସେ ଯେଉଁ ସ୍ୱପ୍ନ ଦେଖିଥିଲେ, ତାହାର ସମସ୍ତ ସମ୍ଭାବନା 'ଆଶା'ରେ ନିୟମିତ ପ୍ରକାଶିତ ହେଉଥିଲା । 'ଆଶା' ଥିଲା ସେକାଳରେ ଓଡ଼ିଆ ଜାତୀୟ ଜୀବନର ଯଥାର୍ଥ ପ୍ରତୀକ – ଆଧୁନିକ ଓଡ଼ିଶାର ନିର୍ମାଣ ଯୁଗର ପ୍ରଥମ ମୁଖପତ୍ର । ଶଶିଭୂଷଣଙ୍କ ପରି ମହାମାନବ ଆମ ଗହଣରୁ ୧୯୪୩ ମସିହା ମାର୍ଚ୍ଚ ୧୯ ତାରିଖରୁ ବିଦାୟ ନେଇଛନ୍ତି ସତ୍ୟ, ମାତ୍ର ତାଙ୍କର ସେ କାଳରେ ଜାତି ଗଠନର ଅସଂପୂର୍ଣ୍ଣ ସ୍ୱପ୍ନ ଆଜି ସାକାର ହୋଇ ମହୀରୁହରେ ପରିଣତ ହୋଇଛି– ଓଡ଼ିଶା ନାନା ଦିଗରୁ ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇପାରିଛି ।

**ସହାୟକ ଗ୍ରନ୍ଥସୂଚୀ :**


୧. ଶ୍ରୀ ପଦ୍ମଚରଣ ସାହୁ – ଓଡ଼ିଆ ପ୍ରାଣ ଶଶିଭୂଷଣ ରଥ (୧୯୯୫), ଆଶା ପୁସ୍ତକାଳୟ, ବ୍ରହ୍ମପୁର ।

୨. ଦେବେନ୍ଦ୍ର କୁମାର ଦାସ (ସଂ.) – ଉତ୍କଳ ସମ୍ମିଳନୀ (୨୦୦୫), ପ୍ରଗତି ଉତ୍କଳ ସଂଘ, ରାଉରକେଲା ।



ପ୍ରାଧ୍ୟାପକ
ସ୍ନାତକୋତ୍ତର ଓଡ଼ିଆ ବିଭାଗ
ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ, ବ୍ରହ୍ମପୁର–୭୬୦୦୦୭


# ୨୦୧୧ ଜାନୁଆରୀ ସୁଦ୍ଧା ନୂତନ ବିଦ୍ୟାବିହାର ନିର୍ମାଣ କାର୍ଯ୍ୟ ସଂପୂର୍ଣ୍ଣ ହେବ

ସଂସ୍କୃତି ବିଶ୍ୱବିଦ୍ୟାଳୟର ଉନ୍ନତିକରଣ ସଂପର୍କରେ ଉଚ୍ଚଶିକ୍ଷା, ପର୍ଯ୍ୟଟନ ଓ ସଂସ୍କୃତି ମନ୍ତ୍ରୀ ଶ୍ରୀ ଦେବୀ ପ୍ରସାଦ ମିଶ୍ର ଗତ ତା.୩୦.୧୨.୨୦୦୯ରିଖ ଦିନ ଅର୍ଥ ଓ ଅବକାରୀ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କ ସହ ଆଲୋଚନା କରିଛନ୍ତି । ୧୯୯୯–୨୦୦୦ ମସିହାରୁ ୟୁନିଭରସିଟି ଗ୍ରାଣ୍ଟସ କମିଶନଙ୍କ ଅନୁମତି ଅନୁଯାୟୀ ୬୫ ଜଣ ଛାତ୍ରଛାତ୍ରୀଙ୍କୁ ନେଇ କାର୍ଯ୍ୟ ଆରମ୍ଭ କରିଥିବା ରାଜ୍ୟ ସଂସ୍କୃତି ବିଭାଗ ଅଧୀନସ୍ଥ ଏହି ବିଶ୍ୱ ବିଦ୍ୟାଳୟରେ ବର୍ତ୍ତମାନ ୧୬ଟି ବିଭାଗରେ ୨୦୮ ଜଣ ଛାତ୍ରଛାତ୍ରୀ ଅଧ୍ୟୟନ କରୁଛନ୍ତି । ଏତଦ୍‌ବ୍ୟତୀତ ୩୭ଟି ଅନୁଷ୍ଠାନ ମଧ୍ୟ ଏହି ବିଶ୍ୱ ବିଦ୍ୟାଳୟ ସହ ସହବନ୍ଧିତ । ଏହିସବୁ ଅନୁଷ୍ଠାନରେ ୨୯୬୪ ଜଣ ଛାତ୍ରଛାତ୍ରୀ ବିଭିନ୍ନ ବିଷୟରେ ଅଧ୍ୟୟନ କରୁଛନ୍ତି । ଆଲୋଚନା କାଳରେ ବିଶ୍ୱବିଦ୍ୟାଳୟର ବିଭିନ୍ନ ସମସ୍ୟା ସଂପର୍କରେ ମନ୍ତ୍ରୀ ଶ୍ରୀ ମିଶ୍ର ଅର୍ଥ ମନ୍ତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ବିଶ୍ୱବିଦ୍ୟାଳୟର ବିଭିନ୍ନ ବିଭାଗରେ ଅସ୍ଥାୟୀ ଭାବେ ଥିବା ବିଭିନ୍ନ ପଦବୀଗୁଡ଼ିକୁ ନିୟମିତ କରାଯିବା, ରେଜିଷ୍ଟ୍ରାର ପଦବୀ ପୂରଣ କରାଯିବା ସହ ପରୀକ୍ଷା ନିୟନ୍ତ୍ରକ ଓ ଅର୍ଥ ନିୟନ୍ତ୍ରକ ପଦବୀ ସୃଷ୍ଟି କରାଯିବା ଆଦି ସଂପର୍କରେ ଆଲୋଚନା କରାଯାଇଥିଲା । ସେହିପରି ଗତ ତା.୨୮.୦୨.୨୦୦୪ରୁ ଯେଉଁ ୨୬ ଜଣ କର୍ମଚାରୀ କାର୍ଯ୍ୟ କରୁଛନ୍ତି ସେମାନଙ୍କୁ ନିୟମିତ କରାଯିବା ସଂପର୍କରେ ଅର୍ଥ ବିଭାଗକୁ ପ୍ରସ୍ତାବ ପଠାଯିବ । ବିଶ୍ୱବିଦ୍ୟାଳୟର ଭାଷା ଏବଂ ଅନ୍ୟାନ୍ୟ ବିଭାଗକୁ ଅଧିକ ସୁଦୃଢ଼ କରାଯାଇ ଶିକ୍ଷାଦାନର ମାନ ବୃଦ୍ଧି କରାଯିବ । ସେହିପରି ବର୍ତ୍ତମାନ ରାଜ୍ୟର ୧୫୦୦ ଜଣଙ୍କୁ କଳାକାର ଭତ୍ତା ପ୍ରଦାନ କରାଯାଉଛି । ଏହି କଳାକାର ଭତ୍ତା ଏବଂ ବିଭିନ୍ନ ସାଂସ୍କୃତିକ ଅନୁଷ୍ଠାନକୁ ପ୍ରଦାନ କରାଯାଉଥିବା ଅନୁଦାନ ବୃଦ୍ଧି ସଂପର୍କରେ ମଧ୍ୟ ଆଲୋଚନା ହୋଇଥିଲା ।

ଭୁବନେଶ୍ୱର ନିକଟବର୍ତ୍ତୀ ମଦନପୁରଠାରେ ପ୍ରାୟ ୫୦ ଏକର ଜମିରେ ୨୩ କୋଟି ଟଙ୍କା ବ୍ୟୟ ଅଟକଳରେ ନିର୍ମାଣ କରାଯାଉଥିବା ସଂସ୍କୃତି ବିଶ୍ୱବିଦ୍ୟାଳୟର ନୂତନ ବିଦ୍ୟାବିହାର ଆସନ୍ତା ୨୦୧୧ ମସିହା ଜାନୁଆରୀ ମାସ ସୁଦ୍ଧା ପୂର୍ଣ୍ଣାଙ୍ଗ ହେବ ବୋଲି ଲକ୍ଷ୍ୟ ରଖାଯାଇଛି । ବ୍ୟୟବରାଦ କରଯାଇଥିବା ୨୩ କୋଟି ଟଙ୍କା ମଧ୍ୟରୁ ୧୮ କୋଟି ଟଙ୍କା ବିଶ୍ୱବିଦ୍ୟାଳୟର କ୍ୟାମ୍ପସ୍ ଏବଂ ୫ କୋଟି ଟଙ୍କା ଛାତ୍ରାବାସ ନିର୍ମାଣ ପାଇଁ ଉଦ୍ଦିଷ୍ଟ । ଇଡ୍‌କୋକୁ ଏହାର ନିର୍ମାଣ ଦାୟିତ୍ୱ ଦିଆଯାଇଛି । ଏହି ନୂତନ ବିଦ୍ୟାବିହାର (କ୍ୟାମ୍ପସ୍) ନିର୍ମାଣ ନେଇ ଦେଖା ଦେଇଥିବା ଜମିଜମା ସମସ୍ୟାର ସମାଧାନ ହୋଇଛି ।

# ସଂଗ୍ରାମୀ ଗୋପୀନାଥ ଦାସ

ଭାଗବତ ତ୍ରିପାଠୀ

**ସେ**ଦିନ ଥିଲା ସେପ୍ଟେମ୍ବର ୨ ତାରିଖ । ଦିବା ୧୦ ଘଟିକା ସମୟ । ହଠାତ୍ ଡଃ ହରେକୃଷ୍ଣ ମହତାବଙ୍କ କନିଷ୍ଠ ଭ୍ରାତା ଗୋପୀନାଥ ଦାସଙ୍କ ପୂର୍ବଦିନ ଦିବା ୪ ଘଟିକା ସମୟରେ ଭୁବନେଶ୍ୱରସ୍ଥ ଏକାମ୍ର ନିବାସରେ ପରଲୋକ ହୋଇଯାଇଥିବା ସମ୍ବାଦ ମୋ' ମନରେ ଗଭୀର ଆଲୋଡ଼ନ ସୃଷ୍ଟି କଲା । ବ୍ୟଥିତ ହୃଦୟରେ ଦୌଡ଼ିଗଲି ତାଙ୍କର ସେହି ମରଶରୀରର ଶେଷ ଦର୍ଶନ କରିବାକୁ । ସେତେବେଳକୁ ତାଙ୍କୁ ଆଗରପଡ଼ାକୁ ଅଣାଯାଇ ସାରିଥିଲା । ତାଙ୍କ ନବନିର୍ମିତ ଗୃହର ଅନତିଦୂରରେ ଶୋକାଭିଭୂତ ଜନତାଙ୍କ ମଧ୍ୟରେ ଆବିଷ୍କାର କଲି ଶେଷ ଶ୍ରଦ୍ଧାଞ୍ଜଳିର ସ୍ମାରକୀ ସ୍ୱରୂପ ଫୁଲଗଦା ମଧ୍ୟରେ ସ୍ୱର୍ଗତଃ ଦାସଙ୍କ ମରଶରୀରକୁ । ପାଖରେ ଛିଡ଼ା ହୋଇଥାନ୍ତି ପୂର୍ବତନ ମନ୍ତ୍ରୀ ତଥା ବୟୋଜ୍ୟେଷ୍ଠ ସାହିତ୍ୟିକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର, ତତ୍କାଳୀନ ଶ୍ରମ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ କୁମାର ସାମଲ, ସ୍ଥାନୀୟ ବିଧାୟକ ଏବଂ ଅନେକ ମାନ୍ୟଗଣ୍ୟ ବ୍ୟକ୍ତି । ଅନତି ଦୂରରେ ଛିଡ଼ା ହୋଇ ଥାଆନ୍ତି ପ୍ରଜାତନ୍ତ୍ରର ସମ୍ପାଦକ ପୁତ୍ର ଶ୍ରୀ ଭର୍ତ୍ତୃହରି ମହତାବ । ଶବ ପାର୍ଶ୍ୱରେ ଥାଆନ୍ତି ପୁତ୍ର ତଥା ଇଞ୍ଜିନିୟର ଓ ମୋର ସହପାଠୀ ଶ୍ରୀ ସନ୍ତୋଷ କୁମାର ଦାସ ଏବଂ ଅନ୍ୟ ପୁତ୍ରମାନେ । ପାଖରେ ଜୁଇ ପାଇଁ ପ୍ରସ୍ତୁତି ଚାଲିଥାଏ । ସେ ଗାମ୍ଭୀର୍ଯ୍ୟପୂର୍ଣ୍ଣ ପରିବେଶ ମଧ୍ୟରେ ମୁଁ ସେହି ପବିତ୍ର ମର ଶରୀରରେ ଶେଷ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବାର ସୁଯୋଗ ପାଇଥିଲି ।



ସ୍ୱଳ୍ପ ସମୟ ରହଣି ମଧ୍ୟରେ ମୋ ମନରେ ଆଙ୍କି ହୋଇଗଲା ବିଗତ ଦିନର ଅନେକ ଦୃଶ୍ୟ । ଆଗରପଡ଼ାର ସମସ୍ତ ସଭାସମିତିର ଆୟୋଜକ ଥିଲେ ସେ । ମୋର ମନେପଡ଼େ ସେହି ପିଲାଦିନର କଥା । ୧୯୬୧ ମସିହାରେ ଶିଶୁଦିବସ ଅବସରରେ ଆଗରପଡ଼ା ତୋଫା ବିବି ସ୍କୁଲରେ (ତାଙ୍କ ମାତାଙ୍କ ନାମରେ ନାମିତ) ଏକ ବିରାଟ ସଭା ଅନୁଷ୍ଠିତ ହେଉଥାଏ । ଆମେ ସବୁ ଛୋଟ ଛୋଟ ପିଲାମାନେ ଗଡ଼ (ମହତାବଙ୍କ ଘର)ଠାରୁ ତୋଫା ବିବି ସ୍କୁଲ ପର୍ଯ୍ୟନ୍ତ ଧାଡ଼ିବାନ୍ଧି ଛିଡ଼ା ହୋଇଥାଉଁ ଓଡ଼ିଶାର ମାନ୍ୟବର ମନ୍ତ୍ରୀ ସ୍ୱର୍ଗତଃ ପବିତ୍ର ମୋହନ ପ୍ରଧାନଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ । ଏହି ଅବସରରେ ମାନ୍ୟବର ମନ୍ତ୍ରୀଙ୍କ ଦର୍ଶନ ପାଇଁ ଯେତିକି ମନରେ ଉତ୍କଣ୍ଠା, ଡଃ ମହତାବଙ୍କ କନିଷ୍ଠ ଭ୍ରାତା ସ୍ୱର୍ଗତଃ ଗୋପୀନାଥ ଦାସଙ୍କୁ ଚିହ୍ନିବା ପାଇଁ ମଧ୍ୟ ଆମ୍ଭମାନଙ୍କ ମଧ୍ୟରେ ସେତିକି ଆଗ୍ରହ । ମୋର ସାଙ୍ଗସାଥୀମାନଙ୍କର ଅଙ୍ଗୁଳି ନିର୍ଦ୍ଦେଶ ମୋତେ ତାଙ୍କୁ ଚିହ୍ନିବାରେ ସହାୟକ ହୋଇଥିଲା । ଡଃ ମହତାବଙ୍କ ଭଳି ସମ୍ଭ୍ରାନ୍ତ ଚେହେରା । ଆମ୍ଭମାନଙ୍କର ଦୃଷ୍ଟି ନିବିଦ୍ଧ ହୋଇଥିଲା ତାଙ୍କରିଠାରେ । ପରବର୍ତ୍ତୀ ବର୍ଷମାନଙ୍କରେ ମହତାବ ଜୟନ୍ତୀ ପାଳନ ଅବସରରେ ସ୍ୱର୍ଗତଃ ଦାସଙ୍କୁ ଦେଖେଁ । ଆମେ ସ୍କୁଲପିଲା ମହତାବଙ୍କ ଜୀବନୀ ଉପରେ ଆଧାରିତ ପ୍ରବନ୍ଧ, କବିତା ବକ୍ତୃତା ପ୍ରତିଯୋଗିତାରେ ସକ୍ରିୟ ଅଂଶ ଗ୍ରହଣ କରୁଁ । ଉକ୍ତ ସଭାମାନଙ୍କରେ ଶ୍ରୀ ବିଜୁ ପଟ୍ଟନାୟକ ସମାଜ ସଂପାଦକ ଶ୍ରୀ ରାଧାନାଥ ରଥ, ଶ୍ରୀ ସତ୍ୟପ୍ରିୟ ମହାନ୍ତି ଭଳି ଅନେକ ରାଜନୀତିଜ୍ଞ, ସମାଜସେବୀ, ଅଧ୍ୟାପକ ପ୍ରଭୃତି ଅତିଥିଗଣ ଯୋଗଦାନ କରନ୍ତି । ଏ ସମସ୍ତ ଜୟନ୍ତୀର ଆୟୋଜକ ଥାଆନ୍ତି ସ୍ୱର୍ଗତଃ ଦାସ । ତାଙ୍କରି ପୃଷ୍ଠପୋଷକତାରେ ଆଗରପଡ଼ାରେ ମହତାବ ଜୟନ୍ତୀ ଏକ ସ୍ଥାୟୀ ସାଂସ୍କୃତିକ ଅନୁଷ୍ଠାନରେ ପରିଣତ ହୋଇ ପାରିଥିଲା । ଆଗରପଡ଼ାରେ ତାହା ଏକ ବାର୍ଷିକ ଉତ୍ସବର ରୂପ ନେଇପାରିଥିଲା କେବଳ ତାଙ୍କରି ଉଦ୍ୟମ ଯୋଗୁଁ ।

୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ଗଠନ ହେବାପରେ ମେଦିନୀପୁରକୁ ଓଡ଼ିଶା ସହିତ ମିଶ୍ରଣ ପାଇଁ ପ୍ରବଳ ଉଦ୍ୟମ ଆରମ୍ଭ

ହୋଇଥିଲା । ଏଥିରେ ଯେଉଁ ଓଡ଼ିଆ ନେତୃମଣ୍ଡଳୀ ଓ ସ୍ୱଚ୍ଛାସେବକମାନେ ମେଦିନପୁରବାସୀଙ୍କୁ ପ୍ରବର୍ତ୍ତାଇବା ନିମିତ୍ତ ଉଦ୍ୟମ କରିଥିଲେ ସେମାନଙ୍କ ମଧ୍ୟରୁ ସ୍ୱର୍ଗତଃ ଦାସ ଅନ୍ୟତମ । ବାଲେଶ୍ୱର ମିଶନ୍ ହାଇସ୍କୁଲର ଛାତ୍ର ଥିଲାବେଳେ ସେ ସ୍ୱର୍ଗତଃ ନନ୍ଦକିଶୋର ଦାସ, ସ୍ୱର୍ଗତଃ ବିଶ୍ୱନାଥ ହୋତା, ସ୍ୱର୍ଗତଃ ସର୍ଦ୍ଦାର ସୁରେନ୍ଦ୍ରନାଥ ଦାସ, ସ୍ୱର୍ଗତଃ ଭୈରବ ଚନ୍ଦ୍ର ମହାପାତ୍ର, ସ୍ୱର୍ଗତଃ ନୀଳାମ୍ବର ଦାସ ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀମାନଙ୍କଦ୍ୱାରା ବିଶେଷଭାବେ ପ୍ରଭାବିତ ହୋଇଥିଲେ । ଏକ ଶୋଭାଯାତ୍ରାରେ ଯୋଗ ଦେଇ ୧୯୩୦ ମସିହାରେ ସେ ୭ ଦିନ ପାଇଁ ଜେଲ ଯାଇଥିଲେ । ଏଥିରେ ତାଙ୍କ ପିତା ଦୁଃଖିତ ହୋଇ ତାଙ୍କୁ ଭଦ୍ରକ ହାଇସ୍କୁଲରେ ନାମ ଲେଖାଇଲେ । ମହତାବଙ୍କ ସହଧର୍ମିଣୀ ସୁଭଦ୍ରା ବିବି ସତ୍ୟାଗ୍ରହରେ ଜେଲ୍ ଯିବାରୁ ସେ ପଢ଼ା ଛାଡ଼ି ଭଦ୍ରକରେ ସତ୍ୟାଗ୍ରହ କରି ଜେଲ୍ ଗଲେ ଓ ପରେ ପରେ ସତ୍ୟାଗ୍ରହ କାମରେ ଲିପ୍ତ ରହିଲେ । ୧୯୩୩ ମସିହାରେ ମଧ୍ୟ ସେ ପୁଣି ଥରେ ଜେଲ୍ ଗଲେ । ପ୍ରଥମଥର ଭଦ୍ରକରୁ କଟକ ହୋଇ ସମ୍ବଲପୁର ଜେଲ୍ ଓ ଦ୍ୱିତୀୟଥର କଟକ ହୋଇ ପାଟଣା କେମ୍ପ୍ ଜେଲକୁ ଗଲେ । ଏହି ଜେଲ୍ ଜୀବନ କାଳରେ ତାଙ୍କ ପିତା କୃଷ୍ଣ ଚରଣଙ୍କର ଦେହାନ୍ତ ହୋଇଥିଲା ।

୧୯୩୪ ମସିହା ପ୍ରାରମ୍ଭରେ ସେ କିଛିଦିନ କଟକସ୍ଥ ନବକୃଷ୍ଣ ଚୌଧୁରୀଙ୍କ ବାସଭବନରେ ରହିଥିଲେ । ନବବାବୁ ଓ ମାଳତୀ ଚୌଧୁରୀଙ୍କ ପ୍ରଭାବରେ ୧୯୩୭ ମସିହାରେ କଂଗ୍ରେସ କାର୍ଯ୍ୟ ସଂଗେସଂଗେ କୃଷକ ସଂଗଠନ କାର୍ଯ୍ୟ ବାଲେଶ୍ୱରର ଶ୍ରୀ ଗୌରଚନ୍ଦ୍ର ଦାସଙ୍କ ନେତୃତ୍ୱରେ କିଛି ବର୍ଷ କରିଥିଲେ ।

୧୯୩୭ ମସିହାର ଶେଷବେଳକୁ ଓଡ଼ିଶାରେ ଯେଉଁ ନିର୍ବାଚନ ହେଲା ସେଥିରେ ସ୍ୱଗତଃ ଦାସ ପ୍ରଦେଶ କଂଗ୍ରେସ କମିଟିର ସଭ୍ୟ ଭାବରେ ନିର୍ବାଚିତ ହେଲେ । କଂଗ୍ରେସର ଡେଲିଗେଟ୍ ଭାବରେ ସେ ଲକ୍ଷ୍ନୌ, ହରିପୁର, ତ୍ରିପୁରା, ରାମଗଡ଼ ପ୍ରଭୃତି ଖୋଲା ଅଧିବେଶନରେ ଯୋଗ ଦେଇଥିଲେ । ଏହି ଅବସରରେ ସେ ମଦନମୋହନ ମାଲବ୍ୟ, ସୁଭାଷଚନ୍ଦ୍ର ବୋଷ, ଜବାହରଲାଲ ନେହେରୁ, ସର୍ଦ୍ଦାର ପଟେଲ, ରାଜେନ୍ଦ୍ର ପ୍ରସାଦ, ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ପ୍ରଭୃତିଙ୍କ ଭାଷଣ ଶୁଣିବାର ସୁଯୋଗ ଲାଭ କରିଥିଲେ ।

୧୯୩୫ ମସିହା ବେଳକୁ ବ୍ରିଟିଶ ସରକାରଙ୍କ ଅତ୍ୟାଚାରରେ କଂଗ୍ରେସ ମ୍ରିୟମାଣ ହୋଇ ପଡ଼ିଥାଏ । ମହାତ୍ମା ଗାନ୍ଧୀ ସତ୍ୟାଗ୍ରହ ଆନ୍ଦୋଳନ ସ୍ଥଗିତ ରଖିଥାଆନ୍ତି ଓ କଂଗ୍ରେସ କର୍ମୀମାନଙ୍କୁ ଗାଁରେ ଯାଇ ସଂଗଠନ କରିବା ପାଇଁ ନିର୍ଦ୍ଦେଶ ଦେଇ ଥାଆନ୍ତି । ତେଣୁ ମହତାବ ଆଗରପଡ଼ାରେ ଏକ ଡାକ୍ତରଖାନା ୧୯୩୪ ମସିହାରେ ପ୍ରତିଷ୍ଠା କରିସାରିଥିଲେ, ଯାହାକି ଆଜି ଏକ ସମନ୍ୱିତ ସ୍ୱାସ୍ଥ୍ୟକେନ୍ଦ୍ରରେ ପରିଣତ ହୋଇପାରିଛି । ୧୯୩୫ ମସିହାରେ ତାଙ୍କ ପ୍ରଚେଷ୍ଟାରେ ଜନ୍ମ ନେଲା କୃଷ୍ଣଚରଣ ବିଦ୍ୟାମନ୍ଦିର । ଶିକ୍ଷା କ୍ଷେତ୍ରରେ ଉକ୍ତ ଅନୁଷ୍ଠାନ ବାଲେଶ୍ୱର ଜିଲ୍ଲାରେ ଏକ ଆଲୋକବର୍ତ୍ତିକା ସ୍ୱରୂପ ଦଣ୍ଡାୟମାନ । ଉକ୍ତ ଅନୁଷ୍ଠାନ ଧନ୍ୟ ହୋଇଥିଲା ଓଡ଼ିଶାର ସୁନାମଧନ୍ୟ ଅର୍ଥନୀତିଜ୍ଞ ଡଃ ବୈଦ୍ୟନାଥ ମିଶ୍ର, ପୂର୍ବତନ କେନ୍ଦ୍ର ମନ୍ତ୍ରୀ ସ୍ୱର୍ଗତଃ ସମରେନ୍ଦ୍ର କୁଣ୍ଡୁ ପ୍ରଭୃତି ଅନେକ ପ୍ରତିଭାକୁ ସୃଷ୍ଟି କରି । ମହତାବଙ୍କର ଅତ୍ୟନ୍ତ ଆଜ୍ଞାବହ ଅନୁଜ ଭାବରେ ତାଙ୍କଦ୍ୱାରା ଗଢ଼ା ଯାଇଥିବା ଏ ସମସ୍ତ ଗଠନମୂଳକ କାର୍ଯ୍ୟରେ ସ୍ୱର୍ଗତଃ ଗୋପୀନାଥ ବାବୁ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ପରବର୍ତ୍ତୀ ସମୟରେ ଆଗରପଡ଼ାରେ ବାଳିକା ମି.ଇ. ସ୍କୁଲ, ସରକାରୀ ବାଳିକା ହାଇସ୍କୁଲ, ସେକେଣ୍ଡାରୀ ଟ୍ରେନିଂ ସ୍କୁଲ ଭଳି ଯେଉଁସବୁ ଅନୁଷ୍ଠାନ ଡଃ ମହତାବଙ୍କ ପୃଷ୍ଠପୋଷକତାରେ ଗଢ଼ି ଉଠିଲା ସେ ସବୁର ଲାଳନପାଳନ ତଥା ତତ୍ତ୍ୱାବଧାନ ଦାୟିତ୍ୱ ପଡ଼ିଥିଲା ଅନୁଜ ଗୋପୀନାଥଙ୍କ ଉପରେ ।

ଡଃ ମହତାବ ବ୍ୟକ୍ତିଗତ ସତ୍ୟାଗ୍ରହ ତଥା ୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ପାଇଁ ୧୯୪୦ ମସିହା ଶେଷଭାଗରୁ ୧୯୪୫ ମସିହା ଶେଷ ପର୍ଯ୍ୟନ୍ତ ଜେଲରେ ରହିଲେ । ତେଣୁ ସ୍ୱର୍ଗତଃ ଦାସ କଂଗ୍ରେସ କମିଟିରୁ ଇସ୍ତଫା ଦେଇ ମହତାବଙ୍କ ଜମିଦାରୀ ଓ ଆଗରପଡ଼ାରେ ଅନ୍ୟାନ୍ୟ କାର୍ଯ୍ୟ ବୁଝିବାରେ ନିମଜ୍ଜିତ ରହିଲେ । ଜମିଦାରୀର ଯାହା ଆୟ ତାହା ଠାକୁର ମନ୍ଦିରର ନୀତି, ମହତାବଙ୍କଦ୍ୱାରା ପ୍ରତିଷ୍ଠିତ ହାଇସ୍କୁଲ, ଡାକ୍ତରଖାନା, କର୍ମମନ୍ଦିର ଓ ସୂତାକଟା କେନ୍ଦ୍ର ପ୍ରଭୃତିର ସାହାଯ୍ୟରେ ବିନିଯୋଗ କରୁଥିଲେ ।

୧୯୫୩ ମସିହାରେ ଜମିଦାରୀ ଉଚ୍ଛେଦ ବେଳକୁ ସେ ପୁରୁଷଣ୍ଡ ପଞ୍ଚାୟତର ସରପଞ୍ଚ ଭାବରେ କାର୍ଯ୍ୟ କରୁଥାଆନ୍ତି । ସେ ଉକ୍ତ ପଞ୍ଚାୟତର ପ୍ରଥମ ସରପଞ୍ଚ ଭାବରେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇପାରିଥିଲେ । କେବଳ ସେତିକି ନୁହେଁ ସବୁ ୱାର୍ଡ଼ରେ ବୁଲି ୱାର୍ଡ଼ମେମ୍ବରମାନଙ୍କୁ ମଧ୍ୟ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ କରାଇଥିଲେ । ୧୯୫୦ରୁ ୧୯୫୬ ମଧ୍ୟରେ ସରପଞ୍ଚ ଭାବରେ ସେ ବିଭିନ୍ନ ଗ୍ରାମରେ ପ୍ରାଥମିକ ବିଦ୍ୟାଳୟ, ଆଗରପଡ଼ାରୁ ଶୋଶୋକୁ ରାସ୍ତା, ପଶୁ ଡାକ୍ତରଖାନା, ଡାକ୍ତରଖାନାକୁ ପ୍ରାଥମିକ ସ୍ୱାସ୍ଥ୍ୟକେନ୍ଦ୍ରରେ

ପରିଣତ କରିବା ପ୍ରଭୃତି ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟରେ ମନୋନିବେଶ କରିଥିଲେ ।

୧୯୫୬ ମସିହାରେ ସେ ପୁନର୍ବାର କଂଗ୍ରେସରେ ଯୋଗଦେଲେ । ୧୯୫୭ ଜାନୁଆରୀରେ ସୋର, ଖଇରା, ବନ୍ତ, ସିମୁଳିଆ ନିର୍ବାଚନ ମଣ୍ଡଳୀରେ ଡକ୍ଟର ମହତାବଙ୍କ ପକ୍ଷରୁ ସେ ନିର୍ବାଚନ ପରିଚାଳନା କରିଥିଲେ । ତାହା ତାଙ୍କର ନିର୍ବାଚନ ପରିଚାଳନା ଦାୟିତ୍ୱ ନେବା ପ୍ରଥମ । ପରବର୍ତ୍ତୀ ନିର୍ବାଚନମାନଙ୍କରେ ସେ ମହତାବଙ୍କ ପକ୍ଷରୁ ନିର୍ବାଚନ ଦାୟିତ୍ୱ ସମ୍ପାଦନ କରିଥିଲେ । ନିଜେ ମଧ ବନ୍ତ ପଞ୍ଚାୟତ ସମିତିରେ ଦୁଇଥର ଚେୟାରମେନ୍ ଓ ୧୯୭୭ ମସିହାରେ ଜୟପ୍ରକାଶ ନାରାୟଣଙ୍କଦ୍ୱାରା ଗଠିତ ଜନତାପାର୍ଟି ତରଫରୁ ଖଇରା-ସିମୁଳିଆ ନିର୍ବାଚନ ମଣ୍ଡଳୀର ବିଧାୟକ ଭାବେ ନିର୍ବାଚିତ ହୋଇ ତାଙ୍କର ରାଜନୈତିକ ଜୀବନ ଅତିବାହିତ କରିଥିଲେ ।

ଖଇରା-ସିମୁଳିଆ ବିଧାୟକ ଥିଲାବେଳେ ଦକ୍ଷିଣ-ପଶ୍ଚିମ ଅବିଭକ୍ତ ବାଲେଶ୍ୱର ଜିଲ୍ଲାରେ ଉଚ୍ଚଶିକ୍ଷାର ପ୍ରସାର ନିମନ୍ତେ କୁପାରୀଠାରେ ଏକ ମହାବିଦ୍ୟାଳୟ ପ୍ରତିଷ୍ଠା କରିବାର ପରିକଳ୍ପନାକୁ ବାସ୍ତବରୂପ ଦେବା ପାଇଁ ପବିତ୍ର ବାହୁଡ଼ା ଯାତ୍ରାରେ ଡଃ ମହତାବଙ୍କଦ୍ୱାରା ସେ ମହାବିଦ୍ୟାଳୟ ଗୃହର ଶିଳାନ୍ୟାସ କାର୍ଯ୍ୟ ସମାପନ କରାଇଥିଲେ । ସେହି ନବନିର୍ମିତ ଅନୁଷ୍ଠାନରେ ଏ ଲେଖକ ଅଧ୍ୟାପକ ହେବାର ଗୌରବ ଅର୍ଜନ କରିଥିଲା ଏବଂ ସେହିଦିନଠାରୁ ସ୍ୱର୍ଗତଃ ଦାସଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିଲା । ଆମ୍ଭୋ ମହାବିଦ୍ୟାଳୟ ପରିଚାଳନା କମିଟିର ପ୍ରଥମ ସମ୍ପାଦକ ଭାବରେ ତାଙ୍କର ଭୂମିକା ଅନସ୍ୱୀକାର୍ଯ୍ୟ । ଅଧ୍ୟାପକମାନଙ୍କ ସୁଖଦୁଃଖ ବୁଝିବାଠାରୁ ଆରମ୍ଭକରି ସମସ୍ତ ଦାୟିତ୍ୱ ସେ ବୁଝୁଥିଲେ । ପରବର୍ତ୍ତୀ ସମୟରେ ତାଙ୍କ ସହିତ ଅନେକଥର ଆଳାପ କରିବାର ସୁଯୋଗ ପାଇଥିଲି । ସେହି ଆଲୋଚନା ମଧ୍ୟରେ ମହତାବଙ୍କ ସଂଗ୍ରାମୀ ଜୀବନ, ତାଙ୍କ ଜମିଦାରୀ ରକ୍ଷାଠାରୁ ଆରମ୍ଭ କରି ଗୋପବନ୍ଧୁ ଚୌଧୁରୀଙ୍କ ସହିତ ମହତାବଙ୍କ ବିବାଦ, ଗାନ୍ଧିଜୀଙ୍କର ନେହେରୁ ପ୍ରୀତି ଓ ନେତାଜୀଙ୍କ ସହିତ ଗାନ୍ଧୀଙ୍କର ମତାନ୍ତର ପର୍ଯ୍ୟନ୍ତ ଅନେକ ଆଲୋଚନା ସ୍ଥାନ ପାଏ । ବିଶେଷତଃ ମହତାବଙ୍କ କଥା ବର୍ଣ୍ଣନା କଲାବେଳେ ସେ ଅତ୍ୟନ୍ତ ଭାବବିହ୍ୱଳ ହୋଇପଡ଼ନ୍ତି । ମହାବିଦ୍ୟାଳୟର ଦୁର୍ଦ୍ଦିନବେଳେ ହତୋତ୍ସାହିତ ହୋଇ ମୁଁ ଯେତେବେଳେ ତାଙ୍କ ନିକଟକୁ ଦୌଡ଼ିଯାଏଁ ସେତେବେଳେ ସେ ମୋତେ ତଥା ଆମ୍ଭ ବିଦ୍ୟାଳୟର କର୍ମଚାରୀମାନଙ୍କୁ ସାନ୍ତ୍ୱନା ଦିଅନ୍ତି । ଯେତେବଡ଼ ସମସ୍ୟା ହେଉନା କାହିଁକି ତାକୁ ସେ ତୁଚ୍ଛ ମଣୁଥିଲେ । ବ୍ୟକ୍ତି ଚରିତ୍ରକୁ ତର୍ଜମା କରିବାରେ ସେ ଥିଲେ ସିଦ୍ଧହସ୍ତ । ବ୍ୟକ୍ତିର ଦୁର୍ବଳତାକୁ ସେ ପ୍ରଥମେ ଆଖିଆଗକୁ ଆଣନ୍ତି । ଫଳରେ ଯେକୌଣସି ସମସ୍ୟା ତାଙ୍କ ନିକଟରେ କ୍ଷୁଦ୍ର ହୋଇଯାଏ । ମହତାବଙ୍କ ସାମଗ୍ରିକ କୃତିତ୍ୱ ପଛରେ ସହଧର୍ମିଣୀ ସୁଭଦ୍ରାଙ୍କର ଭୂମିକା ଯେପରି ଗୁରୁତ୍ୱପୂର୍ଣ୍ଣ ଥିଲା, ଅନୁରୂପଭାବେ ଗୋପୀନାଥ ଦାସଙ୍କ ଭୂମିକା ମଧ କୌଣସି ଦୃଷ୍ଟିରୁ ଊଣା ନଥିଲା । ଏହା ହିଁ ଥିଲା ତାଙ୍କ ଚରିତ୍ରର ବିଶେଷତ୍ୱ ।

ଅଧ୍ୟାପକ, ଇତିହାସ ବିଭାଗ,
ଆଗରପଡ଼ା କଲେଜ, ଭଦ୍ରକ

---

# ଜାତୀୟ ଶକ୍ତି ଉତ୍ତୋଳନ : ପ୍ରଦୀପ ପାତ୍ରଙ୍କୁ ୪ଟି ସ୍ୱର୍ଣ୍ଣ ପଦକ ମିଳିଲା

ଗୌହାଟୀରେ ଗତ ତା.୭.୦୧.୨୦୧୦ରିଖଠାରୁ ଆରମ୍ଭ ହୋଇଥିବା ଜାତୀୟ ଜୁନିଅର ଶକ୍ତି ଉତ୍ତୋଳନ ଚାମ୍ପିଅନସିପ୍‌ରେ ଓଡ଼ିଶାର ଶ୍ରୀ ପ୍ରଦୀପ କୁମାର ପାତ୍ର ପ୍ରଥମ ଦିନରେ ଏକକାଳୀନ ୪ଟି ସ୍ୱର୍ଣ୍ଣ ପଦକ ଜିତିଛନ୍ତି । ୬୦ କିଲୋଗ୍ରାମ ଶ୍ରେଣୀରେ ପ୍ରଦୀପ ସ୍କ୍ୱାଟ୍‌ରେ ୨୧୦ କିଲୋଗ୍ରାମ, ବେଞ୍ଚ୍ ପ୍ରେସ୍‌ରେ ୧୧୫ କିଲୋଗ୍ରାମ, ଡେଡ୍ ଲିଫ୍‌ଟରେ ୨୪୦ କିଲୋଗ୍ରାମ ଶକ୍ତି ଉତ୍ତୋଳନ କରି ପ୍ରଥମ ସ୍ଥାନରେ ରହିଥିବାବେଳେ ମୋଟ ଉପରେ ୫୬୫ କିଲୋଗ୍ରାମ ଉତ୍ତୋଳନ କରି ଓଭର ଅଲ୍ ଶ୍ରେଷ୍ଠ ସ୍ଥାନ ଦଖଲ କରିଥିଲେ । ସୂଚନାଯୋଗ୍ୟ, ପ୍ରଦୀପ ପୂର୍ବରୁ ଏସୀୟ ଜୁନିଅର ଶକ୍ତି ଉତ୍ତୋଳନରେ ରୌପ୍ୟ ପଦକ ଏବଂ ରାଜ୍ୟଗୋଷ୍ଠୀ ଶକ୍ତି ଉତ୍ତୋଳନରେ ସ୍ୱର୍ଣ୍ଣ ପଦକ ସହ 'ଷ୍ଟ୍ରଙ୍ଗ ମ୍ୟାନ୍' ବିବେଚିତ ହୋଇ ଗୌରବ ଆଣିଥିଲେ । ଗୌହାଟୀରେ ଗୁରୁବାର ତା.୭.୧.୨୦୧୦ରିଖଠାରୁ ଅନ୍ୟତମ ଓଡ଼ିଆ ପ୍ରତିଯୋଗୀ ବାଗୁର ରଡ଼ାଇ ୫୬ କିଲୋଗ୍ରାମ ଶ୍ରେଣୀର ଡେଡ୍ ଲିଫ୍‌ଟରେ ୨୨୦ କିଲୋଗ୍ରାମ ଉତ୍ତୋଳନ କରି ଦ୍ୱିତୀୟ ସ୍ଥାନ ସହ ରୌପ୍ୟ ପଦକ ହାସଲ କରିଛନ୍ତି ।

# ଓଡ଼ିଶାରେ ପଞ୍ଚଦଶତମ ଜାତୀୟ ଯୁବ ମହୋତ୍ସବ

ପୁଷ୍ପାଞ୍ଜଳି ପାଇକରାୟ

**ସ୍ୱା**ଧୀନତାର ଅର୍ଦ୍ଧଶତାବ୍ଦୀ ପୂର୍ବରୁ ଜାତୀୟ ସଂହତି ଓ ଆନ୍ତର୍ଜାତୀୟ ସଦ୍‌ଭାବନାର ଉଦ୍‌ଘୋଷଣା କରିଥିବା ସ୍ୱାମୀ ବିବେକାନନ୍ଦ ହିଁ ଥିଲେ ଯୁବ ପ୍ରତିଭା ଓ ପ୍ରଜ୍ଞାର ପ୍ରତୀକ । ଯୁବ ପ୍ରତିଭାଦ୍ୱାରା ଦେଶର ଅଖଣ୍ଡତା, ସାଂସ୍କୃତିକ ସମନ୍ୱୟ, ସଂହତି ଓ ଜାତୀୟ ପ୍ରଗତି ସୁନିଶ୍ଚିତ– ଏହି ସନ୍ଦେଶ ଦେଇ ଯାଇଥିଲେ ସ୍ୱାମୀ ବିବେକାନନ୍ଦ । ବିଳମ୍ବରେ ହେଲେ ମଧ୍ୟ କେନ୍ଦ୍ର ସରକାର ତାଙ୍କ ଜନ୍ମ ଦିବସକୁ 'ଜାତୀୟ ଯୁବ ମହୋତ୍ସବ' ଭାବେ ପାଳନ କରିଆସୁଛନ୍ତି ୧୯୯୫ ମସିହାଠାରୁ ।




୧୯୯୫ ମସିହାଠାରେ ପ୍ରଥମ କରି ମଧ୍ୟପ୍ରଦେଶର ଭୋପାଳଠାରେ ଅନୁଷ୍ଠିତ ହୋଇଥିଲା ଜାତୀୟ ଯୁବ ମହୋତ୍ସବ । କେନ୍ଦ୍ର ସରକାରଙ୍କ କ୍ରୀଡ଼ା ଓ ଯୁବ ବ୍ୟାପାର ମନ୍ତ୍ରଣାଳୟ, ନେହେରୁ ଯୁବକେନ୍ଦ୍ର ସଂଗଠନ ଓ ଜାତୀୟ ସେବା ସଂସ୍ଥାର ସହାୟତାରେ ତାହା ଆରମ୍ଭ ହୋଇଥିଲା । ଇତି ମଧ୍ୟରେ ୧୪ ଗୋଟି ଯୁବ ମହୋତ୍ସବ ଅନୁଷ୍ଠିତ ହୋଇଯାଇଛି । ଗତବର୍ଷ ମଧ୍ୟ ପଞ୍ଜାବର ଅମୃତସରଠାରେ ଅନୁଷ୍ଠିତ ହୋଇଥିଲା । ପ୍ରତ୍ୟେକ ବର୍ଷ ଜାନୁଆରୀ ୧୨ ତାରିଖର (ଯେହେତୁ ବିବୋକନନ୍ଦଙ୍କ ଜୟନ୍ତୀ ଜାନୁଆରୀ ୧୨ ତାରିଖରେ) ଏକ ସପ୍ତାହ ପୂର୍ବରୁ ବା ପରେ ଏହି ଯୁବ ମହୋତ୍ସବ ପାଳନ କରାଯାଏ । ଆୟୋଜନ କରୁଥିବା ରାଜ୍ୟ କେନ୍ଦ୍ର ସରକାରଙ୍କ ସହ ଯୋଗସୂତ୍ର ରଖି ନିଜର ସୁବିଧା ସୁଯୋଗ ଅନୁଯାୟୀ ଏହାକୁ ପାଳନ କରନ୍ତି । କିନ୍ତୁ ତା'ର ଯଥେଷ୍ଟ ପୂର୍ବରୁ ପ୍ରସ୍ତୁତି ଆରମ୍ଭ ହୁଏ ।

ପଞ୍ଚଦଶତମ ଜାତୀୟ ଯୁବ ମହୋତ୍ସବ ପାଳନ କରିବାର ସୁଯୋଗ ଏଥର ମିଳିଥିଲା ଓଡ଼ିଶାକୁ । ଜାନୁଆରୀ ୮ ତାରିଖରୁ ୧୨ ତାରିଖ ପର୍ଯ୍ୟନ୍ତ ଏହି ଯୁବ ମହୋତ୍ସବ ଭୁବନେଶ୍ୱରର କଳିଙ୍ଗ ଷ୍ଟାଡ଼ିୟମ୍‌ଠାରେ ଅନୁଷ୍ଠିତ ହୋଇଯାଇଛି । କିନ୍ତୁ ଏହାର ତିନି ମାସ ପୂର୍ବରୁ ପ୍ରସ୍ତୁତି ଆରମ୍ଭ ହୋଇଥିଲା । କେନ୍ଦ୍ର ଯୁବବ୍ୟାପାର ମନ୍ତ୍ରଣାଳୟଠାରେ ଏକ ଉଚ୍ଚସ୍ତରୀୟ କମିଟିର ବୈଠକରେ

ସାଙ୍କେତିକ ଚିହ୍ନ (ଲୋଗୋ) (ଶୁଭଦାୟକ ଜୀବ ମାସ୍କଟ) ଏବଂ ମହୋତ୍ସବ ପାଳନର ମର୍ମାର୍ଥ ବା ଥିମ୍ ସମ୍ପର୍କରେ ନିଷ୍ପତ୍ତି ନିଆଯାଇଥିଲା । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସେହି ଉଚ୍ଚସ୍ତରୀୟ ବୈଠକରେ ଯୋଗ ଦେଇଥିଲେ । ଭିତରକନିକାର ୩୪ ବର୍ଷ ବୟସର ବିରଳ ଶ୍ୱେତ କୁମ୍ଭୀର 'ଗୌରୀ'କୁ ମାସ୍କଟ୍ ଭାବରେ ମନୋନୀତ କରାଯାଇଥିଲା । କେନ୍ଦ୍ର କ୍ରୀଡ଼ା ଓ ଯୁବବ୍ୟାପାର ମନ୍ତ୍ରୀ ଡଃ ଏମ୍.ଏସ୍. ଗିଲ୍‌ଙ୍କ ଅଧକ୍ଷତାରେ ପଞ୍ଚଦଶତମ ଯୁବ ମହୋତ୍ସବର ଥିମ୍ 'ବିଭିନ୍ନତା ମଧ୍ୟରେ ଏକତାର ପାଳନ' ଏବଂ ଛଅଗୋଟି ଯୁବପ୍ରତିମାର ରୈଖିକ ଚେହେରାକୁ କଳ୍ପନା କରି ତହିଁରେ ଭାରତୀୟ ସଂସ୍କୃତି ଅନ୍ତର୍ଗତ ବିଭିନ୍ନତାର ବାର୍ତ୍ତା ଦେଇ 'ଲୋଗୋ' ଚୟନ କରାଗଲା ।

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ନେତୃତ୍ୱରେ ଓଡ଼ିଶାର କ୍ରୀଡ଼ା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରବୀଣଚନ୍ଦ୍ର ଭଞ୍ଜଦେଓଙ୍କ ସକ୍ରିୟ ସହଯୋଗରେ ବିଭାଗୀୟ କ୍ରୀଡ଼ା ସଚିବ ଏହାର ପ୍ରସ୍ତୁତି ବହୁ ପୂର୍ବରୁ ଆରମ୍ଭ କରିଥିଲେ । ଏଥିପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକଙ୍କ ଅଧକ୍ଷତାରେ ମୁଖ୍ୟ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର ଏବଂ ବିଭାଗୀୟ କ୍ରୀଡ଼ା ସଚିବ ଭିନ୍ନ ଭିନ୍ନ ସମୟରେ ବୈଠକ କରି କାର୍ଯ୍ୟକ୍ରମ ପ୍ରସ୍ତୁତି କରିଥିଲେ । ନେହେରୁ ଯୁବକେନ୍ଦ୍ର ସଂଗଠନ, ଜାତୀୟ ସମାଜ ସେବା, ସରକାରଙ୍କ ବିଭିନ୍ନ ବିଭାଗ ଯଥା- ସୂଚନା ଓ ଲୋକ ସଂପର୍କ, କ୍ରୀଡ଼ା ଓ ଯୁବବ୍ୟାପାର, ପରିବହନ, ସଂସ୍କୃତି ଓ ପର୍ଯ୍ୟଟନ, ଗ୍ରାମ୍ୟ ଉନ୍ନୟନ, ଭୁବନେଶ୍ୱର ମହାନଗର ନିଗମ, ଭୁବନେଶ୍ୱର ଉନ୍ନୟନ କର୍ତ୍ତୃପକ୍ଷ, ଶକ୍ତି ବିଭାଗ, କମିଶନରେଟ୍ ପୋଲିସ୍, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ, ବୟନ ଶିଳ୍ପ ଓ ହସ୍ତତନ୍ତ, ନଗର ଉନ୍ନୟନ ଓ ଗୃହ ନିର୍ମାଣ, କିଟ୍ ପ୍ରତିଷ୍ଠାନ ସହଯୋଗରେ ମୁଖ୍ୟ ଶାସନ ସଚିବଙ୍କ ଅଧକ୍ଷତାରେ ୨୪ ଗୋଟି ସବ୍‌କମିଟି ଗଠନ କରାଯାଇଥିଲା । ରାଜ୍ୟରେ ପ୍ରଥମ ଥର ଲାଗି ଅନୁଷ୍ଠିତ ଏତେବଡ଼ ଆୟୋଜନ କିପରି ସଫଳ ହେବ ତାହା ହିଁ ଥିଲା ସମସ୍ତଙ୍କର ଲକ୍ଷ୍ୟ । ଏ ସମସ୍ତ ବିଭାଗ ସମେତ ନେହେରୁ ଯୁବକେନ୍ଦ୍ର ସଂଗଠନ, ଜାତୀୟ ସେବା ସଂସ୍ଥା ଓ କେନ୍ଦ୍ର ଯୁବବ୍ୟାପାର ମନ୍ତ୍ରଣାଳୟ ସହ ସିଧାସଳଖ ସମନ୍ୱୟ ରଖିଥିଲା ରାଜ୍ୟର କ୍ରୀଡ଼ା ବିଭାଗ । ସବୁଠି ଚଞ୍ଚଳତାର ଲକ୍ଷଣ, ଆନନ୍ଦଉଲ୍ଲାସର ବାତାବରଣ, ପୁଣି ମନରେ ଉଦ୍‌ବେଳନ- ଜାତୀୟ ସ୍ତରର ଏପରି ମହୋତ୍ସବ କିପରି ସଫଳ ହେବ । ସଫଳତା ରାଜ୍ୟ ପାଇଁ ଗୌରବ ଆଣିବ ଏବଂ ମୁଖ୍ୟମନ୍ତ୍ରୀଙ୍କ ଭାବମୂର୍ତ୍ତିକୁ ଆହୁରି ଉଜ୍ଜ୍ୱଳ କରିବ । ତେଣୁ ସମସ୍ତଙ୍କର ସ୍ୱତଃସ୍ଫୁର୍ତ୍ତ ସହଯୋଗ କାମନା କରାଯାଉଥିଲା । ସମସ୍ତଙ୍କର ଅକୁଣ୍ଠ ସହଯୋଗଦ୍ୱାରା ସୁବ୍ୟବସ୍ଥିତ ଆୟୋଜନକୁ ଦେଖି ଉଦ୍‌ଘାଟନୀ ସମାରୋହରେ କେନ୍ଦ୍ର କ୍ରୀଡ଼ା ଓ ଯୁବବ୍ୟାପାର ମନ୍ତ୍ରୀ ଡଃ ଏମ୍.ଏସ୍. ଗିଲ ଭାବବିହ୍ୱଳ ହୋଇ କହିଥିଲେ – 'ଗତବର୍ଷ ମୋ' ରାଜ୍ୟରେ ଜାତୀୟ ଯୁବ ମହୋତ୍ସବ ଆୟୋଜନ କରାଯାଇଥିଲା । କିନ୍ତୁ ସେଠାରେ ଏପରି ସଫଳତା, ଲୋକଙ୍କର ଆନନ୍ଦ ଉଚ୍ଛ୍ୱାସ ଓ ଏକାନ୍ତ ସହଯୋଗ ମୁଁ ଅନୁଭବ କରିନଥିଲି, ଯାହା ଆଜି ଦେଖୁଛି । ଭୁବନେଶ୍ୱର ସେସବୁକୁ ଟପିଗଲା ।'

ପାଖାପାଖି ଜାନୁଆରୀ ୧ ତାରିଖ ବା ତା' ପୂର୍ବରୁ ଆରମ୍ଭ ହୋଇଗଲା କଳିଙ୍ଗ ଷ୍ଟାଡ଼ିୟମ୍‌ର ମରାମତି କାର୍ଯ୍ୟ । କଳିଙ୍ଗ ଷ୍ଟାଡ଼ିୟମ୍ ହୋଇଉଠିଲା ସମସ୍ତଙ୍କ ଆକର୍ଷଣର କେନ୍ଦ୍ରବିନ୍ଦୁ । ଗଣମାଧ୍ୟମର ପ୍ରତିନିଧିମାନଙ୍କ ଭିଡ଼ ଜମିଲା କଳିଙ୍ଗ ଷ୍ଟାଡ଼ିୟମ୍ ପଡ଼ିଆରେ । କଳିଙ୍ଗ ଷ୍ଟାଡ଼ିୟମରେ ଯେପରି କୌଣସି ବିଶୃଙ୍ଖଳାର ପ୍ରଶ୍ନ ନଉଠେ, ପରିମଳ ଉପରେ ପ୍ରଶ୍ନବାଚୀ ନ ଆସେ ତାହା ପ୍ରତି ଧ୍ୟାନ ଦିଆଯାଇ ତାହାକୁ ପରିଷ୍କାର, ପରିଚ୍ଛନ୍ନ କରାଯାଇଥିଲା । ରାତ୍ରିରେ ସୁସଜ୍ଜିତ ଆଲୋକମାଳାରେ କଳିଙ୍ଗ ଷ୍ଟାଡ଼ିୟମ ଝଟକି ଉଠୁଥିଲା । ଆଉ ସେପଟେ ଯୁବ ମହୋତ୍ସବ ପାଇଁ ପ୍ରସ୍ତୁତ ୱେବ୍‌ସାଇଟ୍ www.nyf-2010.bbsr.comର ଅନ୍‌ଲାଇନ୍ ରେଜିଷ୍ଟ୍ରେସନ୍ ଆରମ୍ଭ ହୋଇଯାଇଥିଲା ।

କେବଳ ଲାକ୍ଷାଦ୍ୱୀପକୁ ବାଦ୍‌ଦେଇ ଅନ୍ୟ ସମସ୍ତ ରାଜ୍ୟ ଓ କେନ୍ଦ୍ର ଶାସିତ ଅଞ୍ଚଳର ଯୁବ ପ୍ରତିନିଧିଗଣ ଯୋଗ ଦେଇଥିଲେ । ପ୍ରତ୍ୟେକ ରାଜ୍ୟର ୧୦୦ ଜଣ ଲେଖାଏଁ ଏହିପରି ସମୁଦାୟ ୩,୫୦୦ ଜଣ ପ୍ରତିନିଧି, ନେହେରୁ ଯୁବକେନ୍ଦ୍ର ପ୍ରତିଷ୍ଠାନ, ଜାତୀୟ ସେବା ସଂସ୍ଥା, ୨୪ ଜଣ କୃତିତ୍ୱ ଅର୍ଜନ କରିଥିବା ଯୁବକ ଓ ଯୁବତୀ ଏଥିରେ ଯୋଗ ଦେଇଥିଲେ । ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ କୃତିତ୍ୱ ପାଇଁ କେନ୍ଦ୍ର ସରକାରଙ୍କଦ୍ୱାରା ଗଠିତ କମିଟି ସେହି ୨୪ ଜଣଙ୍କୁ ଚୟନ କରି ପଠାଇଥିଲେ ।

ଜାନୁଆରୀ ୬ ତାରିଖଠାରୁ ଆରମ୍ଭ ହୋଇଥିଲା ଯୁବ ଅଭ୍ୟାଗତଙ୍କ ଆଗମନ । ପ୍ରଥମେ ଆସିଲେ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜର ପ୍ରତିନିଧି ଗଣ । ଭୁବନେଶ୍ୱର ରେଳଷ୍ଟେସନର ଦୁଇ ପାର୍ଶ୍ୱ ପ୍ଲାଟଫର୍ମରେ ଅପେକ୍ଷା କରିଥିଲେ ସ୍ୱେଚ୍ଛାସେବକମାନେ । ସେମାନେ ପରିବହନ ବିଭାଗର । ହାତରେ ପ୍ଲା-କାର୍ଡ଼, ସେଥିରେ ଲେଖାଥାଏ ସ୍ୱାଗତ ଯୁବ ପ୍ରତିନିଧି, ଜାତୀୟ ଯୁବ ମହୋତ୍ସବ-୨୦୧୦ । ଦୁଇପଟର ପ୍ଲାଟଫର୍ମରେ ବିରାଟ ବ୍ୟାନର ଟଙ୍ଗା ଯାଇଥାଏ । ୨୪ ଘଣ୍ଟିଆ ଡ୍ୟୁଟି ସେମାନେ କରୁଥାନ୍ତି । ଷ୍ଟେସନ୍ ବାହାରେ ପରିବହନ ବିଭାଗ, କ୍ରୀଡ଼ା ଓ ଯୁବବ୍ୟାପାର ବିଭାଗର ଅଫିସର୍ ଓ ଅନ୍ୟାନ୍ୟ କର୍ମଚାରୀଗଣ

ଅପେକ୍ଷା କରିଥିଲେ ହାତରେ ପୁଷ୍ପଗୁଚ୍ଛ ଧରି ସ୍ୱାଗତ କରିବାପାଇଁ । ନିର୍ମିତ ତୋରଣ ବାଟରେ ସେଠାରେ ଥିବା ଟେଣ୍ଟରେ କିଛି ସମୟ ବିଶ୍ରାମ ନେଲାପରେ ଅପେକ୍ଷାରତ ବସ୍‌ରେ ପ୍ରତିନିଧିମାନଙ୍କୁ କିଟ୍ ପ୍ରତିଷ୍ଠାନକୁ ନିଆଯାଉଥିଲା । ୬ ତାରିଖରୁ ୧୧ ତାରିଖ ପର୍ଯ୍ୟନ୍ତ ଅବିଶ୍ରାନ୍ତ କର୍ତ୍ତବ୍ୟ କରି ଚାଲୁଥିଲେ ଅଧିକାରୀ ଓ କର୍ମଚାରୀଗଣ । ସେଠାରେ ବାଧ୍ୟବାଧକତା ନଥିଲା । ଦ୍ୱିଧା ନଥିଲା । ନିଜେ ନିଜେ କରି ଚାଲୁଥିଲେ ନିଜର ନିଜର କର୍ତ୍ତବ୍ୟ । ଛୋଟ, ବଡ଼ ବାଛବିଚାର ମଧ୍ୟ ନଥିଲା ।

କିଟ୍ ପରିସରରେ ଆୟୋଜିତ ହୋଇଥିଲା ଯୁବ ଅତିଥିଙ୍କ ରହଣୀ ଓ ରେଜିଷ୍ଟ୍ରେସନ୍ ବ୍ୟବସ୍ଥା । ପ୍ରାୟ ୫୦୦୦ ପ୍ରତିନିଧିଙ୍କୁ ଆପଣେଇ ନେଇଥିଲେ କିଟ୍ କର୍ତ୍ତୃପକ୍ଷ ଓ ଏହାଙ୍କ ୩୦୦ ସ୍ୱେଚ୍ଛାସେବୀ । ନାମ, ଠିକଣା ଇତ୍ୟାଦି ସବିଶେଷ ତଥ୍ୟ ପାଇଁ ରେଜିଷ୍ଟ୍ରେସନ୍, ଫୁଡ୍ କୁପନ କିଟ୍ ପ୍ରଦାନ କରିବା ପାଇଁ କାଉଣ୍ଟର ଖୋଲିବା ସହ, ପରିଚୟପତ୍ର ପ୍ରଦାନ ପାଇଁ ଅନ୍ତତଃ ୨୦ ଗୋଟି କାଉଣ୍ଟର ଖୋଲିଥିଲା । ୫ ମିନିଟ୍ ମଧ୍ୟରେ ଅଗ୍ରଣୀ ଇଲେକ୍‌ଟ୍ରୋନିକ୍ସ ସଂସ୍ଥା ସି.ଏମ୍.ଏସ୍. ଫଟୋ ଉଠାଇ ପ୍ରତିନିଧିମାନଙ୍କୁ ପରିଚୟପତ୍ର ଦେଉଥିଲେ । ନେହେରୁ ଯୁବ କେନ୍ଦ୍ର ସଂଗଠନ ଓ ଜାତୀୟ ସେବା ସଂସ୍ଥା ମଧ୍ୟ ସେମାନଙ୍କ ପ୍ରତିନିଧିଙ୍କ ପାଇଁ ଖୋଲିଥିଲେ ସ୍ୱତନ୍ତ୍ର କାଉଣ୍ଟର । ପ୍ରତିନିଧିମାନେ ୬ ତାରିଖରୁ ୧୩ ତାରିଖ ପର୍ଯ୍ୟନ୍ତ ରହିଥିଲେ କିଟ୍‌ର କିମ୍‌ସ ଛାତ୍ରବାସରେ । ରାଜ୍ୟ ସରକାର ଓ କିଟ୍‌ର ପ୍ରତିନିଧିମାନଙ୍କୁ ଅଭିଭୂତ କରିପକାଇଥିଲା । ଖାଇବା ପାଇଁ ବ୍ୟବସ୍ଥା ହୋଇଥିଲା କ୍ୟାପିଟାଲ ହାଇସ୍କୁଲ ଖେଳପଡ଼ିଆର ୬୦,୦୦୦ ବର୍ଗକ୍ଷେତ୍ର ପରିମିତ ସ୍ଥାନରେ । ଫରିଦାବାଦର ଏକ କ୍ୟାଟରରକୁ ଦାୟିତ୍ୱ ଦେଇଥିଲେ ସରକାର । ସୁବିସ୍ତୃତ ଟେଣ୍ଟ ଓ ଆଲୋକସଜ୍ଜା, ତଳେ କାର୍ପେଟ୍ ବିଛା ପରିସର ମଧ୍ୟରେ ପ୍ରତିଦିନ ସୁସ୍ୱାଦପୂର୍ଣ୍ଣ ଖାଦ୍ୟ, ଫଳରସ ସହ ଓଡ଼ିଆ ଖାଦ୍ୟ ପରସା ଯାଉଥିଲା । ଓଡ଼ିଶାର ଡାଲମା, ଶାଗମୁଗ, ମାଛ ବେସର ଦହି ବାଇଗଣ, ବାଇଗଣ ଭରା ଆରିସା, ପୋଡ଼ପିଠା କେତେ କ'ଣ ଦିଆଯାଇ ଆପ୍ୟାୟିତ କରାଯାଉଥିଲା । ଯିଏ ଯାହା ଚାହିଁଲା, ଖାଦ୍ୟପେୟକୁ ଉପଭୋଗ କରିପାରିଲା । ଯୁବବ୍ୟାପାର ମନ୍ତ୍ରୀ ଶ୍ରୀ ପ୍ରବୀଣଚନ୍ଦ୍ର ଭଞ୍ଜଦେଓ ନିଜେ ବକ୍ତବ୍ୟରେ କହିଥିଲେ, 'ମାତ୍ର ୧୦୦ ଦିନ ମଧ୍ୟରେ ଏ ସବୁ ଆୟୋଜନ କରାଯାଇଛି ।' ଗୋଟିଏ ଦିନ ମଧ୍ୟ ଜଗନ୍ନାଥ ଶ୍ରୀମହାପ୍ରଭୁଙ୍କ ମହାପ୍ରସାଦ ଦିଆଯାଇ ସେମାନଙ୍କୁ ସନ୍ତୁଷ୍ଟ କରାଯାଇଥିଲା ।

ଓଡ଼ିଆ ସଂସ୍କୃତି ସବୁବେଳେ ନିଆରା । ଜଗନ୍ନାଥ ସଂସ୍କୃତିରେ ଜାତି, ଧର୍ମ, ବର୍ଣ୍ଣ, ଅଞ୍ଚଳ ନିର୍ବିଶେଷରେ ସମସ୍ତେ ସମାନ । ସମସ୍ତଙ୍କୁ ଆପଣେଇ ନେବା, ଆଲିଙ୍ଗନ କରିବା, ବନ୍ଧୁତାର ହାତ ବଢ଼େଇବା ଓଡ଼ିଆମାନଙ୍କ ମହାନୁଭବତା । ଏହି ମହାନୁଭବତାରେ ବାନ୍ଧି ହୋଇଯାଇଥିଲେ ପ୍ରାୟ ୫୦୦୦ ପ୍ରତିନିଧି ।

ସମସ୍ତ ପ୍ରତୀକ୍ଷାର ଅନ୍ତ ଘଟାଇ ଜାନୁଆରୀ ୮ ତାରିଖରେ କଳିଙ୍ଗ ଷ୍ଟାଡ଼ିୟମ୍‌ରେ ବର୍ଣ୍ଣାଢ଼୍ୟ ପରିବେଶ ମଧ୍ୟରେ ଉଦ୍‌ଘାଟିତ ହେଲା– 'ପଞ୍ଚଦଶତମ ଜାତୀୟ ଯୁବ ମହୋତ୍ସବ–୨୦୧୦' । ପ୍ରବଳ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ କେନ୍ଦ୍ର ଯୁବବ୍ୟାପାର ଓ କ୍ରୀଡ଼ା ମନ୍ତ୍ରୀ ଡଃ. ଏମ୍.ଏସ୍. ଗିଲ୍ ଉଦ୍‌ଘାଟନ ଘୋଷଣା କଲେ । ଏହି ସମାରୋହରେ କେନ୍ଦ୍ର ଯୁବବ୍ୟାପାର ଓ କ୍ରୀଡ଼ା ରାଷ୍ଟ୍ରମନ୍ତ୍ରୀ ଶ୍ରୀ ପ୍ରତୀକ ପ୍ରକାଶବାପୁ ପାଟିଲ, ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ, ରାଜ୍ୟ କ୍ରୀଡ଼ା ଓ ଯୁବବ୍ୟାପାର ମନ୍ତ୍ରୀ ଶ୍ରୀ ପ୍ରବୀଣଚନ୍ଦ୍ର ଭଞ୍ଜଦେଓ, କେନ୍ଦ୍ର ସରକାରଙ୍କ ଯୁବବ୍ୟାପାର ସଚିବ ଶ୍ରୀ ଏ.କେ. ଉପାଧ୍ୟାୟ ଏବଂ ଯୁବ ଆମ୍ବାସାଡ଼ର ତଥା ବିଶିଷ୍ଟ ଚଳଚ୍ଚିତ୍ର ତାରକା ଶ୍ରୀ ସୁନୀଲ ସେଟ୍ଟୀ ଯୋଗ ଦେଇଥିଲେ । ପ୍ରାରମ୍ଭରେ ଭାରତୀୟ ବାୟୁସେନା ପକ୍ଷରୁ ହେଲିକେପ୍ଟରରୁ ପୁଷ୍ପବୃଷ୍ଟି ହେବା ପରେ ୮,୫୦୦ ଫୁଟ ଉଚ୍ଚତାରୁ ପାରାଚ୍ୟୁଟ୍‌ଦ୍ୱାରା ଷ୍ଟାଡ଼ିୟମ୍‌ରେ ପଦାର୍ପଣ କରିବାର ଦୃଶ୍ୟ ଆମ ପାଇଁ ଥିଲା ଚିତ୍ତାକର୍ଷକ । ବିଭିନ୍ନ କାର୍ଯ୍ୟକ୍ରମରେ ଉଚ୍ଛୁଳି ଉଠୁଥିଲା କଳିଙ୍ଗ ଷ୍ଟାଡ଼ିୟମ୍ । ପ୍ରାୟ ୫୦,୦୦୦ ଦର୍ଶକ ଉପଭୋଗ କରୁଥିଲେ ସେହି ଦୃଶ୍ୟଗୁଡ଼ିକ । ଭାରତୀୟ ସ୍ଥଳବାହିନୀର 'ଡେୟାର ଡେଭିଲ୍'ର ଦୃଶ୍ୟ ଅତ୍ୟନ୍ତ ଚିତ୍ତାକର୍ଷକ ଥିଲା । ପରେ ପରେ ସମସ୍ତ ରାଜ୍ୟର ପ୍ରତିନିଧି ପାରମ୍ପରିକ ବେଶରେ ସଜ୍ଜିତ ହୋଇ ପାରମ୍ପରିକ ନୃତ୍ୟ ପରିବେଷଣ ସହିତ ମାର୍ଚ୍ଚ ପାଷ୍ଟ କରି ଗଲାବେଳେ ବାସ୍ତବିକ୍ ଅନୁଭୂତ ହେଉଥିଲା 'ଭିନ୍ନତାରେ ଏକତା' ଓ ସାରା ଭାରତ ଯେପରି ଏକ ।

ଜାନୁଆରୀ ୧୨ ତାରିଖରେ ମଧ୍ୟ ଅନୁରୂପ ଭାବେ ଉଦ୍‌ଯାପନୀ ସମାରୋହ । ଭାରତୀୟ ବାୟୁସେନାର 'ସୂର୍ଯ୍ୟକିରଣ ପ୍ରଦର୍ଶନ' ଅଭୁଲା ସ୍ମୃତି ରଖି ଦେଇଯାଇଛି । ଆକାଶ ମାର୍ଗରେ ବାୟୁସେନାର ସୂର୍ଯ୍ୟକିରଣ ପ୍ରଦର୍ଶନଦ୍ୱାରା 'ତ୍ରିରଙ୍ଗା ପତାକା'ର ଭ୍ରମ ସୃଷ୍ଟି ହୋଇଥିଲା । ଉଦ୍‌ଘାଟନୀ ଓ ଉଦ୍‌ଯାପନୀ ସମାରୋହରେ ଓଡ଼ିଶାର ପାରମ୍ପରିକ ପାଇକ, ରଣପା, ଘୁମୁରା, ଛଉ, ଗୋଟିପୁଅ ନୃତ୍ୟ ସହ କୁମ୍ଭୀର ନୃତ୍ୟ ଯେଉଁଥିରେ 'ଗୌରୀ'

ଦେଉଥିଲା ପରିବେଶ ସୁରକ୍ଷାର ବାର୍ତ୍ତା । ତାହା ସହିତ ଲେଜର୍ ସୋ ମାଧ୍ୟମରେ ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି, ଉଜ୍ଜୟିନୀର ପ୍ରସିଦ୍ଧ ମାଲଖମ୍ବ ପ୍ରଦର୍ଶନ, ଓଡ଼ିଶାର ଗର୍ବ ଓ ଗୌରବ 'ପ୍ରିନ୍ସ ଡ୍ୟାନ୍ସ ଗ୍ରୁପ୍‌ର ସାରେ ଜହାଁ ସେ ଆଚ୍ଛା' ନୃତ୍ୟ ପ୍ରଦର୍ଶନ, ଜାତୀୟ ସଂଗୀତ ବାଦନ ଏବଂ ଭାରତୀୟ ନୌବାହିନୀର 'ବିଟିଂ ଦି ରିଟ୍ରିଟ୍' ଏବଂ ଓଡ଼ିଶୀ ଫ୍ୟୁଜନ୍ ଡ୍ୟାନ୍ସ ପ୍ରମୁଖ କାର୍ଯ୍ୟକ୍ରମ ସନ୍ତୋଷପୂର୍ଣ୍ଣ ମନୋରଂଜନ ଆଣି ଦେଇଥିଲା ।

ଏହାବ୍ୟତୀତ ୯, ୧୦ ଓ ୧୧ ତାରିଖ ସନ୍ଧ୍ୟାରେ କଳିଙ୍ଗ ଷ୍ଟାଡ଼ିୟମରେ ହଂସରାଜ ହଂସ, ବାବୁଲ ସୁପ୍ରିୟୋ ଏବଂ ଉଷା ଉତ୍ଥପ୍‌ଙ୍କଦ୍ୱାରା ସଂଗୀତ କାର୍ଯ୍ୟକ୍ରମ ଦର୍ଶକମାନଙ୍କୁ ମୁଗ୍ଧ କରିଥିଲା । ଭୁବନେଶ୍ୱର କୋଣ ଅନୁକୋଣରେ ଅନୁଭୂତ ହେଉଥିଲା ଉତ୍ସବ ଓ ଉତ୍ସାହର ପରିବେଶ । କେଉଁଠାରେ (୭ମ ବାଟାଲିଅନ୍ ଗ୍ରାଉଣ୍ଡ)ରେ ଯୁବ ସମାଜ ପାଇଁ ଦୁଃସାହସିକ କାର୍ଯ୍ୟକ୍ରମ ଓ ଆଉ କେଉଁଠାରେ ଲୋକନୃତ୍ୟର ପ୍ରତିଯୋଗିତା ଚାଲିଥିଲା । ପୁଣି କେଉଁଠାରେ ଆଲୋଚନାଚକ୍ର । ଆଉ କେଉଁଠି ହାସ୍ୟ ସମ୍ମିଳନୀ । ବିଶିଷ୍ଟ କବି ସୁରେନ୍ଦ୍ର ଶର୍ମା ଆମନ୍ତ୍ରିତ ଅତିଥି ହୋଇ ଆସିଥିଲେ । ଭୁବନେଶ୍ୱରର ୭ଟି ଅଡିଟୋରିୟମ୍‌ରେ ଅନୁଷ୍ଠିତ ହୋଇଥିଲା ବିଭିନ୍ନ ପ୍ରତିଯୋଗିତାମୂଳକ କାର୍ଯ୍ୟକ୍ରମ । ଯୁବପ୍ରତିଭାକୁ ଠିକ୍ ମାର୍ଗରେ ବିନିଯୋଗ କରିବାର ପ୍ରୟାସ ରଖି ଜିଲ୍ଲା ତଥା ରାଜ୍ୟସ୍ତରରେ ଅନୁଷ୍ଠିତ ହୁଏ ସମାରୋହ । ରାଜ୍ୟସ୍ତରୀୟ ପ୍ରତିନିଧି ଜାତୀୟ, ସ୍ତରରେ ପ୍ରତିଯୋଗିତା ମାଧ୍ୟମରେ ନିଜର ଉତ୍କର୍ଷ ପ୍ରତିପାଦନ କରନ୍ତି । ୧୮ଟି ବିଭାଗରେ ପ୍ରତିଯୋଗିତା ହୋଇଥିଲା । ଭୁବନେଶ୍ୱରର ବିଭିନ୍ନ ପ୍ରାନ୍ତରେ ଥିବା ୭ଟି ଅଡ଼ିଟୋରିୟମ୍‌ରେ, ଲୋକନୃତ୍ୟ, ଲୋକ ସଂଗୀତ, ଏକକ ଅଭିନୟ, ଶାସ୍ତ୍ରୀୟ ସ୍ୱର ଯଥା– ହିନ୍ଦୁସ୍ଥାନୀ, କର୍ଣ୍ଣାଟକୀ, ହାରମୋନିୟମ୍, ସୀତାର, ବଂଶୀ, ତାବଲା, ବୀଣା, ମୃଦଙ୍ଗ, ଗୀଟାର, ମଣିପୁରୀ, ଓଡ଼ିଶୀ, ଭାରତନାଟ୍ୟମ୍, କଥକ, କୁଚିପୁଡ଼ି ଏବଂ ବକ୍ତୃତାରେ ପ୍ରତିଯୋଗିତା ଅନୁଷ୍ଠିତ ହୋଇଥିଲା । ପ୍ରଦର୍ଶନୀ ପଡ଼ିଆଠାରେ ଖାଦ୍ୟ ପ୍ରଦର୍ଶନୀ, ହସ୍ତଶିଳ୍ପ ପ୍ରଦର୍ଶନୀ, ଉତ୍ତର-ପୂର୍ବାଞ୍ଚଳର ରକ୍ ବ୍ୟାଣ୍ଡ କନ୍‌ସର୍ଟ, ଏକାମ୍ର ହାଟଠାରେ ଶିଶୁ ଶିଳ୍ପୀ କ୍ୟାମ୍ପ, ଆକର୍ଷିତ କରିଥିଲା ଭୁବନେଶ୍ୱରବାସୀଙ୍କୁ । କିଟ୍‌ଠାରେ ୟୁଥ୍ କନ୍‌ଭେନ୍‌ସନ୍, କିଶୋର ବିକାଶ ଶୀର୍ଷକ ଶିବିର ଓ ଆଲୋଚନାଚକ୍ର ଏବଂ ସୁବିଚାର ଇତ୍ୟାଦି ତାତ୍ତ୍ୱିକ କର୍ମଶାଳା ଅନୁଷ୍ଠିତ ହୋଇଥିଲା । ବିଭିନ୍ନ ରାଜ୍ୟର ପ୍ରତିଷ୍ଠିତ ବ୍ୟକ୍ତିମାନେ ସେଥିରେ ଜଜ୍ ହୋଇଥିଲେ ।

ପୂର୍ବରୁ ୧୪ ଗୋଟି ଯୁବ ମହୋତ୍ସବରେ ଓଡ଼ିଶା ଯାହା କରିପାରିନଥିଲା ଏଥର ତାହା କରି ପ୍ରମାଣ କରିଛି । ଛାଡ଼ିଯାଇଛି ସଂସ୍କୃତିର ସ୍ୱର୍ଣ୍ଣ ସ୍ୱାକ୍ଷର । **ଲୋକନୃତ୍ୟ, ବଂଶୀ ଓ ହାରମୋନିୟମ୍ ବାଦନରେ ଦ୍ୱିତୀୟ, କଥକ ନୃତ୍ୟ ଓ ସୀତାର ବାଦନରେ ତୃତୀୟ ସ୍ଥାନ ଅଧିକାର କରିଛନ୍ତି ଓଡ଼ିଶାର ପ୍ରତିନିଧିମାନେ । ଏଥିସହ ପୁରୀସ୍ଥିତ 'ୟଙ୍ଗ୍ ଇଣ୍ଡିଆ ଯୁବ ସେବା ସଂଗଠନ'ର ସୁଶାନ୍ତ ସାହୁଙ୍କୁ ନିଃସ୍ୱାର୍ଥ ସମାଜସେବା ପାଇଁ ଏହି ମହୋତ୍ସବରେ ମିଳିଥିଲା ପୁରସ୍କାର ।** ଏ ଯୁବ ମହୋତ୍ସବ ପାଇଁ ଅବଶ୍ୟ କିଛିଟା ଅସୁବିଧା ଅନୁଭୂତ ହୋଇଥିଲା । ଏତେ ସଂଖ୍ୟାରେ ଭିଡ଼ ହେବ ବୋଲି ଆଶା କରାଯାଇ ନଥିଲା । ତେଣୁ କଳିଙ୍ଗ ଷ୍ଟାଡ଼ିଅମ ଓ ତତ୍‌ସଂଲଗ୍ନ ମୁଖ୍ୟ ରାସ୍ତାର ସଂକୀର୍ଣ୍ଣ ପଥରେ ପଥଚାରୀ ଓ ଯାନବାହନ ବ୍ୟବହାରକାରୀମାନେ ସହଜରେ ଉତ୍ସବସ୍ଥଳିକୁ ପ୍ରବେଶ କରି ପାରି ନଥିଲେ । ଏତେ ସଂଖ୍ୟାରେ ପୋଲିସ୍ କର୍ମଚାରୀ ବି ନଥିଲେ । ତେବେ ଗ୍ୟାଲେରୀରେ ବସି ଏହି ଉତ୍ସବ ଉପଭୋଗ କରିବାକୁ କୌଣସି କଟକଣା ଜାରି ହେବ ନାହିଁ ବୋଲି ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ପୂର୍ବରୁ ଘୋଷଣା କରିଥିବାରୁ ଲୋକେ ଆନନ୍ଦ ମନରେ ଏହି ଉତ୍ସବକୁ ଉପଭୋଗ କରିଥିଲେ ।

ଜାନୁଆରୀ ୧୨ ତାରିଖ ସନ୍ଧ୍ୟାରେ ଆକର୍ଷଣୀୟ ଆତସ୍‌ବାଜି ସହ ଉଦ୍‌ଯାପିତ ହୋଇଥିଲା ପଞ୍ଚଦଶତମ ଜାତୀୟ ଯୁବ ମହୋତ୍ସବ-୨୦୧୦ । ରାଜ୍ୟବାସୀ ଏବଂ ବିଶେଷକରି ଭୁବନେଶ୍ୱରବାସୀଙ୍କୁ ସେହି ମହୋତ୍ସବ ବେଶ ଆନନ୍ଦିତ କରିଥିଲା । ସମଗ୍ର ଭାରତବର୍ଷ ଏକତା ସୂତ୍ରରେ ବାନ୍ଧି ହୋଇ ଯେପରି 'ବସୁଧୈବ କୁଟୁମ୍ବକଂ'ର ନୀତିବାଣୀକୁ ସାର୍ଥକ କରିଥିଲା ଏହି ମହୋତ୍ସବ ।

ସହ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ
ଭୁବନେଶ୍ୱର

# ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି ୨୦୦୬

**ଓଡ଼ିଶା ସରକାର**

**ରାଜସ୍ୱ ବିଭାଗ**

**ସଂଖ୍ୟା ୧୮୦୪୦–ଆର୍ ଆଣ୍ଡ୍ ଆର୍. ଇ. ଏଚ୍.–୧/୨୦୦୬ ରା**

**ତାରିଖ ୧୪ ମଇ ୨୦୦୬**

**(ଓଡ଼ିଶା ରାଜପତ୍ର ଅସାଧାରଣ ସଂ ୬୫୧ ତାରିଖ ୧୫ ମେ, ୨୦୦୬ରେ ପ୍ରକାଶିତ)**

**ସଂକଳ୍ପ**

ଭାଗିଦାରୀ ଓ ସ୍ୱଚ୍ଛ ପ୍ରକ୍ରିୟା ଜରିଆରେ ବିକାଶକୁ ସୁନିଶ୍ଚିତ କରିବା ପାଇଁ ସରକାର ଏକ ବିସ୍ତୃତ ପୁନର୍ବାସ ଓ ଥଇଥାନ ନୀତି ପ୍ରସ୍ତୁତ କରିଛନ୍ତି । ଏହି ନୀତିର ମୌଳିକ ଉଦ୍ଦେଶ୍ୟଗୁଡ଼ିକ ହେଲା–

୧. ଯେଉଁ କ୍ଷେତ୍ରରେ ସମ୍ଭବ ବିସ୍ଥାପନକୁ ଏଡ଼ାଇଦେବା ନତୁବା ମିଳୁଥିବା ବିକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରାଇ ବିସ୍ଥାପନକୁ ନ୍ୟୂନତମ କରିବା ।

୨. ଦେଶୀୟ ଓ ଦୁର୍ବଳ ଗୋଷ୍ଠୀଙ୍କର ଆବଶ୍ୟକତାକୁ ଗୁରୁତ୍ୱ ଦେଇ ବିସ୍ଥାପିତ ଗୋଷ୍ଠୀଙ୍କ ମତାମତକୁ ସ୍ୱୀକୃତି ପ୍ରଦାନ କରିବା ।

୩. ଭାଗିଦାରୀ ଓ ସ୍ୱଚ୍ଛ ପ୍ରକ୍ରିୟା ଜରିଆରେ ଏକ ସହନୀୟ ପରିବେଶକୁ ସୁନିଶ୍ଚିତ କରିବା ଏବଂ

୪. ପୁନର୍ବାସ ଓ ଥଇଥାନ ସଂପର୍କିତ କାର୍ଯ୍ୟ ସମାପନା, ପର୍ଯ୍ୟାଲୋଚନା, ବିବାଦ ମୀମାଂସା ଓ ଅଭିଯୋଗର ପ୍ରତିକାର କରିବା ପାଇଁ ଆନୁଷ୍ଠାନିକ ପ୍ରକ୍ରିୟାର ବିକାଶରେ ମାର୍ଗଦର୍ଶନ କରିବା ।

ଉପରୋକ୍ତ ଉଦ୍ଦେଶ୍ୟଗୁଡ଼ିକ ଦୃଷ୍ଟିରେ ରଖି ସରକାର ନିମ୍ନଲିଖିତ ନୀତି ନିର୍ଦ୍ଧାରଣ କରିଛନ୍ତି ।

**ମୁଖବନ୍ଧ**

ଜନସାଧାରଣଙ୍କ ଜୀବନ ଧାରଣର ମାନରେ ଉନ୍ନତି ଆଣିବା ପାଇଁ ଓଡ଼ିଶା ସରକାର ନାନାବିଧ ବିକାଶମୂଳକ କାର୍ଯ୍ୟରେ ନିଜକୁ ନିୟୋଜିତ କରିଛନ୍ତି । ସାମାଜିକ ନ୍ୟାୟ ପ୍ରତିଷ୍ଠା ବିକାଶର ଆଧାରଶୀଳା । ସେଥିପାଇଁ ବିକାଶ ପ୍ରକ୍ରିୟାରେ ଜନସାଧାରଣଙ୍କ ଭାଗିଦାରୀକୁ ସୁନିଶ୍ଚିତ କରିବା ପାଇଁ ସରକାର ନିଜଆଡୁ ଉଦ୍ୟମ ଜାରି ରଖିଛନ୍ତି । ବିକାଶ ଧାରାକୁ ଜନସାଧାରଣଙ୍କ ନିକଟରେ ପହଞ୍ଚାଇବା ସରକାରଙ୍କର ଅଭିପ୍ରାୟ, କିନ୍ତୁ ବେଳେ ବେଳେ ବିକାଶ ଉଦ୍ୟମ ଅବାଞ୍ଛିତ ପରିଣତି ସୃଷ୍ଟି କରିଥାଏ । ବୃହତ ବିକାଶମୂଳକ ପ୍ରକଳ୍ପ ଯୋଗୁଁ ସୃଷ୍ଟି ହେଉଥିବା ବିସ୍ଥାପନ ଏପରି ଏକ ଘଟଣା ।

ନିର୍ଦ୍ଦିଷ୍ଟ ପ୍ରକଳ୍ପ ପାଇଁ ନିର୍ଦ୍ଦିଷ୍ଟ ପୁନର୍ବାସ ଓ ଥଇଥାନ ନୀତି ଓ ଯୋଜନା ମାଧ୍ୟମରେ ସରକାର ବିସ୍ଥାପନ ସମସ୍ୟାର ସମାଧାନ ନିମନ୍ତେ ଉଦ୍ୟମ କରିଆସୁଛନ୍ତି । ବାସ୍ତବିକ ବିଗତ ନୀତିଗୁଡ଼ିକର କାର୍ଯ୍ୟକାରିତାରୁ ମିଳିଥିବା ଅନୁଭୂତି ଆଧାରରେ ପୁନର୍ବାସ ଓ ଥଇଥାନ ନୀତିର ପରିକଳ୍ପନା କରାଯାଇଛି । ବିଗତ ନୀତିଗୁଡ଼ିକର କାର୍ଯ୍ୟକାରିତାରୁ ମିଳିଥିବା ଅନୁଭୂତି, ଅନ୍ୟ ରାଜ୍ୟରେ ଅନୁସୃତ ସର୍ବୋତ୍ତମ ପଦ୍ଧତି ଓ ଓଡ଼ିଶା ସରକାରଙ୍କ ୨୦୦୧ ମସିହାର ଶିଳ୍ପ ନୀତିକୁ ନେଇ ବର୍ତ୍ତମାନର ନୀତି ରଚ୍ଚିମନ୍ତ ।

ନୀତି ନିର୍ଦ୍ଧାରଣରେ ସରକାର ଏକ ଗଣତାନ୍ତ୍ରିକ ପ୍ରକ୍ରିୟାର ଅଂଶ ସ୍ୱରୂପ ବିସ୍ଥାପନ ସମସ୍ୟା ସହିତ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ଜଡ଼ିତ ବ୍ୟକ୍ତିବିଶେଷ ଓ ନାଗରିକ ପ୍ରତିନିଧିମାନଙ୍କ ସହ ପରାମର୍ଶ କରିଛନ୍ତି ଓ ପୁନର୍ବାସ ଓ ଥଇଥାନ କ୍ଷେତ୍ରରେ କାମ କରୁଥିବା ଶିକ୍ଷାବିତ୍ ଓ ବିଶେଷଜ୍ଞମାନଙ୍କ ମତାମତକୁ ବିଚାରକୁ ନେଇଛନ୍ତି । ବିଗତ ନୀତିମାନଙ୍କରେ ଥିବା ଅନ୍ତରାୟଗୁଡ଼ିକୁ ଚିହ୍ନଟ ଓ ବିଶ୍ଳେଷଣ କରାଯାଇଛି ଏବଂ ଏକ ନମନୀୟ ଢାଞ୍ଚା ପ୍ରସ୍ତୁତ କରିବା ପାଇଁ ପ୍ରୟାସ କରାଯାଇଛି । ଏହା ସରକାରଙ୍କର ପ୍ରଗତିଶୀଳ ମାନସିକତାର ପରିଚାୟକ ।

ନୀତିର ସଫଳ ରୂପାୟନ ପାଇଁ କାର୍ଯ୍ୟପ୍ରଣାଳୀଗୁଡ଼ିକ ପ୍ରତି ଯଥେଷ୍ଟ ଧ୍ୟାନ ଦିଆଯାଇଛି ଯାହାକି ଏହି ନୀତିଟିକୁ ରାଜ୍ୟର ସ୍ଥାୟୀ ବିକାଶ ନିମନ୍ତେ ଏକ ତେଜସ୍ୱୀ ଆୟୁଧ କରିପାରିଛି ।

**୧. ସଂକ୍ଷିପ୍ତ ଶିରୋନାମା, ପ୍ରୟୋଗ ଓ ଆରମ୍ଭ**

(୧) ଏହି ନୀତିକୁ ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି ୨୦୦୬ କୁହାଯିବ ଓ ଏହା ଓଡ଼ିଶା ଗେଜେଟ୍‌ରେ ପ୍ରକାଶ ପାଇବା ଦିନଠାରୁ ଲାଗୁ ହେବ ।

(୨) ଏହା ରାଜସ୍ୱ ଏବଂ ବିପର୍ଯ୍ୟୟ ପରିଚାଳନା ବିଭାଗ ସଂକଳ୍ପ ସଂଖ୍ୟା ୨୧୩୯୨ ତା.୪.୬.୨୦୦୭ରିଖଦ୍ୱାରା ଅନ୍ତଃସ୍ଥାପିତ (ନିର୍ମାଣ କାର୍ଯ୍ୟ ଚାଲିଥିବା ଜଳସେଚନ ପ୍ରକଳ୍ପ ସମେତ) – ଅନ୍ୟ ସମସ୍ତ ପ୍ରକଳ୍ପଗୁଡ଼ିକ ପାଇଁ ପ୍ରଯୋଜ୍ୟ, ଯେଉଁଥିପାଇଁ ଭୂଅର୍ଜନ ଆଇନ୍ ୧୮୯୪ ବା ଅନ୍ୟ କୌଣସି ଆଇନ୍ ବଳରେ ବେସରକାରୀ ଭୂମି ଅର୍ଜନ କରାଯାଉଥିବ କିମ୍ବା ସରକାରୀ ଜମି ହୋଇଥିଲେ ଆପତ୍ତି ଆହ୍ୱାନ କରାଯାଇଥିବା ଘୋଷଣା ଅଧିସୂଚୀତ ହୋଇଥିବ ।

ତଦ୍ୱାରା ଅନ୍ତଃସ୍ଥାପିତ (ପରନ୍ତୁ, ସଂପ୍ରତି ନିର୍ମାଣ କାର୍ଯ୍ୟ ଚାଲୁଥିବା ଜଳସେଚନ ପ୍ରକଳ୍ପଗୁଡ଼ିକ ପାଇଁ ଏହି ନୀତି ଅନୁସାରେ ଥାଇଥାନ ସହାୟତା ପ୍ରଦାନ କରାଯିବ ନାହିଁ, ଯଦି ଏହି ନୀତି ପ୍ରଚଳିତ ହେବା ପୂର୍ବରୁ ସେହି ଜଳସେଚନ ପ୍ରକଳ୍ପଦ୍ୱାରା ବିସ୍ଥାପିତ ଓ କ୍ଷତିଗ୍ରସ୍ତ ପରିବାରମାନଙ୍କୁ କୌଣସି ଥଇଥାନ ସହାୟତା ପ୍ରଦାନ କରାଯାଇସାରିଛି ।

**ଦ୍ରଷ୍ଟବ୍ୟ :** ଏହି ନୀତିର ପ୍ରାରମ୍ଭ ପୂର୍ବରୁ ସମ୍ପୂର୍ଣ୍ଣ ହୋଇଥିବା ପ୍ରକଳ୍ପଗୁଡ଼ିକ ଏହି ଅନୁଚ୍ଛେଦରେ ଅଭିବ୍ୟକ୍ତ 'ନିର୍ମାଣ କାର୍ଯ୍ୟ ଚାଲିଥିବା ପ୍ରକଳ୍ପ' ଅନ୍ତର୍ଭୁକ୍ତ ନୁହେଁ । ୨୦୦୬ ମେ ୧୫ ତାରିଖ ଏହି ନୀତିର ପ୍ରାରମ୍ଭ ବୋଲି ଧରାଯିବ ।

(୩) ଏହା ସେହିସବୁ ପ୍ରକଳ୍ପଗୁଡ଼ିକ ପାଇଁ ମଧ୍ୟ ପ୍ରଯୋଜ୍ୟ, ଯେଉଁଥିପାଇଁ ଏହି ନୀତିର ବିଭିନ୍ନ ବ୍ୟବସ୍ଥା ବଳରେ କଥାବାର୍ତ୍ତା ମାଧ୍ୟମରେ ଭୂମି ଅର୍ଜନ କରାଯାଉଥିବ ।

**୨. ସଂଜ୍ଞା – ଏହି ନୀତିର ପ୍ରସଙ୍ଗ ଦୃଷ୍ଟିରୁ ଅନ୍ୟଥା ଆବଶ୍ୟକ ହେଉନଥିଲେ**

(କ) 'ଚାଷଜମି' କହିଲେ ଯେଉଁ ଜମି, ଫସଲ ଉତ୍ପାଦନ, ଘାସଚାଷ ବା ଫୁଲଫଳ ଉତ୍ପାଦନ, ଉଦ୍ୟାନ କୃଷି, ଗୋପାଳନ, ମାଛଚାଷ, ପଶୁ ପ୍ରଜନନ ବା ପାଳନ ପାଇଁ କିମ୍ବା କୃଷିକୁ ସହାୟତା ପ୍ରଦାନ କରୁଥିବା ଅନ୍ୟ ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥିବ ବା ବ୍ୟବହାର କରାଯାଇପାରିବ ।

ରାଜସ୍ୱ ଏବଂ ବିପର୍ଯ୍ୟୟ ପରିଚାଳନା ବିଭାଗ ସଂକଳ୍ପ ସଂଖ୍ୟା ୨୧୩୯୨ ୦/ତା.୪.୬.୨୦୦୬ରିଖଦ୍ୱାରା ଅନ୍ତଃସ୍ଥାପିତ [(କ-୧) 'କ୍ଷତିଗ୍ରସ୍ତ ପରିବାର' କହିଲେ ସେହି ପରିବାରକୁ ବୁଝାଏ, ଯେଉଁମାନଙ୍କ ଜମି ପ୍ରକଳ୍ପ ନିର୍ମାଣ ଯୋଗୁଁ କ୍ଷତିଗ୍ରସ୍ତ ହୋଇଥାଏ, କିନ୍ତୁ ସେମାନେ ବିସ୍ଥାପିତ ହୋଇନଥାନ୍ତି କିମ୍ବା ବିସ୍ଥାପିତ ହେବାପାଇଁ ଆବଶ୍ୟକ ପଡ଼ିନଥାଏ ।]

(ଖ) 'କ୍ଷତିପୂରଣ'ର ଅର୍ଥ ସେଇଆ, ଯାହା ଭୂଅର୍ଜନ ଆଇନ୍ ୧୮୯୪ରେ ଦିଆଯାଇଛି ।

(ଗ) କ୍ଷତିପୂରଣ ଉଦ୍ଦେଶ୍ୟରେ 'ଶେଷ ତାରିଖ (cut-off date)' ସେହି ତାରିଖକୁ କୁହାଯିବ, ଯେଉଁ ତାରିଖରେ ପ୍ରାସଙ୍ଗିକ ଆଇନ କିମ୍ବା ଏହି ନୀତିର ବ୍ୟବସ୍ଥାନୁଯାୟୀ ଭୂଅର୍ଜନର ଉଦ୍ଦେଶ୍ୟ ଘୋଷଣା କରି ଅଧିସୂଚନା ପ୍ରକାଶିତ ହୋଇଥିବ ।

**ଦ୍ରଷ୍ଟବ୍ୟ :** ପୁନର୍ବାସ ଓ ଥଇଥାନ ସୁବିଧା ପାଇଁ ଯୋଗ୍ୟତା ନିର୍ଦ୍ଧାରଣ ନିମନ୍ତେ କାର୍ଯ୍ୟସୂଚୀ ଅନୁଯାୟୀ ଯେଉଁ ବର୍ଷ ବିସ୍ଥାପନ ସଂଘଟିତ ହେବାକୁ ଥିବ ସେହି ବର୍ଷର ଜାନୁଆରୀ ପହିଲା ତାରିଖରେ ବାସଚ୍ୟୁତ ହେବାକୁ ଥିବା ପରିବାରମାନଙ୍କର ତାଲିକା ନବୀକରଣ କରାଯିବ । ଶେଷ ତାରିଖ ପରେ ଯେଉଁ ପରିବାରମାନେ ପ୍ରକଳ୍ପ ଅଞ୍ଚଳକୁ ଯାଇ ବସବାସ ଆରମ୍ଭ କରିବେ, ସେମାନେ କୌଣସି ସୁବିଧା ପାଇବାକୁ ଯୋଗ୍ୟ ବିବେଚିତ ହେବେ ନାହିଁ ।

(ଘ) 'ବିସ୍ଥାପିତ ପରିବାର' କହିଲେ ସେହି ପରିବାରକୁ ବୁଝାଇବ, ଯେଉଁ ପରିବାର ପ୍ରାସଙ୍ଗିକ ଆଇନର ବ୍ୟବସ୍ଥାନୁଯାୟୀ ଅଧିସୂଚନା ପ୍ରକାଶନ ତାରିଖ ପୂର୍ବରୁ ପ୍ରକଳ୍ପ ଅଞ୍ଚଳରେ ସାଧାରଣତଃ ବାସ କରି ଆସୁଥିବେ ଏବଂ ଯାହାଙ୍କର ଘରଡିହ ଜମି ଅଧିଗୃହୀତ ହେବା କାରଣରୁ ସେହି ଅଞ୍ଚଳରୁ ବିସ୍ଥାପିତ ହେଉଥିବେ କିମ୍ବା ବିସ୍ଥାପିତ ହେବା ଆବଶ୍ୟକ ପଡୁଥିବ ।

(ଙ) 'ଜିଲ୍ଲା କ୍ଷତିପୂରଣ ପରାମର୍ଶଦାତା କମିଟି' କହିଲେ ଯେଉଁ କମିଟି ଏହି ନୀତିର ବ୍ୟବସ୍ଥାନୁସାରେ ସରକାରଙ୍କଦ୍ୱାରା ଗଠିତ ହୋଇଥିବ ।

(ଚ) 'ପରିବାର' କହିଲେ ଜଣେ ବ୍ୟକ୍ତି ଏବଂ ତାଙ୍କର ସ୍ୱାମୀ/ସ୍ତ୍ରୀ, ନାବାଳକ ପୁଅମାନେ, ଅବିବାହିତ ଝିଅମାନେ, ନାବାଳକ ଭାଇମାନେ କିମ୍ବା ଅବିବାହିତ ଭଉଣୀମାନେ, ବାପା, ମା, କିମ୍ବା ପରିବାରର ଅନ୍ୟ ସଦସ୍ୟ, ଯେଉଁମାନେ ତାଙ୍କ ସହ ରହୁଥିବେ ଏବଂ ଜୀବିକା ପାଇଁ ତାଙ୍କ ଉପରେ ନିର୍ଭର କରୁଥିବେ ।

**ଦ୍ରଷ୍ଟବ୍ୟ :** ଏହି ନୀତି ଅନୁସାରେ ଥଇଥାନ ସୁବିଧାମାନ ପାଇବା ପାଇଁ ନିମ୍ନୋକ୍ତ ଶ୍ରେଣୀଗୁଡ଼ିକରୁ ପ୍ରତ୍ୟେକ ଏକ ଅଲଗା ପରିବାର ବୋଲି ଗଣ୍ୟ ହେବେ ।

୧. ବିବାହିତ ହୋଇଥିବା କିମ୍ବା ନହୋଇଥିବା ଜଣେ ସାବାଳକ ପୁଅ ।

୨. ୩୦ ବର୍ଷରୁ ଊର୍ଦ୍ଧ୍ୱ ବୟସର ଅବିବାହିତ ଝିଅ / ଭଉଣୀ ।

୩. ଲିଙ୍ଗ ବା ବୟସ ନିର୍ବିଶେଷରେ ଜଣେ ଶାରୀରିକ ବା ମାନସିକ ଅକ୍ଷମ ବ୍ୟକ୍ତି, ଯାହାଙ୍କର ଅକ୍ଷମତା ସମ୍ବନ୍ଧରେ ଅଧିକୃତ ମେଡ଼ିକାଲ ବୋର୍ଡ଼ ପ୍ରମାଣ ପତ୍ର ଦେଇଥିବେ । ଏହି ଉଦ୍ଦେଶ୍ୟରେ ଅନ୍ଧ/ବଧିର/ଶାରୀରିକ ଅକ୍ଷମ/ମାନସିକ ଅକ୍ଷମ ବ୍ୟକ୍ତି ଯେଉଁମାନେ ଶତକଡ଼ା ୪୦ ଭାଗରୁ ଅଧିକ ସ୍ଥାୟୀ ଅକ୍ଷମତାରେ ପୀଡ଼ିତ ଥିବେ, ସେମାନଙ୍କୁ ଏକ ଅଲଗା ପରିବାର ବୋଲି ଗଣାଯିବ ।

୪. ନାବାଳକ ଅନାଥ, ଯିଏ କି ଉଭୟ ବାପା ଓ ମା'ଙ୍କୁ ହରାଇଛି ।

୫. ଜଣେ ବିଧବା ଓ ଛାଡ଼ପତ୍ର ପାଇଥିବା ମହିଳା ।

(ଛ) 'ସରକାର' କହିଲେ ଓଡ଼ିଶା ସରକାରଙ୍କ ରାଜସ୍ୱ ବିଭାଗକୁ ବୁଝାଇବ ।

(ଜ) 'ଭୂଅର୍ଜନ ଅଧିକାରୀ' କହିଲେ ଜଣେ ଅଧିକାରୀ ଯିଏ କି ପ୍ରକଳ୍ପ ନିମନ୍ତେ ଭୂଅର୍ଜନ ଆଇନ୍-୧୮୯୪ ଅଧୀନରେ ଭୂଅର୍ଜନ ଅଧିକାରୀଙ୍କ କର୍ତ୍ତବ୍ୟ ସଂପାଦନ ନିମନ୍ତେ ସରକାରଙ୍କ ଆଦେଶକ୍ରମେ ନିଯୁକ୍ତି ପାଇଥିବେ ଏବଂ ଜଣେ ସ୍ୱତନ୍ତ୍ର ଭୂଅର୍ଜନ ଅଧିକାରୀ ମଧ୍ୟ ଏହାର ଅନ୍ତର୍ଭୁକ୍ତ ହେବେ ।

(ଝ) 'ବେସରକାରୀ ସଂଗଠନ' କହିଲେ ଯେଉଁ ସଂଗଠନ, ସୋସାଇଟି ପଞ୍ଜିକରଣ ଆଇନ ୧୮୬୦ରେ ବିଧିବଦ୍ଧ ଭାବେ ପଞ୍ଜିକୃତ ହୋଇଥିବ ଏବଂ ସରକାରୀ ପରିସର ବାହାରେ ସର୍ବସାଧାରଣଙ୍କ ପାଇଁ କାର୍ଯ୍ୟରତ ଥିବ ।

(ଞ) 'ମୂଳ ପରିବାର' କହିଲେ ଯେଉଁ ପ୍ରାସଙ୍ଗିକ ଆଇନ (ଗୁଡ଼ିକ) ଅନୁସାରେ ଅଧିସୂଚନା ପ୍ରକାଶ ପାଇବା ସମୟରେ ଏକ ରୋଷେଇରେ ଗୋଟିଏ ପରିବାରରେ ଏକତ୍ର ବାସ କରୁଥିବେ ।

(ଟ) 'ଉପାନ୍ତ ଅଞ୍ଚଳ' କହିଲେ ଏକ ବା ଏକାଧିକ ଜିଲ୍ଲା, ଯେଉଁଥିରେ ପ୍ରକଳ୍ପଟି ଭୌଗୋଳିକ ରୂପେ ଅବସ୍ଥିତ ।

(ଠ) 'ପ୍ରକଳ୍ପ' କହିଲେ ଜଳଭଣ୍ଡାର, ନଦୀବନ୍ଧ, କେନାଲ, ରାଜରାସ୍ତା, ଶିଳ୍ପସଂସ୍ଥା, କାରଖାନା, ଖଣି, ଜାତୀୟ ପାର୍କ ଓ ଅଭୟାରଣ୍ୟ ପ୍ରଭୃତି କାର୍ଯ୍ୟର ନିର୍ମାଣ, ସଂପ୍ରସାରଣ କିମ୍ବା ଉନ୍ନତିକରଣ, ଯାହା ସମୟାନୁସାରେ ସରକାରଙ୍କଦ୍ୱାରା ଅଧିସୂଚୀତ ହୋଇଥାଏ ଏବଂ ରାଜ୍ୟ ମଧ୍ୟରେ ଥିବା ଏହାର କାର୍ଯ୍ୟାଳୟ ଓ ସଂସ୍ଥା ।

(ଡ଼) ପୁନର୍ବାସ ଓ ଥଇଥାନ ସୁବିଧା ପ୍ରଦାନ ଉଦ୍ଦେଶ୍ୟରେ 'ପ୍ରକଳ୍ପ ଅଞ୍ଚଳ' କହିଲେ ସେହିସବୁ ଜମି, ଯାହାକି ଏକ ପ୍ରକଳ୍ପ ସ୍ଥାପନା ପାଇଁ ଅର୍ଜିତ / ହସ୍ତାନ୍ତରିତ / କ୍ରୟ କରାଯାଇଥାଏ ।

(ଢ଼) 'ପୁନର୍ବାସ ଓ ଥଇଥାନ ପ୍ରକଳ୍ପ ନିର୍ଦ୍ଦେଶକ' କହିଲେ ଜଣେ ଅଧିକାରୀ ଯିଏ କି ପୁନର୍ବାସ ଓ ଥଇଥାନ ନୀତି ଅନୁସାରେ ପୁନର୍ବାସ ଓ ଥଇଥାନ କାର୍ଯ୍ୟ ସଂପାଦନ କରିବାକୁ ସରକାରଙ୍କ ଆଦେଶକ୍ରମେ ନିଯୁକ୍ତ ହୋଇଥିବେ ।

(ଣ) 'ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟି' କହିଲେ ସେହି କମିଟିକୁ ବୁଝାଯିବ, ଯିଏକି ଏହି ନୀତିର ବ୍ୟବସ୍ଥା ଅନୁସାରେ ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ସଂକ୍ରାନ୍ତୀୟ କାର୍ଯ୍ୟଗୁଡ଼ିକୁ ବୁଝିବା ପାଇଁ ସରକାରଙ୍କଦ୍ୱାରା ଗଠିତ ହୋଇଥିବ ।

(ତ) 'ରାଜ୍ୟସ୍ତରୀୟ କ୍ଷତିପୂରଣ ପରାମର୍ଶଦାତା କମିଟି' କହିଲେ ଏହି ନୀତିର ବ୍ୟବସ୍ଥା ଅନୁସାରେ ସରକାରଙ୍କଦ୍ୱାରା ଗଠିତ କମିଟି ।

(ଥ) 'ରାଜ୍ୟସ୍ତରୀୟ ପୁନର୍ବାସ ଓ ଥଇଥାନ ପରିଷଦ' କହିଲେ ସରକାରଙ୍କର ଏକ ଅଧିସୂଚନାରେ ଗଠିତ ପରିଷଦ ଯାହାର ମୁଖ୍ୟମନ୍ତ୍ରୀ ମୁଖ୍ୟ ।

**୩. ନୀତିର ଉଦ୍ଦେଶ୍ୟ –** ସାଧାରଣଭାବେ ସରକାରଙ୍କ ଏହି ନୀତିର ଉଦ୍ଦେଶ୍ୟଗୁଡ଼ିକ ହେବ –

(କ) ଯେଉଁ କ୍ଷେତ୍ରରେ ସମ୍ଭବ ବିସ୍ଥାପନକୁ ଏଡ଼ାଇ ଯିବା, ନତୁବା ମିଳୁଥିବା ବିକଳ୍ପଗୁଡ଼ିକୁ କାର୍ଯ୍ୟକାରୀ କରି ବିସ୍ଥାପନକୁ ନ୍ୟୂନତମ କରିବା ।

(ଖ) ପୁନର୍ବାସ ଓ ଥଇଥାନ ପ୍ରକ୍ରିୟାକୁ ସହଜ କରାଇବା :

(୧) ଦେଶୀୟ ଓ ଦୁର୍ବଳ ଗୋଷ୍ଠୀଙ୍କର ଆବଶ୍ୟକତାକୁ ଗୁରୁତ୍ୱ ଦେଇ ବିସ୍ଥାପିତ ଗୋଷ୍ଠୀଙ୍କ ମତାମତକୁ ସ୍ୱୀକୃତି ପ୍ରଦାନ କରିବା ଏବଂ

(୨) ଭାଗିଦାରୀ ଓ ସ୍ୱଚ୍ଛ ପ୍ରକ୍ରିୟା ମାଧ୍ୟମରେ ଏକ ସହନୀୟ ପରିବେଶକୁ ସୁନିଶ୍ଚିତ କରିବା ଏବଂ

(୩) ପୁନର୍ବାସ ଓ ଥଇଥାନ ସଂପର୍କିତ କାର୍ଯ୍ୟ ସମାପନା, ପର୍ଯ୍ୟାଲୋଚନା, ବିବାଦ ମୀମାଂସା ଓ ଅଭିଯୋଗର ପ୍ରତିକାର ପାଇଁ ଏକ ଆନୁଷ୍ଠାନିକ ପ୍ରକ୍ରିୟାର ବିକାଶ ନିମନ୍ତେ ମାର୍ଗଦର୍ଶନ କରିବା ।

**୪. ବିସ୍ଥାପିତ ପରିବାର ବର୍ଗଙ୍କର ସର୍ବେକ୍ଷଣ ଓ ଚିହ୍ନଟ**

(କ) ଉନ୍ନୟନ ପ୍ରକଳ୍ପ ପାଇଁ ଭୂମିଅର୍ଜନ ସକାଶେ ଅଧିସୂଚନା ପ୍ରକାଶିତ ହେବାର ସାଧାରଣତଃ ଦୁଇମାସ ମଧ୍ୟରେ ବିସ୍ଥାପିତ ପରିବାରମାନଙ୍କୁ ଚିହ୍ନଟ ଏବଂ ସେମାନଙ୍କର ସାଂପ୍ରତିକ ସାମାଜିକ-ଆର୍ଥିକ ଆଧାରରେଖା ନିରୂପଣ ପାଇଁ ଏକ ସାମାଜିକ – ଆର୍ଥିକ ସର୍ବେକ୍ଷଣ ସରକାରଙ୍କଦ୍ୱାରା ନିର୍ଦ୍ଧାରିତ ରୀତି ଅନୁଯାୟୀ ସଂପାଦିତ ହେବ ।

(ଖ) ବିସ୍ଥାପିତ ପରିବାରମାନଙ୍କ ତାଲିକା ସଂପୃକ୍ତ 'ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟି' ସମ୍ମୁଖରେ ଉପସ୍ଥାପିତ ହେବ ଏବଂ ତାଙ୍କଦ୍ୱାରା ଅନୁମୋଦିତ ହେବ ।

(ଗ) ବିସ୍ଥାପିତ ପରିବାରମାନଙ୍କ ଅନୁମୋଦିତ ତାଲିକାକୁ ବ୍ୟାପକ ପ୍ରସାରଣ ପାଇଁ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ / ବ୍ଲକ୍ / ତହସିଲ / ପଞ୍ଚାୟତ ଓ ଅନ୍ୟ ମୁଖ୍ୟ ସ୍ଥାନମାନଙ୍କରେ ପ୍ରଦର୍ଶନ କରାଯିବ ।

(ଘ) ପ୍ରାସଙ୍ଗିକ ଆଇନ ଅଧୀନରେ କିମ୍ବା ଏହି ନୀତିର ବ୍ୟବସ୍ଥାନୁସାରେ ଭୂଅର୍ଜନ ପାଇଁ ଅଧିସୂଚନା ଜାରି ହେବା ପୂର୍ବରୁ କେତେ ପରିମାଣର ଜମି ଆବଶ୍ୟକ ପଡ଼ିବ, ସେ ସମ୍ବନ୍ଧରେ ଆର୍.ଡି.ସି. (ରାଜସ୍ୱ ଡିଭିଜନାଲ କମିଶନର) ଏକ ବାସ୍ତବବାଦୀ ଆକଳନ କରିବେ ।

(ଙ) ଭବିଷ୍ୟତରେ ତୁଳନା ନିମନ୍ତେ ସାମ୍ପ୍ରତିକ ସ୍ଥିତିର ସଠିକ୍ ଚିହ୍ନଟ ପାଇଁ ସରକାରଙ୍କଦ୍ୱାରା ବଛାଯାଇଥିବା ଏକ ନିରପେକ୍ଷ ସଂସ୍ଥାଦ୍ୱାରା ସାମାଜିକ, ସାଂସ୍କୃତିକ, ସମ୍ବଳ ଆକଳନ ତଥା ଭିତ୍ତିଭୂମି ସଂକ୍ରାନ୍ତୀୟ ଏକ ସର୍ବେକ୍ଷଣ କରିବାକୁ ହେବ । ପ୍ରାସଙ୍ଗିକ ଆଇନ ଅନୁସାରେ ଅଥବା ଏହି ନୀତିର ବ୍ୟବସ୍ଥା ଅନୁଯାୟୀ ଭୂଅର୍ଜନ ପାଇଁ ଉଦ୍ଦିଷ୍ଟ ଅଧିସୂଚନା ଜାରି ହେବାର ଦୁଇମାସ ମଧ୍ୟରେ ଏହି ସର୍ବେକ୍ଷଣକୁ ସଂପୂର୍ଣ୍ଣ କରିବା ସଂପୃକ୍ତ ପ୍ରକଳ୍ପ କର୍ତ୍ତୃପକ୍ଷଙ୍କ ଦାୟିତ୍ୱ ।

(ଚ) ଜନସଚେତନତା ସୃଷ୍ଟି ପାଇଁ ଏକ ବିସ୍ତୃତ ସଂସୂଚନା (communication) ଯୋଜନା ପ୍ରସ୍ତୁତ କରାଯାଇ କ୍ଷତିଗ୍ରସ୍ତ ଅଞ୍ଚଳରେ କାର୍ଯ୍ୟକାରୀ କରାଯିବ । ନାଗରିକମାନଙ୍କୁ ସାମିଲ କରି ଯୋଜନା ପ୍ରସ୍ତୁତ କରି କାର୍ଯ୍ୟକାରୀ କରିବାର ବିଷଦ ପ୍ରଣାଳୀ ସରକାରଙ୍କଦ୍ୱାରା ଅଧିସୂଚିତ ହେବ । ଏହି ସଂସୂଚନା ଯୋଜନାକୁ କାର୍ଯ୍ୟକାରୀ କରିବା ପାଇଁ ଆବଶ୍ୟକୀୟ ଅର୍ଥ ସଂପୃକ୍ତ ପ୍ରକଳ୍ପ ବା ପ୍ରକଳ୍ପ ସମୂହ ବହନ କରିବେ ।

(ଛ) ଅନୁସୂଚିତ ଅଞ୍ଚଳ (Scheduled Area)ରେ ଭୂଅର୍ଜନ ପୂର୍ବରୁ ଗ୍ରାମସଭା କିମ୍ବା ପଞ୍ଚାୟତ ଅନୁଷ୍ଠାନର ସମୁଚିତ ସ୍ତର ସହ ପରାମର୍ଶ କରାଯିବ ।

(ଜ) ବିଭିନ୍ନ ସଂସ୍ଥା ତରଫରୁ କାର୍ଯ୍ୟକାରୀ ହେଉଥିବା ସାଧାରଣ ଉନ୍ନୟନ କାର୍ଯ୍ୟକ୍ରମଗୁଡ଼ିକୁ ପୁନର୍ବାସ ଅଞ୍ଚଳରେ କାର୍ଯ୍ୟକାରୀ ହେବାକୁ ଥିବା ପୁନର୍ବାସ ଓ ଥଇଥାନ ସୁବିଧାସମୂହ ସହ ସମନ୍ୱିତ କରାଯିବ ଏବଂ ସେଗୁଡ଼ିକୁ ବିସ୍ଥାପିତ ପରିବାରମାନଙ୍କୁ ଅଗ୍ରାଧିକାର ଭିତ୍ତିରେ ଯୋଗାଇ ଦିଆଯିବ ।

(ଝ) ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ସରକାରଙ୍କଦ୍ୱାରା ନିର୍ଦ୍ଧାରିତ ପ୍ରକାରେ ପରିଚୟପତ୍ର ଯୋଗାଇ ଦିଆଯିବ ।

**୫. ପ୍ରକଳ୍ପଗୁଡ଼ିକର ଶ୍ରେଣୀ ବିଭାଗ**

ପୁନର୍ବାସ ଓ ଥଇଥାନର ସୁବିଧା ଉଦ୍ଦେଶ୍ୟରେ ଏହି ନୀତିରେ ବିକାଶମୂଳକ ପ୍ରକଳ୍ପଗୁଡ଼ିକର ଶ୍ରେଣୀବିଭାଗ ନିମ୍ନମତେ କରାଯାଇଛି ।

(କ) ଶିଳ୍ପଭିତ୍ତିକ ପ୍ରକଳ୍ପ

(ଖ) ଖଣିଭିତ୍ତିକ ପ୍ରକଳ୍ପ

(ଗ) ଜଳସେଚନ ପ୍ରକଳ୍ପ, ଜାତୀୟ ଉଦ୍ୟାନ ଓ ଅଭୟାରଣ୍ୟ

(ଘ) ସହରାଞ୍ଚଳ ପ୍ରକଳ୍ପ ଏବଂ ରୈଖିକ ପ୍ରକଳ୍ପ ଯଥା ରାସ୍ତା, ରେଳପଥ, ବିଦ୍ୟୁତ୍ ଲାଇନ୍ ଏବଂ

(ଙ) ଅନ୍ୟ ଯେକୌଣସି ପ୍ରକଳ୍ପ

**୬. ଭୂଅର୍ଜନ ଓ କ୍ଷତିପୂରଣ / ଅଧିନିର୍ଣ୍ଣୟ (Award) ପ୍ରଦାନ**

ଭୂମି ଏବଂ ଅନ୍ୟାନ୍ୟ ସମ୍ପତ୍ତିର ଅର୍ଜନ ଏବଂ କ୍ଷତିପୂରଣ / ଅଧିନିର୍ଣ୍ଣୟ ପ୍ରଦାନରେ ସରକାରଙ୍କଦ୍ୱାରା ନିର୍ଦ୍ଧାରିତ ପଦ୍ଧତି ଅନୁସୃତ ହେବ ।

ବିସ୍ଥାପିତ ପରିବାରଙ୍କୁ ସମସ୍ତ କ୍ଷତିପୂରଣ ପ୍ରାପ୍ୟ ସେମାନଙ୍କ ନାଁରେ ବ୍ୟାଙ୍କରେ ଥିବା ଆକାଉଣ୍ଟ ଜରିଆରେ ପ୍ରଦାନ କରାଯିବ । ସ୍କୁଲଗୃହ, କ୍ଲବ୍ ଘର, ଡାକ୍ତରଖାନା, ପଞ୍ଚାୟତଘର, ବିଦ୍ୟୁତ୍ କେନ୍ଦ୍ର ଓ ଉପାସନା ସ୍ଥଳ ଭଳି ସର୍ବସାଧାରଣ ସମ୍ପତ୍ତି କ୍ଷେତ୍ରରେ ଆକଳିତ ମୂଲ୍ୟ ସଂପୃକ୍ତ ଜିଲ୍ଲାପାଳଙ୍କ ପାଖରେ ଜମା ରଖାଯିବ । ବିସ୍ଥାପିତ ଲୋକମାନଙ୍କ ପ୍ରତିନିଧିମାନଙ୍କ ସହ ପରାମର୍ଶ କରି ସ୍ଥିର ହୋଇଥିବା ସ୍ଥାନରେ ପ୍ରକଳ୍ପ କର୍ତ୍ତୃପକ୍ଷ ଅଥବା ଜିଲ୍ଲା ପ୍ରଶାସନ ଏସବୁର ନିର୍ମାଣ କାର୍ଯ୍ୟ ହାତକୁ ନେବେ ।

ପ୍ରାସଙ୍ଗିକ ଆଇନ ଅଧୀନରେ ଭୂଅର୍ଜନର ଆବଶ୍ୟକତା ସଂପର୍କିତ ଅଧିସୂଚନା ଜାରି ହେବା ପରେ ପ୍ରକଳ୍ପ ପ୍ରସ୍ତାବକ ନିଜେ କଥାବାର୍ତ୍ତା ଜରିଆରେ ସ୍ଥିରୀକୃତ ଦାମ୍‌ରେ ସିଧାସଳଖ ଜମି କିଣିବା ପାଇଁ ଚାହିଁପାରନ୍ତି । ଯଦି ଏହି ପ୍ରତ୍ୟକ୍ଷ କ୍ରୟ ମାଧ୍ୟମରେ ଭୂମି ଅର୍ଜନ ପ୍ରଚେଷ୍ଟା ଅସଫଳ ହୁଏ, ତେବେ ପ୍ରାସଙ୍ଗିକ ଆଇନର ଅନ୍ୟାନ୍ୟ ବ୍ୟବସ୍ଥାଗୁଡ଼ିକୁ ପ୍ରୟୋଗ କରାଯାଇପାରେ ।

ଭୂଅର୍ଜନର ଉଦ୍ଦେଶ୍ୟ ସାଧନରେ ଓ ନିର୍ଦ୍ଧାରିତ ସମୟସୀମା ମଧ୍ୟରେ ଯେଉଁ ଜମି ପ୍ରକଳ୍ପଦ୍ୱାରା ବ୍ୟବହୃତ ହୋଇନଥିବ, ତାହା ପୁନଃଗ୍ରହଣ (**Resume**) କରାଯିବ ।

### ୭. ପୁନର୍ବାସ ଓ ଥଇଥାନ ଯୋଜନା

ସରକାରଙ୍କଦ୍ୱାରା ଅନୁମୋଦିତ ତାଲିକା ଭିତ୍ତିରେ ବିସ୍ଥାପିତ ପରିବାରଙ୍କ ପସନ୍ଦ ମୁତାବକ ପୁନର୍ବାସ ଓ ଥଇଥାନ ଯୋଜନା ବିସ୍ଥାପିତ ଗୋଷ୍ଠୀଙ୍କ ସହ ଯଥାବିଧି ପରାମର୍ଶ କରିବାପରେ ଜିଲ୍ଲାପାଳଙ୍କଦ୍ୱାରା ସରକାରଙ୍କ ନିର୍ଦ୍ଧାରିତ ରୀତିରେ ପ୍ରସ୍ତୁତ ହେବ । ଏହି ଯୋଜନା ମହିଳା, ଦୁର୍ବଳ ଶ୍ରେଣୀ ଓ ଦେଶୀୟ ଗୋଷ୍ଠୀଙ୍କର ସ୍ୱତନ୍ତ୍ର ଆବଶ୍ୟକତାକୁ ପୂରଣ କରିପାରୁଥିବା ଉଚିତ୍ । ଏହି ଯୋଜନା ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟିଙ୍କ ଅନୁମୋଦନ ପାଇଁ ଉପସ୍ଥାପିତ ହେବ ।

ଯୋଜନା ପ୍ରସ୍ତୁତ ହେବା ସମୟରେ, ନିମ୍ନଲିଖିତ ବିଷୟଗୁଡ଼ିକୁ ବିଚାରକୁ ନିଆଯିବ ।

୧. ବିସ୍ଥାପିତ ପରିବାରଙ୍କ ସହ ପରାମର୍ଶ କରି ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟି ପୁନର୍ବାସ ଉଦ୍ଦେଶ୍ୟରେ ସ୍ଥାନ ବାଛିବେ ।

୨. ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟିଦ୍ୱାରା ଅନୁମୋଦିତ ହୋଇଥିବା ପୁନର୍ବାସ କାର୍ଯ୍ୟ ସଂପୂର୍ଣ୍ଣ ନ ହେବା ପର୍ଯ୍ୟନ୍ତ ବିସ୍ଥାପନ କରାଯିବ ନାହିଁ । ପୁନର୍ବାସ କାର୍ଯ୍ୟ ସଂପୂର୍ଣ୍ଣ ହେବାର ପ୍ରମାଣପତ୍ର ଜିଲ୍ଲାପାଳ ପ୍ରଦାନ କରିବେ ।

୩. ଗ୍ରାମସଭା ସହ ପରାମର୍ଶ କରାଯିବ ।

୪. ଯେଉଁ ପରିବାର ଏକାଧିକବାର ବିସ୍ଥାପିତ ହେଉଥିବେ, ତାଙ୍କୁ ସ୍ୱାଭାବିକ ଭାବେ ପ୍ରାପ୍ୟ କ୍ଷତିପୂରଣ ବ୍ୟତୀତ ଉକ୍ତ ରାଶିର ୫୦ ପ୍ରତିଶତ ଅତିରିକ୍ତ କ୍ଷତିପୂରଣ ପ୍ରଦାନ କରାଯିବ । ଏହି ଅତିରିକ୍ତ କ୍ଷତିପୂରଣ ରାଶି ସାନୁଗ୍ରହ (Ex-Gratia) ସହାୟତା ଆକାରରେ ଦିଆଯିବ ।

୫. ଜମି ପ୍ରକୃତରେ ଛାଡ଼ିବା ତାରିଖରୁ ହିଁ ଥଇଥାନ ସଂପର୍କିତ ବ୍ୟବସ୍ଥାଗୁଡ଼ିକ କାର୍ଯ୍ୟକାରୀ ହେବ ।

୬. ପ୍ରକଳ୍ପ କର୍ତ୍ତୃପକ୍ଷ ଏହି ନୀତିରେ ନିର୍ଦ୍ଧାରିତ ବ୍ୟବସ୍ଥା ଏବଂ ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟିଦ୍ୱାରା ସରକାରଙ୍କ ଅନୁମୋଦିତ ନୀତିର ପରିସର ମଧ୍ୟରେ ନିଆଯାଇଥିବା ନିଷ୍ପତ୍ତିଗୁଡ଼ିକୁ ପାଳନ କରିବା ।

୭. ହିତାଧିକାରୀମାନଙ୍କ ପାଖରେ ପୁନର୍ବାସ ଓ ଥଇଥାନ ନୀତିର ସୁବିଧାଗୁଡ଼ିକ ନିର୍ଦ୍ଧାରିତ ସମୟ ମଧ୍ୟରେ ପହଞ୍ଚାଇବାକୁ ସୁନିଶ୍ଚିତ କରିବା ପାଇଁ ଉଭୟ ଜିଲ୍ଲା ପ୍ରଶାସନ ଓ ପ୍ରକଳ୍ପ କର୍ତ୍ତୃପକ୍ଷ ଉତ୍ତରଦାୟୀ ରହିବେ ।

୮. ପୁନର୍ବାସ ସ୍ଥାନରେ ବିସ୍ଥାପିତ ବ୍ୟକ୍ତିମାନଙ୍କୁ ଥଇଥାନ କରିବା ସମୟରେ ହିଁ ଜିଲ୍ଲା ପ୍ରଶାସନ ସେମାନଙ୍କୁ ଆବଣ୍ଟନ କରାଯାଇଥିବା ବାସଗୃହ ଓ ଜମିର ସ୍ୱତ୍ତ୍ୱ ଲିପି ପ୍ରଦାନ କରିବେ । ଯଦି ନୂତନ ପୁନର୍ବାସ ବସତିଟି ଏକ ରାଜସ୍ୱ ଗ୍ରାମର ଅଂଶଭୁକ୍ତ ହୋଇନଥିବ, ତେବେ ଏହାକୁ ଏକ ରାଜସ୍ୱ ଗ୍ରାମରୂପେ ତୁରନ୍ତ ଘୋଷଣା କରିବା ପାଇଁ ଜିଲ୍ଲା ପ୍ରଶାସନ ପଦକ୍ଷେପ ନେବେ ।

୯. ପୁନର୍ବାସ ଅଞ୍ଚଳରେ ପୂର୍ବରୁ ରହୁଥିବା ଲୋକେ ଏବଂ ପୁନର୍ବାସ ହେଉଥିବା ଲୋକମାନଙ୍କ ମଧ୍ୟରେ ସୌହାର୍ଦ୍ଦ୍ୟପୂର୍ଣ୍ଣ ସାମାଜିକ ସଂପର୍କ ଗଢ଼ି ତୋଳିବା ସହିତ ନୂତନ ବସତିର ପରିବେଶ ଯେପରି ପୁନର୍ବାସ ହେଉଥିବା ଲୋକମାନଙ୍କ ପାଇଁ ଅନୁକୂଳ ହୁଏ, ସେଥିଲାଗି ପ୍ରକଳ୍ପ କର୍ତ୍ତୃପକ୍ଷମାନେ ପଦକ୍ଷେପ ନେବେ ଏବଂ ବିସ୍ଥାପିତ ପରିବାରମାନଙ୍କ ଜୀବନର ସାମଗ୍ରିକ ମାନଦଣ୍ଡରେ ଯେପରି ଯଥାସମ୍ଭବ ଉନ୍ନତି ଘଟେ, ସେଥିଲାଗି ମଧ୍ୟ ପ୍ରକଳ୍ପ କର୍ତ୍ତୃପକ୍ଷମାନେ ପଦକ୍ଷେପ ନେବେ ।

୧୦. କର୍ମନିଯୁକ୍ତି ପ୍ରଦାନ ବିଷୟରେ ବିଶଦ ବୟାନ ଏହି ନୀତିରେ ଅନ୍ୟତ୍ର ଦିଆଯାଇଛି । ତଦନୁସାରେ ପ୍ରକଳ୍ପ କର୍ତ୍ତୃପକ୍ଷ ସରକାରଙ୍କଦ୍ୱାରା ସମୟାନ୍ତରରେ ଦିଆଯାଉଥିବା ନିର୍ଦ୍ଦେଶ ଅନୁଯାୟୀ ପ୍ରତ୍ୟକ୍ଷ ବା ପରୋକ୍ଷ ନିଯୁକ୍ତି ଏବଂ ପ୍ରକଳ୍ପର ନିର୍ମାଣ କାର୍ଯ୍ୟ, ପରିଚାଳନା ଓ ରକ୍ଷଣାବେକ୍ଷଣ ନିମନ୍ତେ ନିଯୁକ୍ତ ଠିକାଦାରମାନଙ୍କ ମାଧ୍ୟମରେ ନିଯୁକ୍ତି ଦେବାରେ ସ୍ଥାନୀୟ ବ୍ୟକ୍ତିମାନଙ୍କୁ ଅଗ୍ରାଧିକାର ଦେବେ ।

### ୮. ଥଇଥାନ ସହାୟତା

ଅନୁଚ୍ଛେଦ ୫ରେ ବର୍ଣ୍ଣିତ ହୋଇଥିବା ପ୍ରକଳ୍ପର ପ୍ରକାର ଭେଦ ଅନୁଯାୟୀ ଥଇଥାନ ସହାୟତା ପ୍ରଦାନ କରାଯିବ, କାରଣ ପ୍ରକଳ୍ପର ପ୍ରକାର, ପ୍ରକଳ୍ପ ନିମନ୍ତେ ମିଳୁଥିବା ଅର୍ଥର ଉତ୍ସ ଓ ପ୍ରକଳ୍ପଦ୍ୱାରା ସୃଷ୍ଟି ହେଉଥିବା ବିସ୍ଥାପନର ଆକାର ଓ ପ୍ରଭାବ ଭିନ୍ନ ଭିନ୍ନ ହୋଇଥାଏ ।

## ୧. 'କ' ଶ୍ରେଣୀ : ଶିଳ୍ପଭିତ୍ତିକ ପ୍ରକଳ୍ପ

### (କ) ନିଯୁକ୍ତି

ପ୍ରକଳ୍ପଦ୍ୱାରା ବିସ୍ଥାପିତ ବା ଚାଷଜମି ହରାଉଥିବା ପରିବାରମାନେ ସେହି ପ୍ରକଳ୍ପଦ୍ୱାରା ନିଯୁକ୍ତି ପାଇବା ପାଇଁ ଯୋଗ୍ୟ ବିବେଚିତ ହେବେ । ନିଯୁକ୍ତି ପାଇବା ପାଇଁ ପ୍ରତି ମୂଳ ପରିବାର ନିଜ ଭିତରୁ କୌଣସି ଜଣେ ସଦସ୍ୟଙ୍କୁ ମନୋନୀତ କରିବେ । ନିଯୁକ୍ତି ଯୋଗାଇବା ସମୟରେ ଅନୁଚ୍ଛେଦ ୨ (ଚ) ଅନ୍ତର୍ଗତ ଖଣ୍ଡ ୧, ୨, ୩, ୪ କିମ୍ବା ୫ରେ ବର୍ଣ୍ଣିତ ହୋଇଥିବା ପରିବାରମାନଙ୍କୁ ପୃଥକ ଭାବେ ବିଚାରକୁ ନିଆଯିବ ନାହିଁ । ଉପରବର୍ଣ୍ଣିତ ଶ୍ରେଣୀବିଭାଗରୁ ଯୋଗ୍ୟ ବିବେଚିତ ଜଣଙ୍କୁ ଅନୁଚ୍ଛେଦ (୨) (ଚ)ରେ ବର୍ଣ୍ଣିତ ପରିବାର ତରଫରୁ ନିଯୁକ୍ତି ନିମନ୍ତେ ମନୋନୀତ କରାଯାଇପାରେ । ନିଯୁକ୍ତି କ୍ଷେତ୍ରରେ ପ୍ରକଳ୍ପ ପ୍ରସ୍ତାବକ ବିସ୍ଥାପିତ / ଅନ୍ୟ ପରିବାରମାନଙ୍କଦ୍ୱାରା ମନୋନୀତ ହୋଇଥିବା ସଦସ୍ୟମାନଙ୍କୁ ଅଗ୍ରାଧିକାର ଦେବେ । ନିମ୍ନଲିଖିତ କ୍ରମରେ ଅଗ୍ରାଧିକାର ଦିଆଯିବ ।

(୧) ବିସ୍ଥାପିତ ପରିବାର, ଯିଏ କି ଘରଡିହ ସମେତ ସମସ୍ତ ଜମି ହରାଉଥିବେ ।

(୨) ବିସ୍ଥାପିତ ପରିବାର, ଯିଏ କି ଦୁଇ ତୃତୀୟାଂଶରୁ ଅଧିକ ଚାଷଜମି ଓ ଘରଡିହ ହରାଉଥିବେ ।

(୩) ବିସ୍ଥାପିତ ପରିବାର, ଯିଏ କି ଏକ ତୃତୀୟାଂଶରୁ ଅଧିକ ଚାଷଜମି ଓ ଘରଡିହ ହରାଉଥିବେ ।

(୪) ବିସ୍ଥାପିତ ପରିବାର, ଯିଏ କି କେବଳ ଘରଡିହ ହରାଉଥିବେ, କିନ୍ତୁ ଚାଷଜମି ହରାଉନଥିବେ ।

(୫) ପରିବାର, ଯିଏ କି ସମସ୍ତ ଚାଷଜମି ହରାଉଥିବେ, କିନ୍ତୁ ଘରଡିହ ହରାଉନଥିବେ ।

ବିସ୍ଥାପିତ ପରିବାରଙ୍କଦ୍ୱାରା ମନୋନୀତ ସଦସ୍ୟଙ୍କୁ ପ୍ରକଳ୍ପରେ ନିଯୁକ୍ତି ଯୋଗ୍ୟ କରିବା ପାଇଁ ପ୍ରକଳ୍ପ କର୍ତ୍ତୃପକ୍ଷ ତାଙ୍କର ଦକ୍ଷତା ବୃଦ୍ଧିରେ ସହାୟକ ହେବାଭଳି ସ୍ୱତନ୍ତ୍ର ପଦକ୍ଷେପମାନ ଗ୍ରହଣ କରିବେ ।

(୧) ଯଦି ବିସ୍ଥାପିତ ପରିବାରଙ୍କଦ୍ୱାରା ମନୋନୀତ ସଦସ୍ୟ ଜଣଙ୍କ ବୟସ ଛଡ଼ା ଅନ୍ୟ ସବୁ ଦୃଷ୍ଟିରୁ ନିଯୁକ୍ତି ପାଇବାକୁ ଯୋଗ୍ୟ ବୋଲି ବିବେଚିତ ହୁଅନ୍ତି, ତେବେ ସର୍ବୋଚ୍ଚ ବୟସ ସୀମାକୁ ୫ ବର୍ଷ କୋହଳ କରାଯିବ ।

(୨) ପ୍ରକଳ୍ପ କର୍ତ୍ତୃପକ୍ଷ ଯଥେଷ୍ଟ ପୂର୍ବରୁ ସେମାନଙ୍କ ନିକଟରେ ଥିବା ନିଯୁକ୍ତି ପ୍ରଦାନ କ୍ଷମତା ଅଧିସୂଚିତ କରିବେ ।

(୩) ଯେତେଦୂର ସାଧ୍ୟ, ଉପର ବର୍ଣ୍ଣିତ ପ୍ରତ୍ୟେକ ବିସ୍ଥାପିତ ଅନ୍ୟାନ୍ୟ ପରିବାରରୁ ଜଣଙ୍କୁ ପ୍ରକଳ୍ପରେ ନିଯୁକ୍ତି ଦେବାର ଲକ୍ଷ୍ୟ ରହିବ । ଯେଉଁ ସ୍ଥଳରେ ଜଣଙ୍କୁ ନିଯୁକ୍ତି ପ୍ରଦାନ କରାଯାଇପାରିବ ନାହିଁ ବୋଲି ଲିଖିତ କାରଣ ଦର୍ଶାଯିବ, ସେହିସ୍ଥଳେ ବିସ୍ଥାପିତ ପରିବାରଙ୍କୁ ନିମ୍ନମତେ ଆର୍ଥିକ କ୍ଷତିପୂରଣ ପ୍ରଦାନ କରାଯିବ ।

ଯେଉଁ ବିସ୍ଥାପିତ ପରିବାରମାନେ ଉପାନୁଚ୍ଛେଦ (କ) ଓ (ଖ)ରେ ସୂଚିତ ହୋଇଥିବା ନିଯୁକ୍ତି ବା ଆତ୍ମନିଯୁକ୍ତି ପାଇଁ ଇଚ୍ଛୁକ ହେବେନି, ସେମାନଙ୍କୁ ପ୍ରକଳ୍ପ କର୍ତ୍ତୃପକ୍ଷ ନିଯୁକ୍ତି ପ୍ରତି ବଦଳରେ ଏକକାଳୀନ ଆର୍ଥିକ ସହାୟତା ନିମ୍ନ ହାରରେ ପ୍ରଦାନ କରିବେ ।

ଅନୁଚ୍ଛେଦ ୨(ଚ) ଅନ୍ତର୍ଗତ ଖଣ୍ଡ (୧)ରୁ (୫)ରେ ବର୍ଣ୍ଣିତ ପରିବାରଗୁଡ଼ିକ ପୃଥକ୍ ଭାବେ ନିଯୁକ୍ତି ପାଇଁ ବିଚାରଭୁକ୍ତ ହେବେ ନାହିଁ । ମାତ୍ର ସେମାନେ ନିଯୁକ୍ତି ପ୍ରତି ବଦଳରେ ଏକକାଳୀନ ଆର୍ଥିକ କ୍ଷତିପୂରଣ ପାଇବେ ।

ଯଦି କୌଣସି ଶିଳ୍ପ ସଂସ୍ଥା ଗୋଟିଏ ପରିବାରର ଏକାଧିକ ସଦସ୍ୟଙ୍କୁ ନିଯୁକ୍ତି ଦେବା ପାଇଁ ଇଚ୍ଛା କରିବେ, ତେବେ ଏକକାଳୀନ ଆର୍ଥିକ ସହାୟତା ପ୍ରତିବଦଳରେ ଏହା ଦିଆଯିବ ।

ନିଯୁକ୍ତି ନିମନ୍ତେ ବିଚାରଯୋଗ୍ୟ ବିସ୍ଥାପିତ / ଅନ୍ୟ ପରିବାରଗୁଡ଼ିକ ଓ ଖଣ୍ଡ (୧)ରୁ (୫)ରେ ବର୍ଣ୍ଣିତ ପରିବାରଗୁଡ଼ିକୁ ନିଯୁକ୍ତି / ଆତ୍ମନିଯୁକ୍ତି ପ୍ରତି ବଦଳରେ ଏକକାଳୀନ ଆର୍ଥିକ ସହାୟତା ନିମ୍ନସୂଚିତ ହାରରେ ପ୍ରଦାନ କରାଯିବ ।

| କ୍ର.ନଂ. | ଉପାନୁଚ୍ଛେଦ (କ) ଅନୁସାରେ ଶ୍ରେଣୀଭୁକ୍ତ ପରିବାର | ଏକକାଳୀନ ଆର୍ଥିକ ସହାୟତାର ପରିମାଣ (ଲକ୍ଷରେ) |
|---|---|---|
| ୧. | ଶ୍ରେଣୀ (୧) ଅଧୀନରେ ଆସୁଥିବା ବିସ୍ଥାପିତ ପରିବାର | ୫.୦୦ |
| ୨. | ଶ୍ରେଣୀ (୨) ଅଧୀନରେ ଆସୁଥିବା ବିସ୍ଥାପିତ ପରିବାର | ୩.୦୦ |
| ୩. | ଶ୍ରେଣୀ (୩) ଅଧୀନରେ ଆସୁଥିବା ବିସ୍ଥାପିତ ପରିବାର | ୨.୦୦ |
| ୪. | ୪ର୍ଥ ଓ ୫ମ ଶ୍ରେଣୀରେ ଅନ୍ତର୍ଭୁକ୍ତ ପରିବାର | ୧.୦୦ |

(ଖ) ଆତ୍ମ ନିଯୁକ୍ତି ପାଇଁ ତାଲିମ

ସଂପୃକ୍ତ ଜିଲ୍ଲାପାଳଙ୍କ ମାର୍ଗଦର୍ଶନକ୍ରମେ ପ୍ରକଳ୍ପ କର୍ତ୍ତୃପକ୍ଷ ବିସ୍ଥାପିତ ପରିବାରର ଅନ୍ୟୂନ ଜଣେ ବ୍ୟକ୍ତିଙ୍କୁ ବୃତ୍ତିଗତ ତାଲିମ ପ୍ରଦାନ ନିମନ୍ତେ, ପର୍ଯ୍ୟାପ୍ତ ବ୍ୟବସ୍ଥା କରିବେ ଯଦ୍ୱାରା ସେହି ବ୍ୟକ୍ତି ନିର୍ଦ୍ଦିଷ୍ଟ କ୍ଷୁଦ୍ର ଉଦ୍ୟୋଗ ଆରମ୍ଭ କରିବା ପାଇଁ ନିଜକୁ ସୁସଜ୍ଜିତ କରିପାରିବେ । ତଥା ନିଜର କର୍ମ କୌଶଳକୁ ମାର୍ଜିତ କରି ନିଯୁକ୍ତି କ୍ଷେତ୍ରରେ ସୃଷ୍ଟି ହେଉଥିବା ନୂଆ ନୂଆ ସମ୍ଭାବନାଗୁଡ଼ିକର ସୁଯୋଗ ଉଠାଇ ପାରିବେ ଯେଉଁମାନେ ପାରମ୍ପରିକ ବୃତ୍ତି / ହସ୍ତଶିଳ୍ପ/ ହସ୍ତତନ୍ତ ପ୍ରଭୃତିରେ ନିଯୁକ୍ତି ଥିବେ, ସେମାନଙ୍କର ଦକ୍ଷତା ବୃଦ୍ଧି କରାଇବା ପାଇଁ କର୍ତ୍ତୃପକ୍ଷଙ୍କ ଖର୍ଚ୍ଚରେ ଆବଶ୍ୟକୀୟ ତାଲିମ ପ୍ରଦାନ କରାଯିବ ।

**(ଗ) ବିନିମେୟ ଅଗ୍ରାଧିକାର ଅଂଶଧନ (Convertible Preference Share)**

ବିସ୍ଥାପିତ ପରିବାର ଚାହିଁଲେ ପ୍ରକଳ୍ପ କର୍ତ୍ତୃପକ୍ଷ ବଳବତ୍ତର ଥିବା ପ୍ରାସଙ୍ଗିକ ଆଇନର ବ୍ୟବସ୍ଥାନୁଯାୟୀ ଅନୁଚ୍ଛେଦ (କ)ରେ ବର୍ଣ୍ଣିତ ହୋଇଥିବା ଏକକାଳୀନ ଆର୍ଥିକ ସହାୟତାର ସର୍ବାଧିକ ୫୦ ପ୍ରତିଶତ ବିନିମେୟ ଅଗ୍ରାଧିକାର ଅଂଶଧନ (convertible preference share) ବା ପ୍ରତିଭୂତି ବନ୍ଧପତ୍ର (security bond) ଆକାରରେ ଦେଇ ପାରିବେ ।

**(ଘ) ଘରଡିହ ପାଇଁ ବ୍ୟବସ୍ଥା**

ଯଦି ଜମି ମିଳୁଥାଏ, ତେବେ ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ପୁନର୍ବାସ ବସତିରେ ଘରଡିହ ଉଦ୍ଦେଶ୍ୟରେ ଅନ୍ତତଃ ଏକ ଏକରର ଏକଦଶମାଂଶ ଜମି ମାଗଣାରେ ଯୋଗାଇ ଦିଆଯିବ ।

**(ଙ) ଅନ୍ୟତ୍ର ବସବାସ ପାଇଁ ସହାୟତା**

ଯେଉଁ ବିସ୍ଥାପିତ ପରିବାର ପୁନର୍ବାସ ବସତି ବଦଳରେ ଅନ୍ୟତ୍ର ରହିବାକୁ ଚାହିଁବେ, ସେମାନଙ୍କୁ ଘରଡିହ ବଦଳରେ ଏକକାଳୀନ ୫୦ ହଜାର ଟଙ୍କା ଆର୍ଥିକ ଅନୁଦାନ ଦିଆଯିବ ।

**(ଚ) ଗୃହ ନିର୍ମାଣ ସହାୟତା**

ଏତଦ୍ ବ୍ୟତୀତ ପ୍ରକଳ୍ପ କର୍ତ୍ତୃପକ୍ଷ ପୁନର୍ବାସ ବସତିରେ ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କ ପାଇଁ ଗୃହ ନିର୍ମାଣ କରିବେ । ନତୁବା ପୁନର୍ବାସ ବସତିରେ ନିଜେ ଘର କରିବାକୁ ଚାହୁଁଥିବା ବା ଅନ୍ୟତ୍ର ଘର କରି ବସବାସ କରି ଚାହୁଁଥିବା ପ୍ରତ୍ୟେକ ବିସ୍ଥାପିତ ପରିବାରକୁ ଗୃହ ନିର୍ମାଣ ସହାୟତା ବାବଦରେ ଏକ ଲକ୍ଷ ପଚାଶ ହଜାର ଟଙ୍କା ପ୍ରଦାନ କରିବେ ।

**(ଛ) ଦୋକାନ ଓ ବ୍ୟବସାୟିକ ସେବା ଉଦ୍ୟୋଗ**

ପ୍ରକଳ୍ପ କର୍ତ୍ତୃପକ୍ଷ ନିଜ ଖର୍ଚ୍ଚରେ ବ୍ୟବସାୟ ପାଇଁ ସମ୍ଭାବନା ଥିବା ସ୍ଥାନରେ ଦୋକାନ ଗୃହ ଓ ବ୍ୟବସାୟିକ ସେବା ଉଦ୍ୟୋଗମାନ ନିର୍ମାଣ କରିବେ, ଯେଉଁଗୁଡ଼ିକୁ ଆତ୍ମନିଯୁକ୍ତି ପାଇଁ ଇଚ୍ଛୁକ ବିସ୍ଥାପିତ ପରିବାରମାନଙ୍କୁ ଜିଲ୍ଲାପାଳଙ୍କ ପରାମର୍ଶକ୍ରମେ ବଣ୍ଟନ କରାଯିବ । ବଣ୍ଟନ ସମୟରେ ଶାରୀରିକ ଅକ୍ଷମ ବ୍ୟକ୍ତି ଏବଂ ଅନୁସୂଚିତ ଜାତି ଓ ଜନଜାତିର ବିସ୍ଥାପିତ ପରିବାରଙ୍କୁ ଅଗ୍ରାଧିକାର ଦିଆଯିବ ।

## ୨. ‘ଖ’ ଶ୍ରେଣୀ – ଖଣିଭିତ୍ତିକ ପ୍ରକଳ୍ପ

### (କ) ନିଯୁକ୍ତି

ବିସ୍ଥାପିତ ଓ ଅନ୍ୟ କ୍ଷତିଗ୍ରସ୍ତ ପରିବାରମାନେ ବିସ୍ଥାପନ ସୃଷ୍ଟି କରୁଥିବା ପ୍ରକଳ୍ପଦ୍ୱାରା ନିଯୁକ୍ତି ପାଇବା ପାଇଁ ଯୋଗ୍ୟ ବିବେଚିତ ହେବେ । ନିଯୁକ୍ତି ପାଇବା ପାଇଁ ପ୍ରତି ପରିବାର ନିଜ ଭିତରୁ ଜଣେ ସଦସ୍ୟଙ୍କୁ ମନୋନୀତ କରିବେ । ପ୍ରକଳ୍ପ ପ୍ରସ୍ତାବକ ନିଯୁକ୍ତି କ୍ଷେତ୍ରରେ ବିସ୍ଥାପିତ ଓ ଅନ୍ୟ କ୍ଷତିଗ୍ରସ୍ତ ପରିବାରମାନଙ୍କଦ୍ୱାରା ମନୋନୀତ ସଦସ୍ୟମାନଙ୍କୁ ଅଗ୍ରାଧିକାର ଦେବେ । ନିମ୍ନଲିଖିତ କ୍ରମରେ ଅଗ୍ରାଧିକାର ଦିଆଯିବ ।

(୧) ବିସ୍ଥାପିତ ପରିବାର, ଯିଏ କି ଘରଡିହ ସମେତ ସମସ୍ତ ଜମି ହରାଉଥିବେ ।

(୨) ବିସ୍ଥାପିତ ପରିବାର, ଯିଏ କି ଦୁଇ ତୃତୀୟାଂଶରୁ ଅଧିକ ଚାଷଜମି ଓ ଘରଡିହ ହରାଉଥିବେ ।

(୩) ବିସ୍ଥାପିତ ପରିବାର, ଯିଏ କି ସମସ୍ତ ଚାଷଜମି ହରାଉଥିବେ, କିନ୍ତୁ ଘରଡିହ ହରାଉ ନଥିବେ ।

(୪) ବିସ୍ଥାପିତ ପରିବାର, ଯିଏ କି କେବଳ ଘରଡିହ ହରାଉଥିବେ, ଚାଷଜମି ହରାଉ ନ ଥିବେ ।

(୫) ବିସ୍ଥାପିତ ପରିବାର, ଯିଏ କି କେବଳ ଚାଷଜମି ହରାଉଥିବେ, କିନ୍ତୁ ଘରଡିହ ହରାଉ ନଥିବେ ।

(୬) ପରିବାରଗୁଡ଼ିକ, ଯିଏ କି ଆଂଶିକ ଚାଷଜମି ହରାଉଥିବେ, କିନ୍ତୁ ଘରଡିହ ହରାଉ ନଥିବେ ।

ବିସ୍ଥାପିତ ପରିବାରଙ୍କଦ୍ୱାରା ମନୋନୀତ ସଦସ୍ୟଙ୍କୁ ପ୍ରକଳ୍ପରେ ନିଯୁକ୍ତି ଯୋଗ୍ୟ କରିବା ପାଇଁ ପ୍ରକଳ୍ପ କର୍ତ୍ତୃପକ୍ଷ ତାଙ୍କର ଦକ୍ଷତା ବୃଦ୍ଧିରେ ସହାୟକ ହେବାଭଳି ସ୍ୱତନ୍ତ୍ର ପଦକ୍ଷେପମାନ ଗ୍ରହଣ କରିବେ ।

(୧) ଯଦି ବିସ୍ଥାପିତ ପରିବାରଙ୍କଦ୍ୱାରା ମନୋନୀତ ସଦସ୍ୟ ଜଣଙ୍କ ବୟସ ଛଡ଼ା ଅନ୍ୟ ସବୁ ଦୃଷ୍ଟିରୁ ନିଯୁକ୍ତି ପାଇବାକୁ ଯୋଗ୍ୟ ବୋଲି ବିବେଚିତ ହୁଅନ୍ତି, ତେବେ ସର୍ବୋଚ୍ଚ ବୟସ ସୀମାକୁ ୫ ବର୍ଷ କୋହଳ କରାଯିବ ।

(୨) ପ୍ରକଳ୍ପ କର୍ତ୍ତୃପକ୍ଷମାନେ ଯଥେଷ୍ଟ ପୂର୍ବରୁ ସେମାନଙ୍କ ନିକଟରେ ଥିବା ନିଯକ୍ତି ପ୍ରଦାନ କ୍ଷମତା ଅଧିସୂଚିତ କରିବେ ।

(୩) ଯେତେ ଦୂରସାଧ୍ୟ, ଉପରବର୍ଣ୍ଣିତ ପ୍ରତ୍ୟେକ ବିସ୍ଥାପିତ ଅନ୍ୟାନ୍ୟ ପରିବାରରୁ ଜଣଙ୍କୁ ପ୍ରକଳ୍ପରେ ନିଯୁକ୍ତି ପ୍ରଦାନ କରିବାର ଲକ୍ଷ୍ୟ ରହିବ । ଯେଉଁ ସ୍ଥଳରେ ଜଣଙ୍କୁ ନିଯୁକ୍ତି ପ୍ରଦାନ କରାଯାଇପାରିବ ନାହିଁ ବୋଲି ଲିଖିତ କାରଣ ଦର୍ଶାଯିବ ସେହିସ୍ଥଳେ ବିସ୍ଥାପିତ ପରିବାରଙ୍କୁ ନିମ୍ନମତେ ଆର୍ଥିକ କ୍ଷତିପୂରଣ ପ୍ରଦାନ କରାଯିବ ।

ଯେଉଁ ବିସ୍ଥାପିତ ପରିବାରମାନେ ଉପାନୁଚ୍ଛେଦ (କ) ଓ (ଖ)ରେ ସୂଚିତ ହୋଇଥିବା ନିଯୁକ୍ତି ବା ଆତ୍ମନିଯୁକ୍ତି ପାଇଁ ଇଚ୍ଛୁକ ହେବେନି, ସେମାନଙ୍କୁ ପ୍ରକଳ୍ପ କର୍ତ୍ତୃପକ୍ଷ ନିଯୁକ୍ତି ପ୍ରତି ବଦଳରେ ଏକକାଳୀନ ଆର୍ଥିକ ସହାୟତା ନିମ୍ନ ହାରରେ ପ୍ରଦାନ କରିବେ –

| କ୍ର.ନଂ. | ଉପାନୁଚ୍ଛେଦ (କ) ଅନୁସାରେ ଶ୍ରେଣୀଭୁକ୍ତ ପରିବାର | ଏକକାଳୀନ ଆର୍ଥିକ ସହାୟତାର ପରିମାଣ (ଲକ୍ଷରେ) |
|---|---|---|
| ୧. | ଶ୍ରେଣୀ ବିଭାଗ(୧) ଅଧୀନରେ ଆସୁଥିବା ବିସ୍ଥାପିତ ପରିବାର | ୫.୦୦ |
| ୨. | ବିସ୍ଥାପିତ ପରିବାର ଶ୍ରେଣୀ ବିଭାଗ (୨) ଅନୁସାରେ | ୩.୦୦ |
| ୩. | ବିସ୍ଥାପିତ ପରିବାର ଶ୍ରେଣୀ ବିଭାଗ (୩) ଅନୁସାରେ | ୨.୦୦ |
| ୪. | ୪ର୍ଥ ଓ ୫ମ ଶ୍ରେଣୀରେ ଅନ୍ତର୍ଭୁକ୍ତ ପରିବାର | ୧.୦୦ |

**(ଖ) ଆତ୍ମନିଯୁକ୍ତି ପାଇଁ ତାଲିମ**

ସଂପୃକ୍ତ ଜିଲ୍ଲାପାଳଙ୍କ ମାର୍ଗଦର୍ଶନକ୍ରମେ ପ୍ରକଳ୍ପ କର୍ତ୍ତୃପକ୍ଷ ବିସ୍ଥାପିତ ପରିବାରର ଅନ୍ୟୂନ ଜଣେ ବ୍ୟକ୍ତିଙ୍କୁ ବୃତ୍ତିଗତ ତାଲିମ ପ୍ରଦାନ ନିମନ୍ତେ, ପର୍ଯ୍ୟାପ୍ତ ବ୍ୟବସ୍ଥା କରିବେ ଯଦ୍ଦ୍ୱାରା ସେହି ବ୍ୟକ୍ତି ନିର୍ଦ୍ଦିଷ୍ଟ କ୍ଷୁଦ୍ର ଉଦ୍ୟୋଗ ଆରମ୍ଭ କରିବା ପାଇଁ ନିଜକୁ ସୁସଜ୍ଜିତ କରିପାରିବେ । ତଥା ନିଜର କର୍ମ କୌଶଳକୁ ମାର୍ଜିତ କରି ନିଯୁକ୍ତି କ୍ଷେତ୍ରରେ ସୃଷ୍ଟି ହେଉଥିବା ନୂଆ ନୂଆ ସମ୍ଭାବନାଗୁଡ଼ିକର ସୁଯୋଗ ଉଠାଇ ପାରିବେ । ଯେଉଁମାନେ ପାରମ୍ପରିକ ବୃତ୍ତି/ ହସ୍ତଶିଳ୍ପ/ ହସ୍ତତନ୍ତ ପ୍ରଭୃତିରେ ନିଯୁକ୍ତି ଥିବେ, ସେମାନଙ୍କର ଦକ୍ଷତା ବୃଦ୍ଧି କରାଇବା ପାଇଁ କର୍ତ୍ତୃପକ୍ଷଙ୍କ ଖର୍ଚ୍ଚରେ ଆବଶ୍ୟକୀୟ ତାଲିମ ପ୍ରଦାନ କରାଯିବ ।

**(ଗ) ବିନିମେୟ ଅଗ୍ରାଧିକାର ଅଂଶଧନ (Convertible Preference Share)**

ବିସ୍ଥାପିତ ପରିବାର ଚାହିଁଲେ ପ୍ରକଳ୍ପ କର୍ତ୍ତୃପକ୍ଷ ବଳବତ୍ତର ଥିବା ପ୍ରାସଙ୍ଗିକ ଆଇନର ବ୍ୟବସ୍ଥାନୁଯାୟୀ ଅନୁଚ୍ଛେଦ (କ)ରେ ବର୍ଣ୍ଣିତ ହୋଇଥିବା ଏକକାଳୀନ ଆର୍ଥିକ ସହାୟତାର ସର୍ବାଧିକ ୫୦ ପ୍ରତିଶତ ବିନିମେୟ ଅଗ୍ରାଧିକାର ଅଂଶଧନ (convertible preference share) ବା ପ୍ରତିଭୂତି ବନ୍ଧପତ୍ର (security bond) ଆକାରରେ ଦେଇ ପାରିବେ ।

**(ଘ) ଘରଡିହ ପାଇଁ ବ୍ୟବସ୍ଥା**

ଯଦି ଜମି ମିଳୁଥାଏ, ତେବେ ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ପୁନର୍ବାସ ବସତିରେ ଘରଡିହ ଉଦ୍ଦେଶ୍ୟରେ ଅନ୍ତତଃ ଏକ ଏକରର ଏକଦଶମାଂଶ ଜମି ମାଗଣାରେ ଯୋଗାଇ ଦିଆଯିବ ।

**(ଘ) ଅନ୍ୟତ୍ର ବସବାସ ପାଇଁ ସହାୟତା**

ଯେଉଁ ବିସ୍ଥାପିତ ପରିବାର ପୁନର୍ବାସ ବସତି ବଦଳରେ ଅନ୍ୟତ୍ର ରହିବାକୁ ଚାହିଁବେ, ସେମାନଙ୍କୁ ଘରଡିହ ବଦଳରେ ଏକକାଳୀନ ୫୦ ହଜାର ଟଙ୍କା ଆର୍ଥିକ ଅନୁଦାନ ଦିଆଯିବ ।

**(ଚ) ଗୃହନିର୍ମାଣ ସହାୟତା**

ଏତଦ୍‌ବ୍ୟତୀତ ପ୍ରକଳ୍ପ କର୍ତ୍ତୃପକ୍ଷ ପୁନର୍ବାସ ବସତିରେ ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କ ପାଇଁ ଗୃହ ନିର୍ମାଣ କରିବେ । ନତୁବା ପୁନର୍ବାସ ବସତିରେ ନିଜେ ଘର କରିବାକୁ ଚାହୁଁଥିବା ବା ଅନ୍ୟତ୍ର ଘର କରି ବସବାସ କରି ଚାହୁଁଥିବା ପ୍ରତ୍ୟେକ ବିସ୍ଥାପିତ ପରିବାରକୁ ଗୃହନିର୍ମାଣ ସହାୟତା ବାବଦରେ ଏକ ଲକ୍ଷ ପଚାଶ ହଜାର ଟଙ୍କା ପ୍ରଦାନ କରିବେ ।

**(ଛ) ଦୋକାନ ଓ ବ୍ୟବସାୟିକ ସେବା ଉଦ୍ୟୋଗ**

ପ୍ରକଳ୍ପ କର୍ତ୍ତୃପକ୍ଷ ନିଜ ଖର୍ଚ୍ଚରେ ବ୍ୟବସାୟ ପାଇଁ ସମ୍ଭାବନା ଥିବା ସ୍ଥାନରେ ଦୋକାନ ଗୃହ ଓ ବ୍ୟବସାୟିକ ସେବା ଉଦ୍ୟୋଗମାନ ନିର୍ମାଣ କରିବେ, ଯେଉଁଗୁଡ଼ିକୁ ଆତ୍ମନିଯୁକ୍ତି ପାଇଁ ଇଚ୍ଛୁକ ବିସ୍ଥାପିତ ପରିବାରମାନଙ୍କୁ ଜିଲ୍ଲାପାଳଙ୍କ ପରାମର୍ଶକ୍ରମେ ବଣ୍ଟନ କରାଯିବ । ବଣ୍ଟନ ସମୟରେ ଶାରୀରିକ ଅକ୍ଷମ ବ୍ୟକ୍ତି ଏବଂ ଅନୁସୂଚିତ ଜାତି ଓ ଜନଜାତିର ବିସ୍ଥାପିତ ପରିବାରଙ୍କୁ ଅଗ୍ରାଧିକାର ଦିଆଯିବ ।

**୩. 'ଗ' ଶ୍ରେଣୀ : ରାଜସ୍ୱ ଏବଂ ବିପର୍ଯ୍ୟୟ ପରିଚାଳନା ବିଭାଗ ସଂକଳ୍ପ ସଂଖ୍ୟା ୨୧୩୯୨ ତା.୪.୦୬.୨୦୦୭ରିଖଦ୍ୱାରା ପ୍ରତିସ୍ଥାପିତ । (ଜଳସେଚନ ପ୍ରକଳ୍ପ) / ଜାତୀୟ ଉଦ୍ୟାନ ଓ ଅଭୟାରଣ୍ୟ**

ବିସ୍ଥାପିତ ପରିବାର ଓ ତଦ୍ଦ୍ୱାରା ଅନ୍ତଃସ୍ଥାପିତ (କ୍ଷତିଗ୍ରସ୍ତ ପରିବାର)ମାନଙ୍କ ପାଇଁ ଥାଇଥାନ ପ୍ୟାକେଜ୍

**(କ) ଘରଡିହ ଜମି**

ପ୍ରତି ବିସ୍ଥାପିତ ପରିବାରଙ୍କୁ ପୁନର୍ବାସ ବସତିରେ ଏକ ଏକରର ଦଶ ଶତାଂଶ ପରିଣିତ ଜମି ଅଥବା ଅନ୍ୟସ୍ଥାନରେ ସ୍ୱ-ସଂସ୍ଥାପନ ଚାହୁଁଥିବା ପ୍ରତି ବିସ୍ଥାପିତ ପରିବାରଙ୍କୁ ଏହାର ସମତୁଲ୍ୟ ଅର୍ଥରାଶି ରୂପେ ପଚାଶ ହଜାର ଟଙ୍କା ଯୋଗାଇ ଦିଆଯିବ ।

**(ଖ) ଗୃହ ନିର୍ମାଣ ସହାୟତା**

ଗୁହାଳ ସମେତ ଗୃହନିର୍ମାଣ ବାବଦରେ ପ୍ରତି ବିସ୍ଥାପିତ ପରିବାରଙ୍କୁ ଏକଲକ୍ଷ ପଚାଶ ହଜାର ଟଙ୍କା ଦିଆଯିବ । ପୁନର୍ବାସ ବସତିରେ ବା ଅନ୍ୟତ୍ର ବସବାସ କରିବାକୁ ଚାହୁଁଥିବା ପ୍ରତି ବିସ୍ଥାପିତ ପରିବାରଙ୍କୁ ଏହା ମିଳିପାରିବ ।

**(ଗ) ଚାଷଜମି ପାଇଁ ସହାୟତା**

ଅନୁସୂଚିତ ଜନଜାତି ଶ୍ରେଣୀ ଅନ୍ତର୍ଗତ ପ୍ରତି ବିସ୍ଥାପିତ ପରିବାରଙ୍କୁ ଅଢ଼େଇ ଏକର ଜଳସେଚିତ ଚାଷ ଜମି କିମ୍ବା ପାଞ୍ଚ ଏକର ଅଣ ଜଳସେଚିତ ଚାଷ ଜମି ଯୋଗାଇ ଦିଆଯିବ । ଅନ୍ୟ ସବୁ ଶ୍ରେଣୀର ବିସ୍ଥାପିତ ପରିବାରମାନଙ୍କୁ ଦୁଇ ଏକର ଜଳସେଚିତ ଚାଷଜମି ବା ଚାରି ଏକର ଅଣ ଜଳସେଚିତ ଚାଷଜମି ଯୋଗାଇ ଦିଆଯିବ ।

ଯଦି ଜମି ଉପଲବ୍ଧ ନହୁଏ, ତେବେ ସମତୁଲ ଆର୍ଥିକ ସହାୟତା ବାବଦକୁ ଏକ ଏକର ଜଳସେଚିତ ଜମି ପାଇଁ ଏକ ଲକ୍ଷ ଟଙ୍କା ଏବଂ ଜମି ଚାଷୋପଯୋଗୀ କରିବା ଖର୍ଚ୍ଚକୁ ମିଶାଇ ଏକ ଏକର ଅଣ ଜଳସେଚିତ ଜମି ପାଇଁ ପଚାଶ ହଜାର ଟଙ୍କା ହାରରେ ଅର୍ଥ ପ୍ରଦାନ କରାଯିବ କିମ୍ବା ସମୟାନ୍ତରରେ ସରକାର ସ୍ଥିର କରୁଥିବା ହାରରେ ଏହା ପ୍ରଦାନ କରାଯିବ ।

**(ଘ) ରେଜିଷ୍ଟ୍ରେସନ ଦେୟ**

ଯେଉଁ ବିସ୍ଥାପିତ ପରିବାର ଜମି ପ୍ରତି ବଦଳରେ ଅର୍ଥଭିତ୍ତିକ ଥଇଥାନ ଚାହିଁବେ, ସେମାନଙ୍କୁ ବିସ୍ଥାପନ ତାରିଖର ସର୍ବାଧିକ ୫ ବର୍ଷ ମଧ୍ୟରେ ପ୍ରକଳ୍ପ କର୍ତ୍ତୃପକ୍ଷଙ୍କଦ୍ୱାରା ଜମିର ରେଜିଷ୍ଟ୍ରେସନ ଦେୟ ମିଳିବ । ଦେଶୀୟ ବିସ୍ଥାପିତ ପରିବାରମାନଙ୍କ ପାଇଁ ସର୍ବାଧିକ ୫ ଏକର ପର୍ଯ୍ୟନ୍ତ ଅଣଜଳସେଚିତ ଜମି ବା ଅଢ଼େଇ ଏକର ଜଳସେଚିତ ଜମି ଓ ଅନ୍ୟସବୁ ଶ୍ରେଣୀର ବିସ୍ଥାପିତ ପରିବାରଙ୍କ ପାଇଁ ସର୍ବାଧିକ ୪ ଏକର ଅଣଜଳସେଚିତ ଓ ୨ ଏକର ଜଳସେଚିତ ଜମି ପାଇଁ ରେଜିଷ୍ଟ୍ରେସନ ଦେୟ ମିଳିବ ।

ରାଜସ୍ୱ ଏବଂ ବିପର୍ଯ୍ୟୟ ପରିଚାଳନା ବିଭାଗ ସଂକଳ୍ପ ସଂଖ୍ୟା- ୨୧୩୯୨, ତା.୪.୬.୨୦୦୭ରିଖ ଦ୍ୱାରା ଅନ୍ତଃସ୍ଥାପିତ ।
'[(ଙ) ଆତ୍ମନିଯୁକ୍ତି ପାଇଁ ତାଲିମ

ସଂପୃକ୍ତ ଜିଲ୍ଲାପାଳଙ୍କ ମାର୍ଗଦର୍ଶନକ୍ରମେ ପ୍ରକଳ୍ପ କର୍ତ୍ତୃପକ୍ଷ ଇଚ୍ଛାପ୍ରକାଶ କରୁଥିବା ବିସ୍ଥାପିତ ଓ କ୍ଷତିଗ୍ରସ୍ତ ପରିବାରକୁ ବୈଷୟିକ ତାଲିମ କିମ୍ବା ଦକ୍ଷତା ବୃଦ୍ଧି ତାଲିମ ପ୍ରଦାନ କରିବା ନିମନ୍ତେ ପର୍ଯ୍ୟାପ୍ତ ବ୍ୟବସ୍ଥା କରିବେ, ଯାହାଫଳରେ କି ସେମାନେ ଏକ ଉଦ୍ୟୋଗ ଖୋଲିବା ପାଇଁ ତଥା କର୍ମନିଯୁକ୍ତି କ୍ଷେତ୍ରରେ ସୃଷ୍ଟି ହୋଇଥିବା ନୂଆ ନୂଆ ସମ୍ଭାବନାଗୁଡ଼ିକର ସୁଯୋଗ ଉଠାଇବା ପାଇଁ ନିଜର ସାମର୍ଥ୍ୟ ବଢ଼ାଇବାରେ ସକ୍ଷମ ହୋଇପାରିବେ । ଯେଉଁମାନେ ପାରମ୍ପରିକ ବୃତ୍ତି / ହସ୍ତଶିଳ୍ପ / ହସ୍ତତନ୍ତ ପ୍ରଭୃତିରେ ନିଯୁକ୍ତି ଥିବେ, ସେମାନଙ୍କର ଦକ୍ଷତା ବୃଦ୍ଧି କରାଇବା ପାଇଁ କର୍ତ୍ତୃପକ୍ଷଙ୍କ ଖର୍ଚ୍ଚରେ ଆବଶ୍ୟକୀୟ ତାଲିମ ପ୍ରଦାନ କରାଯିବ ।

**(ଚ)** କ୍ଷତିଗ୍ରସ୍ତ ପରିବାର, ଯିଏକି ଜଳସେଚନ ପ୍ରକଳ୍ପ ଅଞ୍ଚଳରେ ତାଙ୍କର ଥିବା ମୋଟ ଜମିର ୭୫ ପ୍ରତିଶତରୁ ଅଧିକ ଜମି ହରାଉଛନ୍ତି, ସେ ଉପର ବର୍ଣ୍ଣିତ (କ), (ଖ), (ଗ) ଓ (ଘ)ରେ ଥିବା ସମସ୍ତ ସୁବିଧା ପ୍ରାପ୍ତ ହେବେ ।

**(ଛ)** କ୍ଷତିଗ୍ରସ୍ତ ପରିବାର, ଯିଏକି ଜଳସେଚନ ପ୍ରକଳ୍ପ ଅଞ୍ଚଳରେ ତାଙ୍କର ଥିବା ସମୁଦାୟ ଜମିର ୭୫ ପ୍ରତିଶତରୁ କମ୍ ଜମି କେନାଲ ନିର୍ମାଣ ଉଦ୍ଦେଶ୍ୟ ବ୍ୟତିରେକେ ହରାଉଥିବେ, ସେ (କ) କିମ୍ବା (ଗ)ରେ ପ୍ରଦତ୍ତ ଜମି ପରିମାଣର ସର୍ବୋଚ୍ଚ ସୀମା ମଧ୍ୟରେ ହରାଉଥିବା ଜମିର ସମ ପରିମାଣ ଜମି ପାଇପାରିବେ ଏବଂ (ଘ)ରେ ବର୍ଣ୍ଣିତ ରେଜିଷ୍ଟ୍ରେସନ ଦେୟର ସୁବିଧା ମଧ୍ୟ ପାଇପାରିବେ ।

**(ଜ)** କ୍ଷତିଗ୍ରସ୍ତ ପରିବାର, ଯିଏକି କେନାଲ ନିର୍ମାଣ ନିମନ୍ତେ ସାଧାରଣତଃ ବାସ କରୁଥିବା ଅଞ୍ଚଳରେ ଜମି ଅଧିଗ୍ରହଣ ଯୋଗୁଁ ଘରଡିହ ଜମି ହରାଉଥିବେ, ସେ (କ), (ଖ) ଓ (ଘ)ରେ ବର୍ଣ୍ଣିତ ସୁବିଧା ସବୁ ପାଇପାରିବେ ।']

**୪. 'ଘ' ଶ୍ରେଣୀ : ସହରାଞ୍ଚଳ ଓ ରୈଖିକ ପ୍ରକଳ୍ପ**

ପ୍ରତି ବିସ୍ଥାପିତ ପରିବାର ପାଇବେ –

### (କ) ଘରଡିହ ଜମି

ଯଦି ଜମି ମିଳିବା ସମ୍ଭବ ହୁଏ, ତେବେ ବ୍ୟବସାୟ ବଢୁଥିବା ସ୍ଥାନଗୁଡ଼ିକ ନିକଟରେ, ଅର୍ଥାତ୍ ରାସ୍ତାପାର୍ଶ୍ୱ, ଗୁରୁତ୍ୱପୂର୍ଣ୍ଣ ଛକସ୍ଥାନ ଓ ରେଳଷ୍ଟେସନ ଇତ୍ୟାଦିକୁ ଲାଗିଥିବା ଜମିରୁ ଗ୍ରାମାଞ୍ଚଳରେ ଏକ ଦଶମାଂଶ ଏକର ଏବଂ ସହରାଞ୍ଚଳରେ ଏକ ପଞ୍ଚବିଂଶ ଏକର ହାରରେ ଯୋଗାଇ ଦିଆଯିବ । ଆବଶ୍ୟକ ପଡ଼ିଲେ, ପ୍ରକଳ୍ପ କର୍ତ୍ତୃପକ୍ଷ ଏହି ଉଦ୍ଦେଶ୍ୟରେ ଏହି ଧରଣର ଉପଯୁକ୍ତ ଭୂମି ପ୍ରାସଙ୍ଗିକ ଆଇନ ଅନୁସାରେ ଅର୍ଜନ କରିପାରନ୍ତି ।

### (ଖ) ଗୃହ ନିର୍ମାଣ ସହାୟତା

ପୁନର୍ବାସ ବସତିରେ କିମ୍ବା ଅନ୍ୟତ୍ର ରହିବାକୁ ଚାହୁଁଥିବା ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ଏକ ଲକ୍ଷ ପଚାଶ ହଜାର ଟଙ୍କା ଗୃହ ନିର୍ମାଣ ସହାୟତା ମିଳିବ ।

**(ଗ)** ରୈଖିକ ପ୍ରକଳ୍ପ ପାଇଁ ଜଣେ ଜମିମାଲିକଙ୍କ ଘର ଏବଂ ଘରଡିହ ଭୂମି ଅର୍ଜିତ ହେଉଥିଲେ ଅଥବା ଏପ୍ରକାର ପ୍ରକଳ୍ପ ପାଇଁ ଭୂମି ଅର୍ଜନ ଯୋଗୁଁ ସେ ସଂପୂର୍ଣ୍ଣ ରୂପେ ବିସ୍ଥାପିତ ହେଉଥିଲେ, ପ୍ରକଳ୍ପ କର୍ତ୍ତୃପକ୍ଷ ସଂପୃକ୍ତ ବିସ୍ଥାପିତ ପରିବାରର ଜଣେ ସଦସ୍ୟଙ୍କୁ ପ୍ରକଳ୍ପରେ ନିଯୁକ୍ତି ପ୍ରଦାନ କରିବେ । ଯେଉଁ କ୍ଷେତ୍ରରେ ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟି ନିଷ୍ପତ୍ତି ନେବେ ଯେ, ଏଭଳି ନିଯୁକ୍ତି ଯୋଗାଇବା ସମ୍ଭବପର ନୁହେଁ, ସେପରି ସ୍ଥଳେ ପ୍ରକଳ୍ପ କର୍ତ୍ତୃପକ୍ଷ ସରକାରଙ୍କଦ୍ୱାରା ନିର୍ଦ୍ଧାରିତ ପରିମାଣର ଏକକାଳୀନ ଆର୍ଥିକ ସହାୟତା ପ୍ରଦାନ କରିବେ ।

### ୫. 'ଙ' ଶ୍ରେଣୀ : ଅନ୍ୟ କୌଣସି ପ୍ରକଳ୍ପ

ଉପର ବର୍ଣ୍ଣିତ ପ୍ରକଳ୍ପ ଶ୍ରେଣୀ ଅନ୍ତର୍ଭୁକ୍ତ ହେଉନଥିବା ଅନ୍ୟ କୌଣସି ପ୍ରକଳ୍ପ ପାଇଁ ସରକାର ପୁନର୍ବାସ ଓ ଥଇଥାନ ପ୍ୟାକେଜର ସବିଶେଷ ଉଲ୍ଲେଖ କରି ନୀତି ପ୍ରଚଳନ କରିପାରିବେ ।

### ୯. ଭୂମିହୀନ ଓ ଘରଡିହ ନଥିବା ଜବରଦଖଲକାରୀଙ୍କ ନିମନ୍ତେ ସବୁ ଶ୍ରେଣୀର ପ୍ରକଳ୍ପ ପାଇଁ ପ୍ରଯୋଜ୍ୟ ସୁବିଧା :

(କ) ଗୋଟିଏ ଜବର ଦଖଲକାରୀ ପରିବାର ଯିଏକି ଓଡ଼ିଶା ସରକାରୀ ଜମି ଜବର ଦଖଲ ନିବାରଣ ଆଇନ – ୧୯୭୨ରେ ପ୍ରଦତ୍ତ ସଂଜ୍ଞା ଅନୁସାରେ ଭୂମିହୀନ ହୋଇଥିବେ ଏବଂ ପ୍ରାସଙ୍ଗିକ ଆଇନ ଅଧୀନରେ ଭୂମି ଅର୍ଜନ ଉଦ୍ଦେଶ୍ୟ ଘୋଷଣା କରି ଅଧିସୂଚନା ଜାରି ହୋଇଥିବା ତାରିଖର ଅନ୍ତତଃ ୧୦ ବର୍ଷ ପୂର୍ବରୁ ଜବରଦଖଲ କରାଯାଇଥିବା ଜମିକୁ ନିରବଚ୍ଛିନ୍ନ ଭାବେ ଦଖଲ କରୁଥିବେ ଓ ଯଦି ଏହି ଜବରଦଖଲ ଆପତ୍ତିଜନକ ହୋଇନଥିବ ତେବେ ସେ ଜବରଦଖଲ କରାଯାଇଥିବା ଜମିର ସମପ୍ରକାର ଓ ସମପରିମାଣ ଜମି ନିମନ୍ତେ ଭୂ-ଅର୍ଜନ ଆଇନ-୧୮୯୪ରେ ବିଚାରଯୋଗ୍ୟ କ୍ଷତିପୂରଣର ସମମୂଲ୍ୟ ଅନୁଗ୍ରହ ଅନୁଦାନ ଆକାରରେ ପାଇବେ । ଉପରୋକ୍ତମତେ ଜବରଦଖଲ କରାଯାଇଥିବା ସର୍ବାଧିକ ଏକ ଷ୍ଟାଣ୍ଡାର୍ଡ଼ ଏକର ପର୍ଯ୍ୟନ୍ତ ଜମି ପାଇଁ ଏପରି କ୍ଷତିପୂରଣ ମିଳିବ । କେତେ ପରିମାଣର ଜମି ନିମନ୍ତେ ଏପରି କ୍ଷତିପୂରଣ ମିଳିବ ତାହା ନିର୍ଣ୍ଣୟ କଲାବେଳେ ସଂପୃକ୍ତ ପରିବାର କେତେ ପରିମାଣର ରୟତ ଜମି ରଖିଛନ୍ତି ତାହା ବିଚାରକୁ ନିଆଯିବ ।

(ଖ) ଗୋଟିଏ ଜବରଦଖଲକାରୀ ପରିବାର ଯିଏକି ଓଡ଼ିଶା ସରକାରୀ ଜମି ଜବରଦଖଲ ନିବାରଣ ଆଇନ – ୧୯୭୨ର ପ୍ରଦତ୍ତ ସଂଜ୍ଞା ଅନୁସାରେ ଘରଡିହ ଶୂନ୍ୟ ହୋଇଥିବେ ଏବଂ ପ୍ରାସଙ୍ଗିକ ଆଇନ ଅଧୀନରେ ଭୂଅର୍ଜନ ଉଦ୍ଦେଶ୍ୟ ଘୋଷଣା କରି ଅଧିସୂଚନା ଜାରି ହୋଇଥିବା ତାରିଖର ଅନ୍ତତଃ ୧୦ ବର୍ଷ ପୂର୍ବରୁ ଜବରଦଖଲ କରାଯାଇଥିବା ଜମିକୁ ନିରବଚ୍ଛିନ୍ନ ଭାବେ ଦଖଲ କରୁଥିବେ ଓ ଯଦି ଏହି ଜବରଦଖଲ ଆପତ୍ତିଜନକ ହୋଇନଥିବ ତେବେ ସେ ଜବରଦଖଲ କରାଯାଇଥିବା ଘରଡିହର ସମପ୍ରକାର ଓ ସମପରିମାଣ ଘରଡିହ ଜମି ନିମନ୍ତେ ବିଚାରଯୋଗ୍ୟ କ୍ଷତିପୂରଣର ସମମୂଲ୍ୟ ଅନୁଗ୍ରହ ଅନୁଦାନ ଆକାରରେ ପାଇବେ । ଗ୍ରାମାଞ୍ଚଳରେ ଜବରଦଖଲ କରାଯାଇଥିବା ସର୍ବାଧିକ ଏକ ଏକରର ଏକ ଦଶମାଂଶ ପର୍ଯ୍ୟନ୍ତ ଘରଡିହ ଜମି ପାଇଁ ଓ ସହରାଞ୍ଚଳରେ ଜବରଦଖଲ କରାଯାଇଥିବା ସର୍ବାଧିକ ଏକ ଏକରର ଏକ ପଞ୍ଚବିଂଶାଂଶ ପର୍ଯ୍ୟନ୍ତ ଘରଡିହ ଜମି ପାଇଁ ଏପରି କ୍ଷତିପୂରଣ ମିଳିବ । କେତେ ପରିମାଣର ଜମି ନିମନ୍ତେ ଏପରି କ୍ଷତିପୂରଣ ମିଳିବ ତାହା ନିର୍ଣ୍ଣୟ କଲାବେଳେ ସଂପୃକ୍ତ ପରିବାର କେତେ ଘରଡିହ ରଖିଛନ୍ତି ତାହା ବିଚାରକୁ ନିଆଯିବ । ଯଦି ଜବରଦଖଲ

ଆପତ୍ତିଜନକ ହୋଇ ନଥାଏ ତେବେ ଘରଡିହ ଉପରେ ଥିବା ଢାଞ୍ଚାଗୁଡ଼ିକ (Structures)ର ବାସ୍ତବ ମୂଲ୍ୟ ସହିତ ଅନୁଗ୍ରହ ଅନୁଦାନ ମିଳିବ । ଜବରଦଖଲ ଆପତ୍ତିଜନକ ହୋଇଥିଲେ ସଂପୃକ୍ତ ପରିବାର କେବଳ ଢାଞ୍ଚାର ମୂଲ୍ୟ ପାଇବାକୁ ହକ୍‌ଦାର ହେବେ ।

**୧୦. ସବୁଶ୍ରେଣୀର ପ୍ରକଳ୍ପପାଇଁ ପ୍ରଯୋଜ୍ୟ ଅନ୍ୟାନ୍ୟ ସୁବିଧା**

**(କ) ଭରଣପୋଷଣ ଭତ୍ତା**

ବିସ୍ଥାପିତ ପରିବାରମାନେ ଠିକ୍ ସମୟରେ ଯେପରି ଜମି / ଘର ଖାଲି କରନ୍ତି, ତାହାକୁ ସୁନିଶ୍ଚିତ କରିବା ପାଇଁ ପ୍ରତି ପରିବାରକୁ ସଂପୃକ୍ତ ଜିଲ୍ଲାପାଳଙ୍କ ନିର୍ଦ୍ଦେଶମତେ ଜମି / ଘର ଖାଲି କରିବା ତାରିଖଠାରୁ ବର୍ଷକ ପାଇଁ ମାସକୁ ଦୁଇ ହଜାର ଟଙ୍କାର ଭତ୍ତା ଦିଆଯିବ ।

**(ଖ) ଅସ୍ଥାୟୀ ଗୃହ ପାଇଁ ସହାୟତା**

ପ୍ରତ୍ୟେକ ବିସ୍ଥାପିତ ପରିବାରଙ୍କୁ ଅସ୍ଥାୟୀ ଗୃହ ନିର୍ମାଣ ନିମନ୍ତେ ୧୦ ହଜାର ଟଙ୍କାର ଆର୍ଥିକ ସହାୟତା ପ୍ରଦାନ କରାଯିବ ।

**(ଗ) ପରିବହନ ଭତ୍ତା**

ପୁନର୍ବାସ ବସତି କିମ୍ବା ଅନ୍ୟତ୍ର ନୂଆ ବାସସ୍ଥାନକୁ ଯିବା ନିମନ୍ତେ ପ୍ରକଳ୍ପ କର୍ତ୍ତୃପକ୍ଷ ପ୍ରତ୍ୟେକ ବିସ୍ଥାପିତ ପରିବାରକୁ ମାଗଣା ପରିବହନ ସୁବିଧା ଯୋଗାଇ ଦେବେ ବା ପରିବହନ ଭତ୍ତା ବାବଦରେ ଦୁଇ ହଜାର ଟଙ୍କା ଦେବେ ।

ଆବଶ୍ୟକ ହେଲେ, ରାଜ୍ୟ ସରକାରଙ୍କ ରାଜସ୍ୱ ବିଭାଗ ମୂଲ୍ୟସୂଚୀ ଉପରେ ଭିତ୍ତିକରି ଏହି ହାରକୁ ପ୍ରତି ଦୁଇବର୍ଷରେ ଥରେ ଲେଖାଏଁ ସମୀକ୍ଷା ଓ ସଂଶୋଧନ କରିପାରନ୍ତି ।

**୧୧. ସହାୟତା ପାଇଁ ଅତିରିକ୍ତ ବ୍ୟବସ୍ଥାମାନ**

ଏହି ନୀତିରେ ଅନ୍ୟତ୍ର ଯାହା ବ୍ୟବସ୍ଥା ଥାଉ ନା କାହିଁକି, ବିସ୍ଥାପନର ସ୍ୱାତନ୍ତ୍ର୍ୟ ରାଜସ୍ୱ ଏବଂ ବିପର୍ଯ୍ୟୟ ପରିଚାଳନା ବିଭାଗ ସଂକଳ୍ପ ସଂଖ୍ୟା-୨୧୩୯୨, ତା.୪.୦୬.୦୭ରିଖଦ୍ୱାରା ଅନ୍ତଃସ୍ଥାପିତ (ଏବଂ ଜଳସେଚନ ଅଞ୍ଚଳର କ୍ଷତିଗ୍ରସ୍ତ ପରିବାରଙ୍କ କ୍ଷତିର ତୀବ୍ରତା ପ୍ରଭୃତିକୁ ଦୃଷ୍ଟିରେ ରଖି) ସରକାର କିମ୍ବା ପ୍ରକଳ୍ପ କର୍ତ୍ତୃପକ୍ଷ ବିସ୍ଥାପିତ ପରିବାରମାନଙ୍କ ପାଇଁ ଅନ୍ୟ ଯେକୌଣସି ପ୍ରକାର ଅତିରିକ୍ତ ସୁବିଧା ଓ ବ୍ୟବସ୍ଥା ଘୋଷଣା କରିପାରନ୍ତି ।

**୧୨. ବିସ୍ଥାପିତ ହେଉଥିବା ଦେଶୀୟ ପରିବାର ଏବଂ ଆଦିମ ଅଧିବାସୀ ଗୋଷ୍ଠୀମାନଙ୍କ ପାଇଁ ସ୍ୱତନ୍ତ୍ର ସୁବିଧା**

(କ) ପୁନର୍ବାସ ଯୋଜନାମାନ ପ୍ରସ୍ତୁତ କଲାବେଳେ, ଦେଶୀୟ ବାସିନ୍ଦା ଏବଂ ଆଦିମ ଅଧିବାସୀଗୋଷ୍ଠୀଙ୍କ ସାମାଜିକ ସାଂସ୍କୃତିକ ବୈଶିଷ୍ଟ୍ୟଗୁଡ଼ିକୁ ମାନ୍ୟତା ଦିଆଯିବ ।

(ଖ) ଦେଶୀୟ ବିସ୍ଥାପିତ ପରିବାରଙ୍କୁ ଅଗ୍ରାଧିକାର ଭିତ୍ତିରେ ଜମି ଆବଣ୍ଟନ କରାଯିବ ।

(ଗ) ଦେଶୀୟ ଗୋଷ୍ଠୀଙ୍କୁ ନିଜର ପ୍ରାକୃତିକ ବସତି ନିକଟରେ ପୁନର୍ବାସ କରାଇବା ପାଇଁ ଯଥାସାଧ୍ୟ ଉଦ୍ୟମ ହେବ ।

(ଘ) ନିଜ ଜିଲ୍ଲା ବାହାରେ ପୁନର୍ବାସ କରାଯାଉଥିବା ଦେଶୀୟ ବିସ୍ଥାପିତ ପରିବାରମାନଙ୍କୁ ଅର୍ଥ ଆକାରରେ ଦିଆଯାଇଥିବା ପୁନର୍ବାସ ଓ ଥଇଥାନ ସୁବିଧାର ୨୫ ପ୍ରତିଶତ ଅଧିକ ପାଇବେ ।

**୧୩. ଥାଇଥାନ ଅନୁଦାନକୁ ମୂଲ୍ୟସୂଚୀଭିତ୍ତିକ କରିବା**

ତା.୧.୪.୨୦୦୬ରିଖକୁ ସୂଚୀ ତାରିଖ ଭାବେ ଗ୍ରହଣ କରି ପାଇକାରୀ ମୂଲ୍ୟସୂଚୀ ଅନୁଯାୟୀ ଥଇଥାନ ଅନୁଦାନର ପରିମାଣ ନିର୍ଣ୍ଣିତ ହେବ ଏବଂ ଏହାପରେ ପ୍ରତି ଦୁଇବର୍ଷରେ ଥରେ ଲେଖାଏଁ ଏହା ପାଇକାରୀ ମୂଲ୍ୟସୂଚୀ ଅନୁଯାୟୀ ସଂଶୋଧିତ ହୋଇଚାଲିବ ।

**୧୪. ଉପାନ୍ତ ଅଞ୍ଚଳ ଉନ୍ନୟନ**

ରାଜ୍ୟ ସରକାରଙ୍କଦ୍ୱାରା ସମୟାନ୍ତରରେ ଘୋଷିତ ହେଉଥିବା ନୀତି ନିର୍ଦ୍ଦେଶିକାର ପରିସର ଭିତରେ ରହି ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟି ଯେଉଁ ନିଷ୍ପତ୍ତି ନେବେ, ପ୍ରକଳ୍ପ କର୍ତ୍ତୃପକ୍ଷ ତଦନୁଯାୟୀ ଉପାନ୍ତ ଅଞ୍ଚଳ ଉନ୍ନୟନ ପାଇଁ ଉତ୍ତରଦାୟୀ ରହିବେ ।

**୧୫. କ୍ଷତିପୂରଣ ପରାମର୍ଶଦାତା କମିଟି**

କଥାବାର୍ତ୍ତା ଜରିଆରେ ମୂଲ୍ୟ ନିର୍ଦ୍ଧାରଣ ପାଇଁ ସରକାରଙ୍କ ରାଜସ୍ୱ ବିଭାଗ ଜିଲ୍ଲାପାଳଙ୍କ ଅଧ୍ୟକ୍ଷତାରେ ଏକ ଜିଲ୍ଲା କ୍ଷତିପୂରଣ ପରାମର୍ଶଦାତା କମିଟି ଗଠନ କରିପାରନ୍ତି । ମହିଳା ଓ ସ୍ଥାନୀୟ ଅଧିକାରୀ ପ୍ରତିନିଧିମାନଙ୍କୁ (ଯେଉଁଠି ପ୍ରାସଙ୍ଗିକ) ଏହି କମିଟିରେ ପର୍ଯ୍ୟାପ୍ତ ପ୍ରତିନିଧିତ୍ୱ ଦିଆଯିବ ।

ଯଦି ଜିଲ୍ଲା କ୍ଷତିପୂରଣ ପରାମର୍ଶଦାତା କମିଟିଙ୍କ ସୁପାରିଶକୁ କେନ୍ଦ୍ର କରି କୌଣସି ବିବାଦ ଉପୁଜେ, ତାହା ରାଜସ୍ୱ ପରିଷଦ ସଦସ୍ୟଙ୍କ ଅଧ୍ୟକ୍ଷତାରେ ଗଠିତ ରାଜ୍ୟସ୍ତରୀୟ କ୍ଷତିପୂରଣ ପରାମର୍ଶଦାତା କମିଟିକୁ ପଠାଇ ଦିଆଯିବ ଏବଂ ଉକ୍ତ କମିଟିର ନିଷ୍ପତ୍ତି ସଂପୃକ୍ତ ସମସ୍ତ ପକ୍ଷମାନଙ୍କ ପାଇଁ ଚୂଡ଼ାନ୍ତ ଏବଂ ଅବଶ୍ୟ ପାଳନୀୟ ବୋଲି ବିବେଚିତ ହେବ । ଏହି ରାଜ୍ୟସ୍ତରୀୟ କ୍ଷତିପୂରଣ ପରାମର୍ଶଦାତା କମିଟି କେଉଁମାନଙ୍କୁ ନେଇ ଗଠିତ ହେବ, ତାହା ସରକାରଙ୍କଦ୍ୱାରା ଅଧିସୂଚିତ ହେବ ।

**୧୬. ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟି**

ପୁନର୍ବାସ ଓ ଥଇଥାନ ପ୍ୟାକେଜ୍‌ର କାର୍ଯ୍ୟାନ୍ୱୟନ ଓ ପର୍ଯ୍ୟାଲୋଚନା ପ୍ରକ୍ରିୟାରେ ବିସ୍ଥାପିତ ଓ ସେମାନଙ୍କର ନିର୍ବାଚିତ ପ୍ରତିନିଧିମାନଙ୍କ ଅଂଶଗ୍ରହଣକୁ ପ୍ରୋତ୍ସାହନ ଦେବାପାଇଁ ତଥା ଉପାନ୍ତ ଅଞ୍ଚଳ ଉନ୍ନୟନର ଦେଖାଶୁଣା ଓ ତଦାରଖ କରିବା ପାଇଁ ସରକାର ଗୋଟିଏ ଜିଲ୍ଲା ଭିତରେ କାର୍ଯ୍ୟକାରୀ ହେବାକୁ ଥିବା ଏକ ବା ଏକାଧିକ ପ୍ରକଳ୍ପ ପାଇଁ ଗୋଟିଏ ଥଇଥାନ ଓ ଉପାନ୍ତ ଅଞ୍ଚଳ ଉନ୍ନୟନ ପରାମର୍ଶଦାତା କମିଟି ଗଠନ କରିବେ । ଏହି କମିଟିର ଗଠନ ଢାଞ୍ଚା ସରକାରଙ୍କଦ୍ୱାରା ଅଧିସୂଚିତ ହେବ । ଏହି କମିଟିରେ ଲୋକ ପ୍ରତିନିଧି ଓ ପ୍ରଭାବିତ ଅଞ୍ଚଳର ଗୋଟିଏ କି ଦିଓଟି ପ୍ରମୁଖ ବେସରକାରୀ ସଂଗଠନ ଏବଂ ମନୋନୀତ ସରକାରୀ ପଦାଧିକାରୀଙ୍କ ସମେତ ଅନ୍ୟ କୌଣସି ବ୍ୟକ୍ତି ସରକାରଙ୍କ ଅଧିସୂଚନାମତେ ଅନ୍ତର୍ଭୁକ୍ତ ହୋଇପାରିବେ । ଏହି କମିଟିରେ ମହିଳା ଏବଂ ଦେଶୀୟ ଗୋଷ୍ଠୀମାନଙ୍କୁ (ଯେଉଁଠି ପ୍ରାସଙ୍ଗିକ) ପର୍ଯ୍ୟାପ୍ତ ପ୍ରତିନିଧି ଦିଆଯିବ । କମିଟିର କାର୍ଯ୍ୟକଳାପ ସୂଚାରୁରୂପେ ପରିଚାଳନା ପାଇଁ ଅନ୍ୟ ସଭ୍ୟମାନଙ୍କୁ ସହବରଣ କରିବାର ସ୍ୱାଧୀନତା ଏହାର ଅଧ୍ୟକ୍ଷଙ୍କର ରହିବ ।

**୧୭. ରାଜ୍ୟସ୍ତରୀୟ ପୁନର୍ବାସ ଓ ଥଇଥାନ ପରିଷଦ**

ପୁନର୍ବାସ ଓ ଥଇଥାନ ନୀତିର କାର୍ଯ୍ୟାନ୍ୱୟନ ସଂପର୍କରେ ପରାମର୍ଶ ଦେବା, ସମୀକ୍ଷା କରିବା ଏବଂ ପର୍ଯ୍ୟାଲୋଚନା କରିବା ପାଇଁ ରାଜ୍ୟସ୍ତରରେ ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏକ ପରିଷଦ କାର୍ଯ୍ୟ କରିବ । ଏହି ପରିଷଦରେ ମନ୍ତ୍ରୀଗଣ, ମନୋନୀତ ଲୋକପ୍ରତିନିଧି, ପ୍ରମୁଖ ସମାଜସେବୀ, ଶିକ୍ଷାବିତ୍ ଏବଂ ଜାତୀୟ ଆନ୍ତର୍ଜାତୀୟ ସ୍ତରର ବିଶେଷଜ୍ଞ ତଥା ବରିଷ୍ଠ ସରକାରୀ ପଦାଧିକାରୀମାନେ ସଭ୍ୟ ରହିବେ ।

**୧୮. ଭୂଅର୍ଜନ ଏବଂ ପୁନର୍ବାସ ଥଇଥାନ ପାଇଁ ସାଂଗଠନିକ ଢାଞ୍ଚା**

**(କ) ରାଜ୍ୟସ୍ତରୀୟ**

ପୁନର୍ବାସ ଓ ଥଇଥାନ ନୀତିର କାର୍ଯ୍ୟାନ୍ୱୟନ ଏବଂ ଦେଖାଶୁଣା କରିବା ପାଇଁ ଏକ ପୁନର୍ବାସ ଓ ଥଇଥାନ ନିର୍ଦ୍ଦେଶାଳୟ ସ୍ଥାପିତ ହେବ । ଏହି ନିର୍ଦ୍ଦେଶାଳୟର ସବିଶେଷ ଗଠନ ଢାଞ୍ଚା ଓ କାର୍ଯ୍ୟାବଳୀ ସରକାରଙ୍କଦ୍ୱାରା ଅଧିସୂଚିତ ହେବ ।

**(ଖ) ଜିଲ୍ଲା / ପ୍ରକଳ୍ପସ୍ତରୀୟ**

ପ୍ରକଳ୍ପ ସ୍ତରରେ ପୁନର୍ବାସ ଓ ଥଇଥାନ କାର୍ଯ୍ୟାବଳୀର ବିସ୍ତାର ଅନୁଯାୟୀ ଜଣେ ପୁନର୍ବାସ ଓ ଥଇଥାନ ପ୍ରକଳ୍ପ ନିର୍ଦ୍ଦେଶକଙ୍କୁ ନିଯୁକ୍ତ କରାଯାଇପାରେ ଓ ତାଙ୍କୁ ସହାୟତା କରିବା ପାଇଁ ସରକାରଙ୍କ ନିଷ୍ପତ୍ତିକ୍ରମେ ଅନ୍ୟ କେତେକ ଅଧିକାରୀଙ୍କୁ ଅବସ୍ଥାପିତ କରାଯାଇପାରେ । ଏହି ପ୍ରକଳ୍ପ ନିର୍ଦ୍ଦେଶକ ପୁନର୍ବାସ ଓ ଥଇଥାନ ବ୍ୟାପାରରେ ସମସ୍ତ ଲାଇନ ବିଭାଗଗୁଡ଼ିକ ଭିତରେ ମୁଖ୍ୟ ସମନ୍ୱୟକାରୀ ଅଧିକାରୀ ଭାବେ କାର୍ଯ୍ୟ କରିବେ । ଜିଲ୍ଲାପାଳ ଓ ପୁନର୍ବାସ ଓ ଥଇଥାନ ନିର୍ଦ୍ଦେଶାଳୟର ସାମଗ୍ରିକ ପର୍ଯ୍ୟବେକ୍ଷଣ ଏବଂ ଦିଗଦର୍ଶନ ଅଧୀନରେ ରହି ସେ ପୁନର୍ବାସ ଓ ଥଇଥାନ ନୀତିର କାର୍ଯ୍ୟାନ୍ୱୟନ ଓ ସମସ୍ତ ପୁନର୍ବାସ ଓ ଥଇଥାନ ସଂକ୍ରାନ୍ତ କାର୍ଯ୍ୟାବଳୀର ଠିକ୍ ସମୟରେ ସମ୍ପାଦନ ପାଇଁ ଉତ୍ତରଦାୟୀ ରହିବେ ।

(ଗ) ଯେଉଁଠି ପୁନର୍ବାସ ଓ ଥଇଥାନ କାର୍ଯ୍ୟ ଅପେକ୍ଷାକୃତ ଭାବେ କମ୍, ସେପରି ସ୍ଥଳେ ଜିଲ୍ଲାପାଳଙ୍କ କାର୍ଯ୍ୟାଳୟର ଭୂଅର୍ଜନ ଅଧିକାରୀଙ୍କଦ୍ୱାରା ସେହି କାର୍ଯ୍ୟ ସମ୍ପାଦିତ ହୋଇପାରିବ ।

**୧୯. ବଜେଟ ବ୍ୟବସ୍ଥା ଏବଂ ଅର୍ଥ ବରାଦ**

ପୁନର୍ବାସ ଓ ଥଇଥାନ ନୀତିର ଫଳପ୍ରଦ କାର୍ଯ୍ୟକାରିତାକୁ ସୁନିଶ୍ଚିତ କରିବା ନିମନ୍ତେ ଆବଶ୍ୟକତା ଅନୁଯାୟୀ ଜମି ଅଧିଗ୍ରହଣ ଏବଂ ପୁନର୍ବାସ ଓ ଥଇଥାନ ସଂସ୍ଥାଗୁଡ଼ିକ ପାଇଁ ପର୍ଯ୍ୟାପ୍ତ ଅର୍ଥବ୍ୟବସ୍ଥା କରାଯିବ । ପୁନର୍ବାସ ଓ ଥଇଥାନ ନିର୍ଦ୍ଦେଶାଳୟ ପ୍ରତିବର୍ଷ ଜାନୁଆରୀ ୧ ସୁଦ୍ଧା ସେମାନଙ୍କର ବଜେଟ୍ ଅଟକଳ ଓ କାର୍ଯ୍ୟଚିଠା ଦାଖଲ କରିବେ । ସଂପୃକ୍ତ କର୍ତ୍ତୃପକ୍ଷମାନଙ୍କ ନିକଟରେ ଠିକ୍ ସମୟରେ ମଞ୍ଜୁରୀ ଅର୍ଥ ଯେପରି ପହଞ୍ଚିପାରିବ, ତାହା ସରକାର ସୁନିଶ୍ଚିତ କରିବେ ।

**୨୦. ଅଭିଯୋଗ ପ୍ରତିକାର ବ୍ୟବସ୍ଥା**

ଜମି ଅଧିଗ୍ରହଣ ଏବଂ ପୁନର୍ବାସ ଓ ଥଇଥାନ ସମ୍ବନ୍ଧରେ ପ୍ରକଳ୍ପ ବିସ୍ଥାପିତ ଲୋକଙ୍କ ଆପତ୍ତି ଅଭିଯୋଗ ଶୁଣିବା ପାଇଁ ଜିଲ୍ଲା ଓ ନିର୍ଦ୍ଦେଶାଳୟ ସ୍ତରରେ ଏକ ଫଳପ୍ରଦ ଅଭିଯୋଗ ପ୍ରତିକାର ବ୍ୟବସ୍ଥା ପ୍ରତିଷ୍ଠିତ ହେବ । ଏହାଛଡ଼ା, ସମସ୍ତ ପ୍ରକଳ୍ପ କର୍ତ୍ତୃପକ୍ଷମାନଙ୍କୁ ନିଜ ନିଜ ସ୍ତରରେ ସଂପୃକ୍ତ ପ୍ରକଳ୍ପ ବ୍ୟାପାରରେ ଗୋଟାଏ ଲେଖାଏଁ ଫଳପ୍ରଦ ଅଭିଯୋଗ ପ୍ରତିକାର ବ୍ୟବସ୍ଥା ଚାଲୁ କରିବାକୁ କୁହାଯିବ । ଏହି ପ୍ରକ୍ରିୟାରେ ବିସ୍ଥାପିତ ଗୋଷ୍ଠୀମାନଙ୍କ ଭାଗିଦାରୀକୁ ସୁନିଶ୍ଚିତ କରିହେବ ।

**୨୧. ନୀତିର କାର୍ଯ୍ୟାନ୍ୱୟନ ନିର୍ଦ୍ଧାରଣ**

ସମୁଚିତ ସଂସ୍ଥାଗୁଡ଼ିକ ମାଧ୍ୟମରେ ସରକାର ସମୟାନ୍ତରରେ ଏହି ନୀତିର କାର୍ଯ୍ୟାନ୍ୱୟନ ନିର୍ଦ୍ଧାରଣ କରିବେ ।

**୨୨. ବ୍ୟାଖ୍ୟା ଏବଂ ସଂଶୋଧନ**

(କ) ଏହି ନୀତି ସମ୍ବନ୍ଧରେ କୌଣସି ପ୍ରସଙ୍ଗ ବା ସନ୍ଦେହ ଉପୁଜିଲେ, ତାହା ସରକାରଙ୍କ ରାଜସ୍ୱ ବିଭାଗକୁ ସୂଚିତ ହେବ ଏବଂ ରାଜସ୍ୱ ବିଭାଗଙ୍କ ନିଷ୍ପତ୍ତି ହିଁ ଚୂଡ଼ାନ୍ତ ଏବଂ ସମସ୍ତ ସଂପୃକ୍ତ ପକ୍ଷଙ୍କ ପାଇଁ ଅବଶ୍ୟ ପାଳନୀୟ ବୋଲି ବିବେଚିତ ହେବ ।

(ଖ) ସରକାରଙ୍କ ରାଜସ୍ୱ ବିଭାଗ ଆବଶ୍ୟକ ମନେକଲେ ସମୟାନ୍ତରରେ ଏହି ନୀତିରେ ସ୍ଥାନିତ ବ୍ୟବସ୍ଥାଗୁଡ଼ିକର ସଂଶୋଧନ କରିପାରନ୍ତି ।

(ଗ) ଏହି ନୀତିକୁ ବାସ୍ତବ ରୂପରେଖ ଦେବା ଉଦ୍ଦେଶ୍ୟରେ ସମୟାନ୍ତରରେ ମାର୍ଗଦର୍ଶନ ଓ ଅନୁଦେଶ ଦେବାର କ୍ଷମତା ସରକାରଙ୍କ ରାଜସ୍ୱ ବିଭାଗ ହାତରେ ରହିବ ।

**ଆଦେଶ :**

ସର୍ବସାଧାରଣଙ୍କ ଗୋଚରାର୍ଥେ ଏହି ସଂକଳ୍ପକୁ ଓଡ଼ିଶା ଗେଜେଟର ଅସାଧାରଣ ସଂଖ୍ୟାରେ ମୁଦ୍ରିତ ହେବା ପାଇଁ ଆଦେଶ ଦିଆଯାଉଛି । ଏହାର ନକଲ ଭାରତ ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରଣାଳୟ / ଆଦିବାସୀ ବ୍ୟାପାର ମନ୍ତ୍ରଣାଳୟ / ସାମାଜିକ ନ୍ୟାୟ

ମନ୍ତ୍ରଣାଳୟ / ସରକାରଙ୍କ ସମସ୍ତ ବିଭାଗ / ସମସ୍ତ ବିଭାଗୀୟ ମୁଖ୍ୟ / ସମସ୍ତ ରାଜସ୍ୱ ଡିଭିଜନର କମିଶନର / ସମସ୍ତ ଜିଲ୍ଲାପାଳ / ରାଜସ୍ୱ ପରିଷଦର ସଚିବ / ସି.ଏମ୍.ଡି., ଇଡ୍‌କୋ / ସି.ଏମ୍.ଡି., ଇପିକଲ / ଏ.ଜି. ଓଡ଼ିଶା, ଭୁବନେଶ୍ୱର / ଡି.ଏ.ଜି. (ୱାର୍କ୍ସ) ଓଡ଼ିଶା, ପୁରୀଙ୍କ ଗୋଚରାର୍ଥେ ପଠାଯିବ ।

ରାଜ୍ୟପାଳଙ୍କ ଆଦେଶକ୍ରମେ

**ସ୍ୱା/– ତରୁଣକାନ୍ତି ମିଶ୍ର**

ପ୍ରମୁଖ ଶାସନ ସଚିବ

ପରିଶିଷ୍ଟ – 'କ'

**ଓଡ଼ିଶା ସରକାର**

**ରାଜସ୍ୱ ବିଭାଗ**

**ଆଦେଶ ସଂଖ୍ୟା ୧୬୫୧୬ ଆର୍. ଆଣ୍ଡ୍ ଆର୍. ଇ.ଏଚ୍. – ୧୨୩/୨୦୦୫ ରା**

**ତାରିଖ ୩ ମଇ ୨୦୦୬**

**ବିଷୟ :** ପୋସ୍କୋ (ଇଣ୍ଡିଆ) ଲିମିଟେଡ଼ଙ୍କ ପ୍ରସ୍ତାବିତ ପାରାଦୀପ ନିକଟସ୍ଥ ସମନ୍ୱିତ ଇସ୍ପାତ ପ୍ରକଳ୍ପ ଯୋଗୁଁ ବିସ୍ଥାପିତ ହେଉଥିବା ପରିବାରମାନଙ୍କ ପାଇଁ ସ୍ୱତନ୍ତ୍ର ପୁନର୍ବାସ ଓ ଥଇଥାନ ସୁବିଧା ।

ସରକାର, ବିଶଦ ବିଚାର କରିବା ପରେ ନିଷ୍ପତ୍ତି କରିଛନ୍ତି ଯେ ପୋସ୍କୋ (ଇଣ୍ଡିଆ) ଲିମିଟେଡ଼ଙ୍କ ପ୍ରସ୍ତାବିତ ପାରାଦୀପ ନିକଟସ୍ଥ ସମନ୍ୱିତ ଇସ୍ପାତ ପ୍ରକଳ୍ପଦ୍ୱାରା ବିସ୍ଥାପିତ ହେଉଥିବା ପରିବାରମାନଙ୍କୁ ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି, ୨୦୦୬ରେ ଉପଲବ୍ଧ ସୁବିଧା ସହିତ ନିମ୍ନ ବର୍ଣ୍ଣିତ ସ୍ୱତନ୍ତ୍ର ପୁନର୍ବାସ ଓ ଥଇଥାନ ସୁବିଧା ପ୍ରଦାନ କରାଯିବ ।

ଯେଉଁ ବ୍ୟକ୍ତିମାନେ ପ୍ରକଳ୍ପ ନିମନ୍ତେ ପ୍ରସ୍ତାବିତ ସରକାରୀ ଜମିରେ ପାନ ଚାଷରେ ନିୟୋଜିତ ଅଛନ୍ତି ସେମାନଙ୍କୁ ପ୍ରତି ଡିସିମିଲି ପାନବରଜ ପାଇଁ ୬ ହଜାର ଟଙ୍କା ହାରରେ ପ୍ରତି ପାନବରଜ ପିଛା ସର୍ବନିମ୍ନ ୧୦ ହଜାର ଟଙ୍କା କ୍ଷତିପୂରଣ ଦିଆଯିବ ।

ରାଜ୍ୟପାଳଙ୍କ ଆଦେଶକ୍ରମେ

ସ୍ୱା/– ତରୁଣକାନ୍ତି ମିଶ୍ର

ପ୍ରମୁଖ ଶାସନ ସଚିବ

ଓଡ଼ିଶା ସରକାର

ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ

ସଂଖ୍ୟା– ଆର୍. ଆଣ୍ଡ୍ ଆର୍. ଇ.ଏବ୍. – ୧୨୪/୨୦୦୮ – ୩୬୩୫୮/ଆର୍ ଏଣ୍ଡ୍ ଡି.ଏମ୍.

ତାରିଖ ୨୧ ଅଗଷ୍ଟ ୨୦୦୮

## ସଂକଳ୍ପ

**ବିଷୟ :** ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି–୨୦୦୬ ଆର୍ଥିକ ଚୁକ୍ତି ଅନୁଯାୟୀ ଦ୍ୱିବାର୍ଷିକ ସଂଶୋଧିତ ଥଇଥାନର ଅନୁଦାନ ।

୨୦୦୬ ମସିହା ମଇ ମାସ ୧୫ ତାରିଖ ଦିନ ଓଡ଼ିଶା ପୁନର୍ବାସ ଓ ଥଇଥାନ ନୀତି ଓଡ଼ିଶା ରାଜପତ୍ରର ଅସାଧାରଣ ସଂଖ୍ୟା ୬୫୧ରେ ପ୍ରକାଶିତ ହୋଇଥିଲା ଏବଂ ସେହିଦିନଠାରୁ କାର୍ଯ୍ୟକାରୀ ହେଲା । ଉକ୍ତ ନୀତିରେ, ନିଜକୁ ପୁନଃ ଥଇଥାନ କରିବା, ଗୃହ ନିର୍ମାଣ ଏବଂ ରୋଜଗାର ଇତ୍ୟାଦି ପାଇଁ ଥଇଥାନ ସହାୟତା ପରିବର୍ତ୍ତେ ନଗଦ ଟଙ୍କା ପରିମାଣ ସ୍ଥିରୀକୃତ ହୋଇଅଛି । ପୁନର୍ବାସ ନୀତି ଅନୁଦାନର ତ୍ରୟୋଦଶତମ ଅନୁଚ୍ଛେଦ ଅନୁଯାୟୀ, ପାଇକାରୀ ମୂଲ୍ୟ ସୂଚୀକୁ ସଂଯୁକ୍ତ କରାଯାଇ ତା.୦୧.୦୪.୨୦୦୬କୁ ବିଚାରଯୋଗ୍ୟ ତାରିଖ ଭାବେ ଗ୍ରହଣ କରାଯିବା ସଂଗେସଂଗେ ସରକାର ପ୍ରତ୍ୟେକ ଦୁଇବର୍ଷରେ ଥରେ ହିସାବରେ ପାଇକାରୀ ମୂଲ୍ୟ ସୂଚୀ ଅନୁଯାୟୀ ସଂଶୋଧନ କରିବେ ।

ଉପରୋକ୍ତ ବ୍ୟବସ୍ଥା ଅନୁଯାୟୀ ରାଜ୍ୟ ସରକାର ନିମ୍ନଲିଖିତ ପୁନର୍ବାସ ଅନୁଦାନର ସଂଶୋଧନକୁ ନିର୍ଦ୍ଦିଷ୍ଟ ଆର୍ଥିକ ତଥ୍ୟ ଭିତ୍ତିରେ ଥଇଥାନ ଅନୁଦାନ ପ୍ରଦାନ କରୁଛନ୍ତି ।

| କ୍ର.ନଂ. | ଉପାଦାନର ବର୍ଣ୍ଣନା | ନୀତିର ପ୍ରାସଙ୍ଗିକ ବ୍ୟବସ୍ଥା | ବର୍ତ୍ତମାନ ଦର | ସଂଶୋଧିତ ଦର |
|---|---|---|---|---|
| ୧. | ନିଜର ପୁନଃଥଇଥାନ ପାଇଁ ସହାୟତା (ପୁନର୍ବାସ ସ୍ଥାନ ବ୍ୟତୀତ ଅନ୍ୟତ୍ର) | ଅନୁଚ୍ଛେଦ ୮.I (ଙ), ୮.II(ଙ), ୮.III(ଖ), ୮.IV(ଖ) | ଟ.୫୦,୦୦୦/– | ଟ.୫୬,୦୦୦/– |
| ୨. | ଗୃହ ନିର୍ମାଣ ସହାୟତା | ଅନୁଚ୍ଛେଦ ୮.I(ଚ), ୮.II(ଙ), ୮.III(ଖ), ୮.IV(ଖ) | ଟ.୧,୫୦,୦୦୦/– | ଟ.୧,୬୬,୦୦୦/– |
| ୩. | ବିଭିନ୍ନ ଶିଳ୍ପ ପ୍ରକଳ୍ପରେ ନିଯୁକ୍ତି ପରିବର୍ତ୍ତେ ଏକକାଳୀନ ଆର୍ଥିକ ସହାୟତା | (i) ଏହି ଶ୍ରେଣୀରେ ଆସୁଥିବା ବିସ୍ଥାପିତ ପରିବାର ବର୍ଗ (I) | ଟ.୫,୦୦,୦୦୦/– | ଟ.୫,୫୨,୦୦୦/– |
| | | (ii) ଏହି ଶ୍ରେଣୀରେ ବିସ୍ଥାପିତ ପରିବାରଗୁଡ଼ିକ ବର୍ଗ (II) | ଟ.୩,୦୦,୦୦୦/– | ଟ.୩,୩୧,୦୦୦/– |
| | | (iii) ଏହି ଶ୍ରେଣୀରେ ବିସ୍ଥାପିତ ପରିବାରଗୁଡ଼ିକ ବର୍ଗ (III) | ଟ.୨,୦୦,୦୦୦/– | ଟ.୨,୨୧,୦୦୦/– |
| | | (iv) ଏହି ଶ୍ରେଣୀରେ ବିସ୍ଥାପିତ ପରିବାରର ବର୍ଗ (IV) ଓ ବର୍ଗ (V) | ଟ.୧,୦୦,୦୦୦/– | ଟ.୧,୧୧,୦୦୦/– |
| | | ଅନୁଚ୍ଛେଦ ୮.II–୩ | | |

| | | | | |
|---|---|---|---|---|
| ୪. | ଖଣି ପ୍ରକଳ୍ପରେ ନିଯୁକ୍ତି ପରିବର୍ତ୍ତେ ଏକକାଳୀନ ଆର୍ଥିକ ସହାୟତା | (i) ବିସ୍ଥାପିତ ପରିବାର ବର୍ଗ (I) | ଟ.୫,୦୦,୦୦୦/- | ଟ.୫,୫୨,୦୦୦/- |
| | | (ii) ବିସ୍ଥାପିତ ପରିବାର ବର୍ଗ (II) | ଟ.୩,୦୦,୦୦୦/- | ଟ.୩,୩୧,୦୦୦/- |
| | | (iii) ବିସ୍ଥାପିତ ପରିବାର ବର୍ଗ (III) | ଟ.୨,୦୦,୦୦୦/- | ଟ.୨,୨୧,୦୦୦/- |
| | | (iv) ବର୍ଗ (IV), (V) ଓ (VI) ଅଧୀନରେ ଆସୁଥିବା ପରିବାର | ଟ.୧,୦୦,୦୦୦/- | ଟ.୧,୧୧,୦୦୦/- |
| ୫. | କୃଷି ଜମି ପାଇଁ ସହାୟତା ରାଶି | ଅନୁଚ୍ଛେଦ ୮.III(ଗ) ଜଳସେଚିତ ଜମି ଏକର ପିଛା | ଟ.୧,୦୦,୦୦୦/- | ଟ.୧,୧୧,୦୦୦/- |
| | | ଅଣଜଳସେଚିତ ଭୂମି ଏକର ପିଛା | ଟ.୫୦,୦୦୦/- | ଟ.୫୬,୦୦୦/- |
| ୬. | ରକ୍ଷଣାବେକ୍ଷଣ ପାଇଁ ଭତ୍ତା | ଅନୁଚ୍ଛେଦ ୧୦(କ) | ଟ.୨,୦୦୦/- ମାସିକ | ଟ.୨,୩୦୦/- |
| ୭. | ଅସ୍ଥାୟୀ ଗୃହ ପାଇଁ ସହାୟତା | ଅନୁଚ୍ଛେଦ ୧୦(ଖ) | ଟ.୧୦,୦୦୦/- | ଟ.୧୧,୧୦୦/- |
| ୮. | ପରିବହନ ଭତ୍ତା | ଅନୁଚ୍ଛେଦ ୧୦(ଗ) | ଟ.୨,୦୦୦/- | ଟ.୨,୩୦୦/- |

ଉପରଲିଖିତ ସଂଶୋଧନ ୟୁଓଆର୍ ନଂ ୩୧୨-GSI, ତା.୨ ମେ, ୨୦୦୮ରିଖରେ ଅର୍ଥ ବିଭାଗଦ୍ୱାରା ଅନୁମୋଦିତ ହୋଇଛି ।

ଏହି ସଂକଳ୍ପକୁ ତୁରନ୍ତ କାର୍ଯ୍ୟକାରୀ କରାଯିବ ।

**ଆଦେଶନାମା :**

ଆଦେଶ ଦିଆଗଲା ଯେ, ଏହି ସଂକଳ୍ପ ଓଡ଼ିଶା ରାଜପତ୍ରରେ ଅସାଧାରଣ ସଂଖ୍ୟାରେ ସାଧାରଣ ଜନତାଙ୍କ ପାଇଁ ପ୍ରକାଶିତ ହେବ ଏବଂ ଏହାର ନକଲଗୁଡ଼ିକ କେନ୍ଦ୍ର ସରକାରଙ୍କ ଗ୍ରାମ୍ୟ ଉନ୍ନୟନ ମନ୍ତ୍ରାଳୟ / ଆଦିବାସୀ ବ୍ୟାପାର ମନ୍ତ୍ରାଳୟ / ସାମାଜିକ ନ୍ୟାୟ ଓ ସଶକ୍ତିକରଣ ମନ୍ତ୍ରୀ / ରାଜ୍ୟ ସରକାରଙ୍କ ସମସ୍ତ ବିଭାଗ / ସମସ୍ତ ବିଭାଗୀୟ ଦପ୍ତର / ସମସ୍ତ ରାଜସ୍ୱ କମିଶନର / ସମସ୍ତ ଜିଲ୍ଲାପାଳ / ସଚିବ, ରାଜସ୍ୱ ପର୍ଷଦର ସଦସ୍ୟ / ଅଧକ୍ଷ ଓ ପରିଚାଳନା ନିର୍ଦ୍ଦେଶକ, ଇଡ୍‌କୋ / ଅଧକ୍ଷ, ପରିଚାଳନା ନିର୍ଦ୍ଦେଶକ, ଇପିକଲ୍ / ଆକାଉଣ୍ଟାଣ୍ଟ ଜେନେରାଲ୍, ଓଡ଼ିଶା, ଭୁବନେଶ୍ୱର / ଡି.ଏ.ଜି. (ପୂର୍ତ୍ତ), ଓଡ଼ିଶା, ପୁରୀଙ୍କ ଅବଗତି ନିମନ୍ତେ ପ୍ରେରିତ ହେଲା ।

ରାଜ୍ୟପାଳଙ୍କ ଆଦେଶକ୍ରମେ

ସ୍ୱା/-

ଜି.ଭି.ଜି. ଶର୍ମାଙ୍କ ସ୍ୱାକ୍ଷର
(କମିଶନର ତଥା ଶାସନ ସଚିବ)
ରାଜସ୍ୱ ଓ ବିପର୍ଯ୍ୟୟ ପରିଚାଳନା ବିଭାଗ